# —ଆଚାର୍ଯ୍ୟ ପରିକ୍ରମା—

ପୂଜ୍ୟପୂଜା ସଂସଦ ଆନୁକୂଲ୍ୟରେ
ପ୍ରକାଶିତ

ଡିସେମ୍ବର, ୧୯୭୩

ସଂପାଦକ—ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀ

ଲେଖିଛନ୍ତି—ସର୍ବଶ୍ରୀ ବିନୋଦ କାନୁନଗୋ, ଚିତ୍ତରଂଜନ ଦାସ, ଅଧ୍ୟାପକ ଚିନ୍ତାମଣି ଦାସ, ଅଧ୍ୟାପକ ବିନୋଦ ରାଉତରାୟ, ଡାକ୍ତର ବିକ୍ରମ ଦାସ, . ରବିନାରାୟଣ ଦାଶ, ହରିହର ମହାପାତ୍ର, ଇନ୍ଦୁଭୂଷଣ ମିଶ୍ର, ଗୌରିଶ୍ୟାମ ସାମନ୍ତରାୟ, ଗୋକୁଳାନନ୍ଦ ମହାନ୍ତି, ଅଧ୍ୟାପକ କଚ୍ୟାନନ୍ଦ ଶତପଥୀ, ଶ୍ରୀମତୀ ରମା ଦେବୀ, ସଚ୍ଚିଦାନନ୍ଦ ମହାନ୍ତି, ଲକ୍ଷ୍ମଣ ମିଶ୍ର, କୃପାସିନ୍ଧୁ ହୋତା, ନରହରି ସ୍ୱାଇଁ ।

ସୂଚୀ—



ଗଣପତି ପ୍ରେସ୍, ତ୍ରିପାଠୀ ଲେନ୍, ମଙ୍ଗଳାବାଗ, କଟକ-୧ରେ ମୁଦ୍ରିତ

# ପ୍ରାଗ୍‌ଭାଷ

ଶ୍ରୀ ହରିହର ଦାସ ଆଧୁନିକ ଓଡ଼ିଶାର ଏକମାତ୍ର ଆଚାର୍ଯ୍ୟ; ଅତୀତର ଆଚାର୍ଯ୍ୟମାନଙ୍କ ପରି ନିର୍ଜନ ଅରଣ୍ୟରେ ଅବଶ୍ୟ ତାଙ୍କର ତପୋବନ ନ ଥିଲା। ସମସ୍ୟା ଜର୍ଜରିତ ଜନସମାଜ ଥିଲା ତାଙ୍କ ତପସ୍ୟାର ଆସ୍ଥାନ। ତାଙ୍କ ତପସ୍ୟା ଥିଲା ଜନସେବା, ତାଙ୍କ ଯଜ୍ଞ ସୃଜନଯଜ୍ଞ। ତାଙ୍କ ଯୋଗ ପରମାତ୍ମାଙ୍କ ସହିତ ନୁହେଁ, ଗଣ ଆତ୍ମା ସହିତ। ଜନତା ଭିତରେ ହିଁ ସେ ଜନାର୍ଦ୍ଦନଙ୍କୁ ଦେଖୁଥିଲେ। ତାଙ୍କ ତୀର୍ଥ ଗୃହଧାମ ମଧ୍ୟରେ ଆବଦ୍ଧ ନ ଥିଲା; ଏହା କୋଟି ତୀର୍ଥ ଗ୍ରାମରୁ ଗ୍ରାମାନ୍ତର ବ୍ୟାପି ରହିଥିଲା। ତାଙ୍କର ଆରାଧ୍ୟ ଦେବତା ଥିଲା ସତ୍ୟ; ମନ୍ତ୍ର ଶାନ୍ତିମନ୍ତ୍ର। ହୋମଯଜ୍ଞରେ ସେ ଘୃତାହୁତି ଦେଇ ନ ଥିଲେ, କର୍ମଯଜ୍ଞରେ ସେ ଦେଇଥିଲେ ଆତ୍ମାହୁତି।

ସଂସାରରେ ବଡ଼ଲୋକ ହେବାର ବହୁ ଲୋଭନୀୟ ପଥ ଉନ୍ମୁକ୍ତ ଥିଲା। କାହା କାନ୍ଧରେ ଚଢ଼ା ହୋଇ ବଡ଼ ହେବା, ନିଜର ଡିଣ୍ଡିମ ପିଟାଇ ଉପରକୁ ଉଠିଯିବା, ନେତାରୁ ମନ୍ତ୍ରୀ ହୋଇ ମହଲ ପରେ ମହଲ ଉଠାଇବା, ସମ୍ପାଦକ ହୋଇ ସମ୍ବାଦପତ୍ରରେ ଆପଣା ଭାଷଣକୁ ବଡ଼ କରି ଛାପିବା-କଳ୍ପନା ତାଙ୍କ ମନରେ ସ୍ଥାନ ପାଇ ନଥିଲା। ଧନରେ ମାନରେ କ୍ଷମତାରେ ବଡ଼ ହେବାର ସ୍ୱପ୍ନ ସେ କେବେ ଦେଖି ନ ଥିଲେ। ଜନତା ମଝିରେ ତାଳ ଗଛ ପରି ଚଢ଼ା ହୋଇଯିବା ଧାରଣା ତାଙ୍କର ନ ଥିଲା। ଉପରକୁ ଉଠିବା ବଦଳରେ ସେ ତଳକୁ ହିଁ ଖସିଥିଲେ—ତଳକୁ ଆହୁରି ତଳକୁ, ଯାହା ତଳକୁ ଆଉ ନାହିଁ। ଯେତେ ତଳକୁ ସେ ଯାଇଥିଲେ, ଜନଚକ୍ଷୁରେ ସେ ସେତିକି ଉପରକୁହିଁ ଉଠି ଯାଇଥିଲେ—ଉପରକୁ, ଆହୁରି ଉପରକୁ, ଯାହା ଉପରକୁ ଆଉ ନାହିଁ। ତଳର ତଳକୁ ଓ ଉପରର ଊର୍ଦ୍ଧ୍ୱକୁ ଛୁଇଁଥିଲେ ଆଚାର୍ଯ୍ୟ ମହାଶୟ ତାଙ୍କର ମାନବିକ ମହିମା ଦ୍ୱାରା। ସେ ଥିଲେ ଆଧୁନିକ ଉତ୍କଳର ଜଣେ ଋଷି, ବଶିଷ୍ଠ ଶ୍ରେଣୀୟ। ତାଙ୍କ ଚତୁର୍ଦ୍ଦିଗରେ ଘେରି ଥିଲା ଉଜ୍ଜ୍ୱଳତାର ଏକ ପରିମଣ୍ଡଳ। ତଳେ ବସି ସମସ୍ତଙ୍କଠାରୁ ଉଚ୍ଚାସନରେ ବସିଲା ପରି ସେ ଦିଶୁଥିଲେ। ଚାଲିଗଲେ ପଥ ଧୂଳି ପବିତ୍ର ହୋଇ ଉଠୁଥିଲା। ତାଙ୍କ ପଦ ଛୁଇଁ ଦେଲେ ମନରେ ମହାନ୍ ଦେବତାର ବିଭୂତି ଭରି ଉଠୁଥିଲା, ପ୍ରାଣ ଆପ୍ଳୁତ ହୋଇ ଯାଉଥିଲା; ବଡ଼ଲୋକ, ମହାପୁରୁଷ ଭାବେ ମନ ତାଙ୍କୁ ଅକୁଣ୍ଠ ଭାବେ ଗ୍ରହଣ କରି ନେଉଥିଲା।

ସତ୍ୟବାଦୀ ଗୋଷ୍ଠୀରେ ଗୋଟିଏ ଦିଗରେ ସେ ସମସ୍ତଙ୍କ ଠାରୁ ବଡ଼ ହୋଇ ଦିଶୁଥିଲେ-ସେବା। ଗୋପବନ୍ଧୁ ଜନପ୍ରାଣ ନେତା, ଗୋଦାବରୀଶ ଦରଦୀ କବି, ନୀଳକଣ୍ଠ ଜ୍ଞାନୀ ସାହିତ୍ୟିକ, କୃପାସିନ୍ଧୁ ଅନୁସନ୍ଧିତ୍ସୁ ସାହିତ୍ୟିକ, କିନ୍ତୁ ଆଚାର୍ଯ୍ୟ ଶ୍ରେଷ୍ଠ ଜନସେବକ।

ଭଲ ମଣିଷପଣରୁ ତାଙ୍କ ବଡଲୋକୀର ଉଦ୍‌ଭବ ହୋଇଥିଲା, ସମ୍ବାଦ-ପତ୍ର ଏହାକୁ ଟେକି ଧରି ନ ଥିଲା, ସଭାସମିତି ବା କୌଣସି ଅନୁଷ୍ଠାନ ଏହାର ବାହକ ହୋଇ ନ ଥିଲା । ଏକ ସ୍ୱୟଂସଂପୂର୍ଣ୍ଣ ମାହାତ୍ମ୍ୟ ଲୋକରୁ ଏହା ବିଚ୍ଛୁରିତ ହେଉଥିଲା—ଆଚାର୍ଯ୍ୟଙ୍କର ଏହାହିଁ ଥିଲା ସାରାଜୀବନର ସ୍ୱୋପାର୍ଜିତ ସମ୍ପତ୍ତି ।

ଓଡ଼ିଶାର ସ୍ୱାଧୀନତା ସଂଗ୍ରାମୀମାନଙ୍କ ମଧ୍ୟରେ ସେ ସବୁଠାରୁ ନିଷ୍କଳଂକ ଚରିତ୍ର । ନିବୃତ୍ତିପନ୍ଥୀ, ଧନଞ୍ଜୟ କ୍ଷମତା ନ ଥାଇ ମହାକ୍ଷମତାଶାଳୀ । କବିତା ଲେଖି ନାହାନ୍ତି ସେ, କିନ୍ତୁ ମହାକାବ୍ୟର ଧୀରୋଦାତ୍ତ ନାୟକ ହେବାକୁ ସର୍ବତୋଭାବେ ଯୋଗ୍ୟ । ନିଜେ ନିରଳଙ୍କାର ରହି ପୃଥିବୀର ଅଳଂକାର ହୋଇଛନ୍ତି ସେ । ଚିର ନିରହଂକାର; କିନ୍ତୁ ତାଙ୍କୁ ଘେନି ଅହଂକାର କରୁ ଆମେ । ବିନୟ ତାଂକର ଗୋଟିଏ ଗୋଟିଏ ଗୁଣ ବୋଲି କେହି କହେ ନାହିଁ, ପ୍ରକାଶ୍ୟରେ ସେ ନ୍ୟୂନତର ପ୍ରତିପନ୍ନ ହେବେ ବୋଲି । ସେ କାହା ଠାରୁ ନମସ୍କାର ଆଶା କରନ୍ତି ନାହିଁ, କିନ୍ତୁ ସମସ୍ତଂକର ନମସ୍ୟ । ସବୁ ପରିବାରରେ ଗ୍ରହଣୀୟ ସେ, ବିଶ୍ୱକୁଟୁମ୍ବର ମହନୀୟ ଅଭିଭାବକ, ସବୁ ବିଦ୍ୟାଳୟର ପ୍ରାଣସ୍ପର୍ଶୀ ଶିକ୍ଷକ ।

ଶିଶୁରୁ ବୃଦ୍ଧ ପର୍ଯ୍ୟନ୍ତ ସବୁ ଭିତରେ ସେ ଜଣେ—କେହି ଦୋଦୋଚହ୍ଲା ହୁଅନ୍ତି ନାହିଁ, ଯେତେ ଅଚହ୍ଲା ରହିବାକୁ ଚେଷ୍ଟା କଲେ ବି ଚହ୍ଲା ଜଣା ହୋଇଯାନ୍ତି । କାରଣ ସମସ୍ତଂକ ସଙ୍ଗେ ମିଶୁଥିଲେ ସେ, ସମସ୍ତଂକ ବ୍ୟଥାବେଦନା ବୁଝୁଥିଲେ । ଜଗତକୁ ଜୟ କରିଥିଲେ—ମହାକାଳର ଓ ଅସରନ୍ତି ପଥର ଜଣେ ପରିବ୍ରାଜକ ସେ । ନିଃଶ୍ୱାସର ସଞ୍ଚାର ହେଉଥିବା ପର୍ଯ୍ୟନ୍ତ ଚାଲିଥିଲା ତାଂକର ପଦଯାତ୍ରା ପ୍ରାଣରୁ ପ୍ରାଣ ଅଗଣିତ ପ୍ରାଣ ପର୍ଯ୍ୟନ୍ତ ତାଙ୍କର ପଥ ଲମ୍ବି ଥିଲା—ସେ କହୁଥିଲେ—ଭଲ ମଣିଷ ହୁଅ—କହୁଥିଲେ ତାକୁ—ଯେ ଦିନକେ ଧନୀ ପାଲଟି ଯିବାକୁ ବସିଛି, ବିତଏ ଯାଇ ହାତଏ ଆସୁଛି, ଜୀବନର ଜ୍ୱାଳା ଯନ୍ତ୍ରଣାକୁ ବଢାଉଛି, ଯେ ଅତ୍ୟାଚାର ଅନାଚାରକୁ ନୀରବ ଭାବରେ ସହି ଯାଉଛି । ସେ 'ଭଲ ମଣିଷ ହୁଅ' ବୋଲି କହୁଛନ୍ତି, କାରଣ ସେତିକି ହେଲେ ପୃଥିବୀର ଅଧିକାଂଶ ସମସ୍ୟାର ସମାଧାନ ହୋଇଯିବ । ଆଚାର୍ଯ୍ୟ ମହାଶୟ ବେଦଉପନିଷଦ, ଭଗବଦ୍‌ଗୀତା ଓ ଧର୍ମ-ପଦରୁ ଜୀବନର ନିର୍ଯ୍ୟାସ ସ୍ୱରୂପ ଏତିକି ଶିଖିଥିଲେ ଓ ଏହାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଜୀବନକୁ ଅର୍ଘ୍ୟ ସ୍ୱରୂପ ଢାଳି ଦେଇଥିଲେ ।

'ଆଚାର୍ଯ୍ୟ ପରିକ୍ରମା' ପୂଜ୍ୟପୂଜା ସଂସଦର ପଞ୍ଚମ ଅର୍ଘ୍ୟ । ଯେଉଁମାନଙ୍କ ରଚନାରେ ଏହା ସମୃଦ୍ଧ ସେମାନେ ଜାତିର ଧନ୍ୟବାଦାର୍ହ ।

ମହାଳୟା

ତା ୨୫ । ୧୦ । ୬୩

**କୁଞ୍ଜବିହାରୀ ଦାଶ**

ସଭାପତି, ପୂଜ୍ୟପୂଜା ସଂସଦ

# ସଂପାଦକୀୟ

'ପୂଜ୍ୟପୂଜା ସଂସଦ' ଯେଉଁ ମହାନ ଲକ୍ଷ୍ୟରେ ପ୍ରତିଷ୍ଠିତ ହୋଇ ଏ ଦେଶ ଓ ଜାତିର ପ୍ରାଣପ୍ରତିଷ୍ଠାତାମାନଙ୍କ ସଂପର୍କରେ ସମ୍ବର୍ଦ୍ଧନ ପାଇଁ ଗୋଟିଏ ଗୋଟିଏ ଅମରଗ୍ରନ୍ଥ ରଚି ଯାଉଛି ତାହା ସମସାମୟିକତାର କୁଟୀଳ କଟାକ୍ଷରେ ଜର୍ଜରିତ ହେଲେ ହେଁ ମହାକାଳ ଯେ ତାର ବିଚାର କରିବ— ଏ ଭରସା ମୋର ଅଛି । ଯେଉଁ ଦେଶରେ ସଂସ୍କୃତି ନାମରେ କେବଳ ସମାରୋହ, ଗବେଷଣା ନାମରେ ପ୍ରତାରଣା ଓ ପୁନରୁକ୍ତି, ଧର୍ମନାମରେ ଧର୍ଷଣ ଓ ଦାମ୍ଭିକତା ଚାଲେ ସେଠି ଆଚାର୍ଯ୍ୟ ହରିହରଙ୍କ ପରି ଜଣେ ପରମ ସାଧୁ ଓ ସାଧକଙ୍କୁ ନେଇ କିପରି ଏ ଜାତିର ଇତିହାସ ଗଢ଼ା ଯାଇପାରିବ... ତାହା ହିଁ ଆମ ମନରେ ଘୋର ଉଦ୍‌ବେଗ ସୃଷ୍ଟି କରିଚି । କାରଣ ଏ ଋଷିପ୍ରତିମ ଅପ୍ରତିଭ ବ୍ୟକ୍ତିତ୍ୱଟି ରାଜନୀତିର ରଂଗମଞ୍ଚରେ ଭଂଗାଗଢ଼ାର କୁଟୀଳ କୌଶଳ ଦେଖେଇ ପାରିନାହିଁ, ଦେଶକୁ ବିପନ୍ନ କରି, ଜାତିକୁ ନିବେଦ କରି ଶ୍ରେଷ୍ଠ ଯାଦୁକର ସାଜିନାହିଁ, ନିଜସ୍ୱାର୍ଥର ଦୁର୍ନିବାର ଅଭିଳାଷରେ ବୃଦ୍ଧବ୍ୟାଘ୍ରର ଭୂମିକା ଗ୍ରହଣ କରିନାହିଁ । ଯାହା ସତ୍ୟ ବୋଲି ତାର ହୃଦ୍‌ବୋଧ ହୋଇଛି ତାକୁହିଁ ଶେଷ ପର୍ଯ୍ୟନ୍ତ ଅବଧାରଣ କରି ରଖିଛି, ବିବେକର ଇଂଗିତରେ ପଥ ଚାଲିଛି— ବେଳେବେଳେ ଅତି ନିସଙ୍ଗ, ଏକାନ୍ତ ଏକାକୀ ତାର ପଥଯାତ୍ରା । ବଡ଼ଲୋକର ଭେକନାହିଁ, ଦରିଦ୍ରଙ୍କର ନାମାବଳୀ ପକେଇ ଧୀରେ ଧୀରେ ଅପସାରିତ ହୋଇ ଯାଉଛି । ତେଣୁ ତାକୁ ଚତୁର ଧୂର୍ତ୍ତ ଓ ଚଞ୍ଚଳ ତାର୍କିକ କହୁଚି ଅପାରଗ, ଅଯୋଗ୍ୟ । କାରଣ ସେ ମନ୍ତ୍ରୀ ହୋଇ ପାରିନାହିଁ, ରାଜନୀତିରେ ବନ୍ଧୁତା ଓ ସୌଜନ୍ୟକୁ ବଳି ଦେଇ ସାଖ ଓ ବିଶ୍ୱସ୍ତ ଲୋକଙ୍କ ହାତ ଓ ଗୋଡ କାଟି ଦେଇ ପାରିନାହିଁ । କହିବା କଥା ଓ କଲାକାମ ମଧ୍ୟରେ ବିରୁଦ୍ଧାଚରଣ କରି ନାହିଁ । ସେ ଖେଳୁଆଡ଼ ନୁହେଁ, ଖେଳର ମ୍ୟାନେଜର ବି ନୁହେଁ ଗୋପବନ୍ଧୁ ଯୁଗର ସେବାଗ୍ରତରେ ଅନୁବ୍ରତୀ, ସରଳତାର ଏଇ ଶାନ୍ତମୂର୍ତ୍ତି କଣ ସତେରେ ଇତିହାସରୁ ଏଇ ତଥା କଥିତ ଅପାରଗତା ଯୋଗୁ ନିଭିଯିବେ ?

ଏ ପ୍ରଶ୍ନ ଏ ଯୁଗର, ପୁଣି ଉତ୍ତର ପୁରୁଷର । ଉତ୍ତର ପୁରୁଷ ଯେବେ ଓଡ଼ିଶାର ଇତିହାସ ଖୋଜିବ ଲେଖିବ ସେଇ ଇତିହାସ ସାକ୍ଷ୍ୟଦେବ ଘୋଷ-

ବଂଧୁ ଯୁଗର ଏ ଶେଷଦୀପ ଶିଖା ତଥାପି ଅମ୍ଳାନ ଜଳୁଚ । ଯେ କୌଣସି ରାଜନୈତିକ ଓ ବୈଷୟିକ ପ୍ରତିଷ୍ଠାକୁ ଉପହାସ କରି, ଦେଶସେବା ନାମରେ ଚାଲିଥିବା ଲୁଣ୍ଠନ ଓ ଛଳନା ଠାରୁ ଦୂରେଇ ରହି, ଭୋଗ ଓ ତ୍ୟାଗକୁ ଆପଣା ଆଚରଣରେ ତିରସ୍କାର କରି ସେ ଆଜି ସମସ୍ତଙ୍କ ମନର ସାମ୍ରାଜ୍ୟକୁ ଅଧିକାର କରି ବସିଛୁ । ତାରି ଚାରିପାଖରେ ତାକୁ ଅନ୍ଧଭାବେ କେତେ କ୍ଷମତାର ଘୋଡାଦୌଡ଼, କେତେ କୁମ୍ଭୀର କାନ୍ଦଣାର ପ୍ରକାଶ୍ୟ ଛଳନା ନେତାମାନେ ଦେଖାଇଛନ୍ତି ; ଏ ଜାତିପାଇଁ କେତେ ବ୍ୟାକୁଳତା ଓ ଆକୁଳତା ଦେଖାଇଛନ୍ତି । ନେତୃତ୍ୱ ପାଇଁ କେତେ ନୀତିର ତଣ୍ଟି ଚିପି ଦେଇଛନ୍ତି ; ସଭାରେ ତାଙ୍କୁ ସାକ୍ଷୀକରି କେତେ ଆପଣାର ଢ଼ିଣ୍ଡିମ ପିଟିଛନ୍ତି । ସେ କିନ୍ତୁ ସବୁଥିରୁ ଦୂରରେ ରହି ଚହ୍ଲା ମଣିଷର ଏଇ ଅଣନଶ୍ୱାସୀ ଉପକ୍ରମକୁ ଅନାସକ୍ତ ଯୋଗୀପରି ଉପଲବ୍ଧି କରିଚ । ମନକୁ ବାଧିବ ବୋଲି କାହାକୁ କିଛି କହିନାହିଁ ଅର୍ଥନୁହେଁ ଯେ ସେ କାଠପଥର ପରିଏକ ଜଡପିଣ୍ଡ, ତା' ଠାରେ ଅନୁଭବ ନଥିଲା, ଉପଲବ୍ଧି ନଥିଲା । ତାର ପ୍ରଶାନ୍ତ ନୀରବତା ଯଦି ଆମକୁ ତାରିପରି ମଣିଷ ହେବାକୁ ନ ଶିଖେଇଲା ପାପ ପ୍ରଲୋଭନରୁ ଦୂରରେ ରଖି ନ ପାରିଲା ତେବେ ପ୍ରଗଲ୍‌ଭ ଚେତାବନୀ କଣ ଅଧିକ କରି ପାରିଥା'ନ୍ତ ? ନା' ଆମେ କିଛି ଶୁଣିବାକୁ ପ୍ରସ୍ତୁତ ନୋହୁଁ, କିଛି କରିବାକୁ ବାଧ୍ୟ ନୋହୁଁ । ଆମେ ଦେଶର ମାଲିକ, ଚାଳକ । ଆମ ଇଚ୍ଛା ଜନତା ପାଇଁ ଚରମ ଫଇସଲା । ମାନିଯାଅ-ନଚେତ୍ ତୁମେହିଁ କ୍ଷତିଗ୍ରସ୍ତ ହେବ । ଏ ଦାମ୍ଭିକତା ତାର ନଥିଲା । କେହି ନ ଶୁଣିଲେ ଦ' ବନ୍ଧୁ ଅଶ୍ରୁ ଆଉ ଅଖଣ୍ଡ ନୀରବତା—ଋଷି ସାଧକ କଣ କାହାର ଅମଙ୍ଗଳ କାମନା କରିପାରେ ?

ହେ ମୋର ଅଗଣିତ ଅନାଗତ ପଥଗୃହୀ ! ହେ ମୋର ସମସାମୟିକ ବନ୍ଧୁ, ସଖା, ଦେଶସେବୀ, ଜନନେତା ଛାତ୍ର ଶିକ୍ଷକ କର୍ମଗୃହୀ ! ଓଡ଼ିଆ ଇତିହାସର ଏଇ ଯୁଗନ୍ଧର କାଳଜୟୀ ମହାମଣିଷକୁ ଆଦର୍ଶରେ ନହେଲେ ବି କୌତୁହଳରେ ଟିକିଏ ଅନୁଧ୍ୟାନ କରିବକି ? ଆଗ୍ରହରେ ନ ହେଲେ ବି ଟିକିଏ ବିସ୍ତରରେ ତାଙ୍କୁ ଅବବୋଧ କରିବକି ?

**ନିତ୍ୟାନନ୍ଦ ଶତପଥୀ**

ତା ୨୮ । ୧୧ । ୭୩

# ସତ୍ୟର ପୂଜାରୀ

# ଆଚାର୍ଯ୍ୟ ହରିହର

### ଶ୍ରୀ ବିନୋଦ କାନୁନ୍‌ଗୋ

ବିଂଶ ଶତାବ୍ଦୀ ଆରମ୍ଭ ହେବାର କିଛି କାଳ ପୂର୍ବରୁ ଓଡ଼ିଶାରେ ଯେଉଁ ଅଳ୍ପ କେତେଜଣ ସାଧାରଣ ସେବକ ବାହାରିଥିଲେ, ସେମାନଙ୍କ ଭିତରୁ ହରିହର ଦାସହିଁ ଏପର୍ଯ୍ୟନ୍ତ ଜୀବିତ ଥିଲେ। ସେ କେବଳ ବୟୋଜ୍ୟେଷ୍ଠ ନୁହଁନ୍ତି; ସମସ୍ତଙ୍କଠାରୁ ଅଧିକ ସମ୍ମାନିତ ମଧ୍ୟ। ସ୍ୱାଧୀନତା ସଂଗ୍ରାମର ସେ ଥିଲେ ଜଣେ ଶ୍ରେଷ୍ଠ ସେନାପତି। ଛ' ଦଶନ୍ଧିରୁ ଅଧିକ କାଳଧରି ହଜାର ହଜାର ଲୋକଙ୍କ ସ୍ନେହ ଶ୍ରଦ୍ଧା ଭକ୍ତି ସମ୍ମାନର ଅଧିକାରୀ ହେବା ଭଳି ସୌଭାଗ୍ୟ ଆଉ କାହାରି ହୋଇନାହିଁ। ନିଜର ବୋଲି ତାଙ୍କର କିଛି ନାହିଁ। ଏହି ଅଜାତଶତ୍ରୁ ତ୍ୟାଗ-ମୂର୍ତ୍ତିଙ୍କୁ ରାଷ୍ଟ୍ରୀୟ ସମ୍ମାନ ଦେବାପାଇଁ ଓଡ଼ିଶା ସରକାର ନିଶ୍ଚୟ ଅପେକ୍ଷା କରୁଥିବେ। ତାଙ୍କୁ ଏଭଳି ସମ୍ମାନ ଦେଇ ଯେକୌଣସି ସରକାର ନିଜେ ଧନ୍ୟ ହେବାକୁ ବ୍ୟାକୁଳତା ପ୍ରକାଶ କରିବା ସ୍ୱାଭାବିକ। ପ୍ରଶ୍ନ ହେଉଛି, ଶୀଘ୍ର ଶୀଘ୍ର କିପରି ସବୁ ବ୍ୟବସ୍ଥା ହୋଇଯିବ; କାରଣ ତାଙ୍କ ଶବକୁ ସେହି ସାକ୍ଷୀ ଗୋପାଳର ବକୁଳ ବନକୁ ନିଆଯିବ। ୭୬ ବର୍ଷ ପୂର୍ବେ ଯେଉଁ ଗୋପବନ୍ଧୁଙ୍କୁ ହରିହର ଗୁରୁ ବୋଲି ମାନିଥିଲେ, ତାଙ୍କର ସମାଧିପୀଠରେ ଆଚାର୍ଯ୍ୟଙ୍କର ଚିତା ଜଳିବ। ଏତେ ବାଟ ଯିବାପାଇଁ ନିଶ୍ଚୟ ସମୟ ଲାଗିବ।

ଯେଉଁମାନେ ଆଚାର୍ଯ୍ୟଙ୍କ ସହିତ ଚାଳିଶ ପଚାଶ ବର୍ଷ ଧରି ସହକର୍ମୀ ଭାବରେ ରହି ଆସିଛନ୍ତି, ତାଙ୍କରି ପାଦତଳେ ବସି ଦେଶସେବାପାଇଁ ପ୍ରେରଣା ପାଇଛନ୍ତି, ସେମାନଙ୍କ ଭିତରୁ ଜଣେ ଅତି ଧୀରସ୍ଥିର ଭାବରେ ସମସ୍ତଙ୍କୁ ଗୋଟିଏ କଥା ବୁଝାଇ ଦେଲେ। ତାଙ୍କର କହିବାର କଥା—ଆଜି ଯେ ଆଚାର୍ଯ୍ୟ ମହାଶୟଙ୍କୁ ରାଷ୍ଟ୍ରୀୟ ସମ୍ମାନ ଦିଆଯାଇ ପାରିଲା ନାହିଁ, ଏହି ହେଉଛି ତାଙ୍କ ଜୀବନର ଚରମ ସଫଳତା। ତାଙ୍କ ଦୀର୍ଘ ଜୀବନର ବିରାଟ ସାଫଲ୍ୟକୁ ରାଷ୍ଟ୍ରୀୟ ସମ୍ମାନର କ୍ଷୁଦ୍ର ନିୟମ-ଗଣ୍ଡି ଭିତରେ ରଖିଦେବା କିଭଳି ବା ସମ୍ଭବ ହୁଅନ୍ତା ? ଏ ଦେଶପାଇଁ ସେ ସବୁକିଛି କରିଛନ୍ତି; କିନ୍ତୁ ତାହାର ବଦଳରେ କିଛି ଗ୍ରହଣ କରି ନାହାନ୍ତି। କ୍ଷମତାଠାରୁ ସେ ସବୁବେଳେ ଦୂରରେ ହିଁ ରହୁଥିଲେ। ତେଣୁ କେବେ ନା କେବେ କ୍ଷମତାରେ ଥିବା ଲୋକଙ୍କ ପାଇଁ ସରକାର ଯେଉଁ ନିୟମ ବାନ୍ଧି ଦେଇଛନ୍ତି, ତାହା ଭିତରେ ଆଚାର୍ଯ୍ୟ

ମହାଶୟ ଆସନ୍ତେ କିପରି ? ସରକାରଙ୍କ ଅନୁଷ୍ଠାନହିଁ ପ୍ରମାଣ କରି ଦେଲାଣି ଯେ ଆଚାର୍ଯ୍ୟ ମହାଶୟ ଥିଲେ ଅତି ବରିଷ୍ଠ ।

ସେଦିନ ସକାଳର ଅପୂର୍ବ ଦୃଶ୍ୟ ଯିଏ ଦେଖିଛି, ସେ ଧନ୍ୟ । ଶୋକ ସହିତ ଆନନ୍ଦ କିଭଳି ମିଶିଯାଇପାରେ ତାହାର ପ୍ରମାଣ ସେହିଦିନ ମିଳିଲା । ଏ ସଂସାରରେ ଦୀର୍ଘ ୯୨ ବର୍ଷ ରହିଲା ପରେ ସଂସାର ଛାଡ଼ି ଚାଲିଗଲେ କେହି ବିସ୍ମିତ ହେବାର କିଛି ନାହିଁ । ତଥାପି ଲୋକେ ଶୋକାଭିଭୂତ; କାରଣ ତାଙ୍କର କୌଣସି ଜ୍ଞାନେନ୍ଦ୍ରିୟ ଆଉ କାର୍ଯ୍ୟ କରୁ ନଥିଲେ ମଧ୍ୟ ସେ ଥିଲେ ଅନେକଙ୍କର ପ୍ରେରଣା ତଥା ସାନ୍ତ୍ୱନାର ଉତ୍ସ । ଆନନ୍ଦ ଏଥିପାଇଁ ଯେ ତାଙ୍କର ଶେଷ ଦର୍ଶନ ପାଇବାର ସୌଭାଗ୍ୟ ଉପସ୍ଥିତ ଲୋକମାନଙ୍କର ହୋଇଛି । "ଆଜି ଏହି ପବିତ୍ର ମୁହୂର୍ତ୍ତରେ ମୁଁ ଏଠାରେ ଉପସ୍ଥିତ ରହିପାରିଛି" ଅନେକଙ୍କର ଆନନ୍ଦ, ସନ୍ତୋଷ, ଗୌରବ ।

ଆଚାର୍ଯ୍ୟ ହରିହରଙ୍କ 'ଜନ୍ମ-ପରିବାର'ର ଲୋକେ ଯେଉଁଠି ଯେଉଁ ଅବସ୍ଥାରେ ଅଛନ୍ତି 'କର୍ମ-ପରିବାରର', 'ସାଧନା ପରିବାର'ର ଲୋକେ ମଧ୍ୟ ସେହିଭଳି ଅଛନ୍ତି ବୋଲି ମନେ ହେଉଥାଏ । ଏହି ହେଉଛି ଆଚାର୍ଯ୍ୟ ହରିହରଙ୍କ ସମଗ୍ର ଜୀବନର ସାଧନାର ପରିଣତି । ତାଙ୍କୁ ଯିଏ ଲକ୍ଷ୍ୟ କରିଛି, ସିଏ ଅନୁଭବ କରିଛି ତାଙ୍କ ଦୃଷ୍ଟିରେ ଜଣେ ତାରାମଣି ବା ଜଣେ ରମା ଦେବୀଙ୍କ ଭିତରେ କିଛି ତଫାତ୍ ନଥିଲା । ବୁଲୁ, ଗୀତୁ, କୁନ୍ତଳା ତାଙ୍କଠାରୁ ଯେଉଁଭଳି ବ୍ୟବହାର ପାଉଛନ୍ତି, ଚନ୍ଦନ, ମଙ୍ଗଳା, ଗୋଦାବରୀ, ଶଶୀ ମଧ୍ୟ ସେମିତି ବ୍ୟବହାର ପାଉଛନ୍ତି । ଜନ୍ମ-ପରିବାରର ନାତି ଟିଟୁନ୍, ସନ୍ତୋଷ ରାମପ୍ରସାଦଙ୍କ ପାଇଁ ତାଙ୍କ ହୃଦୟରେ ଯେତିକି ସ୍ଥାନ, ନାନା, ବଲୁ, ବାବୁନିଙ୍କ ପାଇଁ ସେତିକି ସ୍ଥାନ । ଭିଣୋଇ ଜଗନ୍ନାଥ ମିଶ୍ରଙ୍କ ଘରେ ବସି ଖାଇଲାବେଳେ ସେ ଯେତିକି ଆନନ୍ଦ ଅନୁଭବ କରନ୍ତି, ଡ଼କ୍ଟର ମହେନ୍ଦ୍ର ମିଶ୍ରଙ୍କ ଘରେ ବସି ଖାଇଲାବେଳେ ମଧ୍ୟ ଠିକ୍ ସେହି ପରିମାଣରେ ଆନନ୍ଦ ଅନୁଭବ କରନ୍ତି । ଆମେ ସମସ୍ତେ ବର୍ଷ-ବର୍ଷ ଧରି "ବସୁଧୈବ କୁଟୁମ୍ବକମ୍" ପ୍ରାର୍ଥନା ବୋଲି ଆସିଛୁ । ତାକୁ କାର୍ଯ୍ୟରେ ଦେଖାଇ ଆସିଛନ୍ତି ଆଚାର୍ଯ୍ୟ ହରିହର । ତେଣୁ ଶବ ଶୋଭାଯାତ୍ରା ଯେତେବେଳେ ବାହାରିବ, ମଠର ଗାଡ଼ି କେଉଁଠୁ ଆସିବ, କିଏ କିଏ ସାଙ୍ଗରେ ଯିବେ—କେଉଁବାଟେ ଶବାଧାର ନିଆଯିବ, ସେ ସବୁ ଅନ୍ୟମାନେ ଠିକ୍ କରି ଦେଉଛନ୍ତି । କାରଣ ଆଚାର୍ଯ୍ୟଙ୍କ 'ପରିବାର'ର ଲୋକ ବୋଲି ଗୌରବ ଅନୁଭବ କରିବା ପାଇଁ କି ଅପୂର୍ବ ପ୍ରତିଯୋଗିତା ।

ଆଚାର୍ଯ୍ୟ ହରିହରଙ୍କ ତିରୋଧାନରେ ଗୋଟିଏ ଯୁଗ ଶେଷ ହୋଇଗଲା ! ଆଜି ଯେଉଁମାନଙ୍କୁ କୋଡ଼ିଏ ପଚିଶ ତିରିଶ ବୟସ, ସେମାନେ ତାଙ୍କ ମୃତ୍ୟୁର ପ୍ରଥମ ସମ୍ବାଦରେହିଁ କୁହାକୁହି ହେଉଛନ୍ତି—"ଏହି ଲୋକ ଏତେ ବଡ଼ ଥିଲା !

ଆମେମାନେ ଜାଣିପାରି ନ ଥିଲୁ ତ ?'' ସେ ଭଳି ହେବାରେ କିଛି ବିଚିତ୍ରତା ନାହିଁ । ଅନେକ ସମୟରେ ବଡ ବଡ଼ ଲୋକଙ୍କର ବଡ଼ପଣିଆ କେଉଁଠି, ତାହା ଠିକ୍‌ଭାବରେ ନଜାଣି ସେମାନଙ୍କ ଜୀବନର ବହୁ ଶ୍ରେଷ୍ଠ ଶ୍ରେଷ୍ଠ କଥା ଉପରେ ଗୁରୁତ୍ୱ ଦିଆଯାଏ । ଆମ ମାପକାଠି ଯେଉଁକ, ସେଇଥିରେ ଆମେ ଯାହା ମାପୁ ଦାସେ କେଉଁଠି କଣ କଲେ ତାହାର ଟିକିନିଖି ବିବରଣ ଦେଇ ଦେଇ ତାଙ୍କ ଜୀବନର ଅସଲ ଦିଗଟିକୁ ଭୁଲିଯାଉ । ଆମ ଦୃଷ୍ଟି ବରାବର ତଳକୁ ରହିଲାଭଳି ହୁଏ— ଉପରକୁ ଆମେ ଚାହିଁପାରୁନାହିଁ । ବିଶାଳ ଅରଣ୍ୟର ଶୋଭା, ବ୍ୟାପକତା ତଥା ଗୁରୁତ୍ୱ ସମ୍ପର୍କରେ ଅନୁସନ୍ଧାନ ଓ ଅନୁଭବ କରିବାକୁ ଯାଇ ଆମେ ସେହି ଅରଣ୍ୟର ଗୋଟିଏ ଗୋଟିଏ ବୃକ୍ଷର ସୌନ୍ଦର୍ଯ୍ୟରେ ଅଭିଭୂତ ହୋଇ ଅନେକ ସମୟରେ ରହିଯାଉ । ଶେଷକୁ ଅବସ୍ଥା ଏଭଳି ହୁଏ ଯେ ଆମେ ଅରଣ୍ୟର ଭିନ୍ନ ଭିନ୍ନ ବୃକ୍ଷ-ଲତାଙ୍କ ବିଶେଷତ୍ୱ ଭିତରେ ନିଜକୁ ଆବଦ୍ଧ କରି ରଖିଦେଉ । ବୃକ୍ଷଲତାଙ୍କୁ ଦେଖି ଦେଖି ଅରଣ୍ୟକୁ ଦେଖିବାର ଯୋଗ୍ୟତା ହରେଇବସୁ । ଆଚାର୍ଯ୍ୟଙ୍କ ସଂପର୍କରେ ଏ କଥାଟି ଅଧିକ ପ୍ରଯୁଜ୍ୟ । ସେ ଗ୍ରୀଷ୍ମାବାସରେ ପିଲାଙ୍କର କାଛୁ କଉପୁନି ଧୋଇ ଦେଉ-ଥିଲେ, ଜ୍ୱର ହେଲେ କଉଳି ରାତି ଅନିଦ୍ରା ହୋଇ ଜଗି ରହୁଥିଲେ, ହଇଜା ଲାଗିଲାବେଳେ ନର୍ଭୟରେ ଗାଁ ବୁଲୁଗଲେ, ଭଲଭାବରେ ଅଙ୍କ ପଢ଼ାଉଥିଲେ,ନିୟମିତ ସୂତା କାଟୁଥିଲେ, ଅତି ସ୍ନେହପ୍ରବଣ ଥିଲେ, ବୁଢ଼ାବେଳେ ମଧ୍ୟଗ୍ରାମ ଗ୍ରାମ ଭୂଦାନ ଗ୍ରାମଦାନ ଆନ୍ଦୋଳନର ମହତ୍ତ୍ୱ ବୁଝାଉଥିଲେ ଇତ୍ୟାଦି କଥା ବର୍ଣ୍ଣନା କଲାବେଳେ ତାଙ୍କ ଅସଲ ବିରାଟତ୍ୱ, ଅସଲ ମହତ୍ତ୍ୱକୁ ଗୌଣ ସ୍ଥାନ ଦିଆଯାଇଛି । ବିଶେଷତଃ ଗଲା ଦଶବର୍ଷ ଭିତରେ ତାହାହିଁ ହୋଇଛି । ତେଣୁ ତାଙ୍କ ବଡପଣିଆର ପ୍ରକୃତ ରୂପ ଦେଖିବାର ସୁଯୋଗ ଯୁବସମାଜକୁ ମିଳିନାହିଁ । ସେ ଭଲ ଇଂରାଜୀ ବ୍ୟାକରଣ ଖଣ୍ଡେ ଲେଖିଥିଲେ ଓ ତାହାର ପୁନର୍ମୁଦ୍ରଣ ଛଅଟିଏ ଥର ହୋଇସାରିଲାଣି ବୋଲି କହିଲାବେଳେ ଆମ କଥା ଉପରେ ଆମେ ଯେତିକି ଗୁରୁତ୍ୱ ଆରୋପ କରୁ ଭାରତର ସ୍ୱାଧୀନତା ସଂଗ୍ରାମରେ ଯେତେବେଳେ ୧୯୩୦ରେ ପ୍ରଥମେ ଆଇନ-ଅମାନ୍ୟ ଆନ୍ଦୋଳନ ହେଲା, ଆଚାର୍ଯ୍ୟ ହରିହର ହିଁ ଓଡ଼ିଶାରେ ପ୍ରଥମ ସେନାପତି ଭାବରେ ଇଞ୍ଚୁଡ଼ି ଲବଣ କ୍ଷେତ୍ରରେ ଆଇନ ଅମାନ୍ୟ କରି ବନ୍ଦୀ ହୋଇଥିଲେ ବୋଲି କହିବାକୁ ଭୁଲିଯାଉ । ଗଲା ଦଶବର୍ଷ ଧରି ରାଜନୀତି ଆକାଶରେ ତାଙ୍କର ଆବିର୍ଭାବ ହୋଇ ନଥିବାରୁ ସେ ଯେ ୧୯୨୧ର ଅସହଯୋଗ ଆନ୍ଦୋଳନ ବେଳୁ ଆରମ୍ଭ କରି ୧୯୪୫ ପର୍ଯ୍ୟନ୍ତ ଦୀର୍ଘ ପଚିଶ ବର୍ଷକାଳ ସ୍ୱାଧୀନତା ସଂଗ୍ରାମ ଭିତରେ ଓତଃପ୍ରୋତ ଭାବରେ ଜଡ଼ିତ ଥିଲେ ତାହା ସହଜରେ ଜାଣିହୁଏ ନାହିଁ । ଇଂରେଜ ସରକାର ସହିତ ଲଢ଼େଇ ଚାଲିଥିଲାବେଳେ ଅତି ସଙ୍କଟସନ୍ଧିବେଳେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ଦୁଇ ଦୁଇ ଥର ସଭାପତି ହୋଇଛନ୍ତି । ହରିହର ଯେ ଦିନେ 'ସମାଜ' କାଗଜର ସଂପାଦକ ଥିଲେ—ଏ କଥା କହିଲା ବେଳକୁ ଆଜି ଅନେକଙ୍କୁ

ନୂଆ ଭଳି ଲାଗୁଛି । ଓଡ଼ିଶାରେ ବିଂଶ ଶତାବ୍ଦୀର ଆରମ୍ଭରେ ସେ ଥିଲେ ଜଣେ ଅଦ୍ୟମ ସାହସୀ ସଂସ୍କାରକ । ସେଥିପାଇଁ ଉତ୍କଳମଣି ଗୋପବନ୍ଧୁଙ୍କ ଭଳି ସେ ମଧ୍ୟ ବହୁ ନିର୍ଯାତନା ଭୋଗିଛନ୍ତି । ଏହିସବୁ ବିଷୟରେ ଅଳ୍ପ ଅଳ୍ପ ଜାଣିଲେ ମଧ୍ୟ ଯେ କୌଣସି ଲୋକର ହୃଦ୍‌ବୋଧ ହୋଇଯିବ ଯେ ତାଙ୍କ ମୃତ୍ୟୁପରେ ତାଙ୍କୁ ଯେତିକି ବଡ଼ ବୋଲି ବୁଝାଯାଉଛି, ପ୍ରକୃତରେ ସେ ନିଶ୍ଚୟ ତାହାଠାରୁ ଅଧିକ ବଡ଼ ଥିଲେ ।

ତାଙ୍କ ବିଷୟରେ ଜାଣିବାରେ ଆଉ ଗୋଟିଏ ଅସୁବିଧା ହେଉଛି—ସେ ବହୁକାଳ ଧରି ଏ ସଂସାରରେ ରହିଥିଲେ । ସେ ଯେଉଁ ଯୁଗରେ ସାଧାରଣ କାର୍ଯ୍ୟ ଆରମ୍ଭ କରିଥିଲେ, ସେ ଯୁଗରେ ସ୍ଥିତି ବିଷୟରେ ଅନୁମାନ କରିବା ଏତେକାଳ ପରେ ଆଜି ସହଜ ହେଉନାହିଁ ! ଓଡ଼ିଶାର ଦୁର୍ଭାଗ୍ୟ ଯେ ଊନବିଂଶ ଶତାବ୍ଦୀର ଶେଷ ଭାଗରୁ ଏପର୍ଯ୍ୟନ୍ତ ଘଟିଯାଇଥିବା ଗୁରୁତ୍ୱପୂର୍ଣ୍ଣ ଘଟଣା ଗୁଡ଼ିକର ମଧ୍ୟ ସଠିକ ଧାରାବାହିକ ବିବରଣୀର ଉଲ୍ଲେଖ କୌଣସିଠାରେ ନାହିଁ । ତାହା ନ ଥିବାରୁ କେତେଗୁଡ଼ିଏ ଅତି ଗୁରୁତ୍ୱପୂର୍ଣ୍ଣ ଘଟଣା ଆଜି 'କ୍ଷୁଦ୍ର' ବୋଲି ଜଣା ପଡ଼ୁଛି ବା ତାହାର ବିପରୀତ ମଧ୍ୟ ହେଉଛି । ଆମେ ଯଦି ଆମ ମନ ଓ ଚିନ୍ତାଧାରାକୁ ସତୁରି, ଅଶି ବର୍ଷ ପଛକୁ ନେଇଯାଇ ପାରିବା ତେବେ ଯାଇ ଗୋପବନ୍ଧୁ, ହରିହର, ମଧୁସୂଦନଙ୍କ ପରିସ୍ଥିତିରେ କିଭଳି କାମ କରିଥିଲେ ସେ ବିଷୟରେ ଧାରଣା କରିପାରିବା । ଜଣେ ବ୍ରାହ୍ମଣ ମେହେନ୍ତରଟିକୁ ଛୁଇଁ ଦେଲେ ଯେଉଁ ଯୁଗରେ ପ୍ରାୟଶ୍ଚିତ୍ତ କରିବା ପର୍ଯ୍ୟନ୍ତ କଥା ଯାଉଥିଲା, ସେ ଯୁଗରେ ସମାଜ-ସଂସ୍କାରକ ହେବାପାଇଁ କେତେ ସାହସ ଓ ମନର ବଳ ଲୋଡ଼ା, ତାହା ଆଜି କ'ଣ ଆମେ ଅନୁମାନ କରିପାରିବା ?

ତାଙ୍କ ଜୀବନର ଘଟଣାବଳୀକୁ ଯେଉଁ ମାପକାଠିରେ ମପାଗଲେ ପ୍ରକୃତ ତଥ୍ୟ ମିଳନ୍ତା ସେ ମାପକାଠି ଆଜି ଆଉ ଆମ ହାତରେ ନାହିଁ କହିଲେ ଚଳେ । ଆଜି ମୂଲ୍ୟବୋଧ ବଦଳିଯାଇଛି । ଶିଷ୍ୟଙ୍କର ଗୁରୁଙ୍କ ପ୍ରତି ପୂର୍ବ ଭକ୍ତି ନାହିଁ କି ଗୁରୁଙ୍କର ଶିଷ୍ୟ ପ୍ରତି ସେହି ପୂର୍ବ ମମତା ନାହିଁ । 'ଆଦର୍ଶ ଶିକ୍ଷକ ହରିହର ସେ ଯୁଗରେ ଶିକ୍ଷାକ୍ଷେତ୍ରରେ କି ଉଲ୍ଲେଖଯୋଗ୍ୟ ଅଂଶ ଗ୍ରହଣ କରିଥିଲେ, ତାହା ଠିକ୍ ଠିକ୍ ଅନୁମାନ କରିବା ଆମପକ୍ଷରେ ସମ୍ଭବ ହେଉନାହିଁ । ' ମନୁଷ୍ୟ ପରିସ୍ଥିତିକୁ ବଦଳାଇ ଦିଏ''—କଥାଟିର ପ୍ରତିବାଦ କରି ଯେଉଁମାନେ କୁହନ୍ତି ଯେ ''ପରିସ୍ଥିତି ହିଁ ମନୁଷ୍ୟକୁ ସୃଷ୍ଟି କରେ'' ସେମାନେ ଯଦି ହରିହର, ଗୋପବନ୍ଧୁ ପ୍ରଭୃତିଙ୍କର ଜୀବନୀ ପ୍ରକୃତରେ ଅଧ୍ୟୟନ କରିବେ ତେବେ ସହଜରେ ବୁଝିପାରିବେ ଯେ ଜଣେ ଜଣେ ଯୋଗଜନ୍ମା ପୁରୁଷ ସମାଜକୁ ପରିସ୍ଥିତିକୁ ଗଭୀରଭାବରେ ପ୍ରଭାବିତ କରିଛନ୍ତି । ସ୍ରୋତର ବିପରୀତ ଦିଗରେ ପହଁରିବାର ସାମର୍ଥ୍ୟ ସେମାନଙ୍କର କିଭଳି ଥିଲା ତାହା ହୃଦୟଙ୍ଗମ କରିବା ଆମପକ୍ଷରେ ସହଜ ନ ହେଉଥିଲେ ମଧ୍ୟ ଅସମ୍ଭବ ନୁହେଁ ।

ହରିହରଙ୍କ ଠାରେ ଯେଉଁ ଅଳ୍ପ କେତୋଟି 'ବିଶେଷତ୍ୱ' ଥିଲା ତାହା ଏତେ କାଳର ସାଧନାର ପରିଣତି ବା ଫଳ ଯେ ଜଣେ ସାଧାରଣ ଲୋକପକ୍ଷରେ ତାକୁ ଠିକ୍‌ଭାବରେ ବୁଝିବା ସମ୍ଭବ ହେଉନାହିଁ । କେତେ ସାଧନା ପରେ ଜଣେ ଯାଇ ଏଭଳି ସ୍ଥାନରେ ପହଞ୍ଚିବ ଯେ ନିଜର ଭାଇ ବା ପୁତ୍ରଙ୍କୁ ଯେଉଁ ଦୃଷ୍ଟିରେ ଦେଖିବ, ନିଜର ସହକର୍ମୀ ବା ସେମାନଙ୍କର ପିଲାପିଲିଙ୍କୁ ସେହି ଦୃଷ୍ଟିରେ ଦେଖିବ ! କେତେ ସାଧନା କଲେ ଯାଇ ଜଣେ ଅନ୍ୟମାନଙ୍କଠାରୁ ପ୍ରଶଂସାପତ୍ର ପାଇବ ଯେ—"ଏହି ଲୋକ କେବେ କାହା ସହିତ କଳି କରିନାହିଁ ।" ଯେଉଁ ଲୋକ ଘରଦ୍ୱାର ଛାଡ଼ି ସନ୍ନ୍ୟାସୀ ହୋଇଯାଇଛି ତାଙ୍କ ପକ୍ଷରେ ଏହା ହୁଏତ ସହଜ । କିନ୍ତୁ ଯିଏ ସ୍କୁଲର ଶିକ୍ଷକ, ଶିକ୍ଷାନୁଷ୍ଠାନର ଆଚାର୍ଯ୍ୟ, ବିଧବାଶ୍ରମର ପରିଚାଳକ, ସତ୍ୟାଗ୍ରହୀମାନଙ୍କର ସେନାପତି, ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି, ହରିଜନ ସେବକ ସଙ୍ଘ ଓ ମୌଳିକ ଶିକ୍ଷା ପରିଷଦର ସଭାପତି, ସର୍ବୋଦୟ ଆନ୍ଦୋଳନର ନେତା ଭାବରେ ଜୀବନ କଟାଇଛି ତା'ପକ୍ଷରେ ଜଣକ ସହିତ ସୁଦ୍ଧା କଳି କରିନାହିଁ ବୋଲି ସାର୍ଟିଫିକେଟ ପାଇବା କ'ଣ କମ୍ ସାଧନାର କଥା ! ସେଥିପାଇଁ ବାରମ୍ବାର କୁହାଯାଇଛି ଓ ଯେତେ ପୁନରାବୃତ୍ତି କଲେ ମଧ୍ୟ ଦୋଷ ହେଲା ବୋଲି ମନେ ହେଉନାହିଁ ଯେ ତାଙ୍କ ବଡ଼ପଣିଆକୁ ଆଖି ପାଉନାହିଁ ।

ବିଂଶ ଶତାବ୍ଦୀର ଯେଉଁ ଦଶନ୍ଧିରେ ଆମେ ଆଜି ପହଞ୍ଚିଛୁ, ଊନବିଂଶ ଶତାବ୍ଦୀର ଠିକ୍ ସେହି ଦଶନ୍ଧିରେ ଓଡ଼ିଶାରେ ସାମ୍ରାଜ୍ୟର ପରିବର୍ତ୍ତନ ହେଉଥାଏ । ଓଡ଼ିଶା ସବାଶେଷରେ ପରାଧୀନ ହେଲାରୁ ଇଂରାଜୀ ଶିକ୍ଷା ଓ ସଭ୍ୟତାର ପ୍ରଭାବ ଲୋକଙ୍କ ଭିତରେ ପଡ଼ିବା ପାଇଁ ଟିକିଏ ଡେରି ଲାଗୁଥାଏ । ଓଡ଼ିଶାର ଯାହା ବା ଉନ୍ନତି ହୋଇଆସୁଥିଲା ୧୮୬୬ର ନ'ଅଙ୍କ ଦୁର୍ଭିକ୍ଷ ତାକୁ ଅଟକାଇ ଦେଲା । ସେହି ଦୁର୍ଭିକ୍ଷର ଧକ୍କା ଦଶବର୍ଷ ପର୍ଯ୍ୟନ୍ତ ଲୋକେ ତାକୁ ଭୁଲିନଥିଲେ । ଆମ ଏ ପ୍ରଦେଶର ଅଳ୍ପ କେତେକ ଅଞ୍ଚଳରେ ଶିକ୍ଷାର ପ୍ରସାର ଅନ୍ୟସବୁ ଅଞ୍ଚଳ ତୁଳନାରେ ଅଧିକ ହୋଇଥାଏ । ପୁରୀ ଜିଲାର ସାକ୍ଷୀଗୋପାଳ ବା ସତ୍ୟବାଦୀ ଗୋଟିଏ ପ୍ରସିଦ୍ଧ ତୀର୍ଥସ୍ଥାନ । ସମଗ୍ର ଭାରତରୁ ଯାତ୍ରୀ ସେଠାକୁ ଆସନ୍ତି । ଭଲ ନଡ଼ିଆ ବୃକ୍ଷହୁଏ । ତେଣେ ପୁରୀ ନିକଟ ହୋଇଥିବାରୁ ଓ ସାକ୍ଷୀ ଗୋପାଳ ମନ୍ଦିରଠାରୁ ଅଳ୍ପ ଦୂରରେ ଥିବାରୁ ଶ୍ରୀରାମଚନ୍ଦ୍ରପୁର ଗ୍ରାମ ଓଡ଼ିଶାର ଅନ୍ୟ ବହୁ ଗ୍ରାମ ତୁଳନାରେ ଟିକିଏ ଆଗୁଆ ଥାଏ । ମହାଦେବ ବ୍ରହ୍ମାଙ୍କର ସେ ଅଞ୍ଚଳରେ ବେଶ୍ ଖାତିର । ୧୮୭୯ରେ ତାଙ୍କର ଯେଉଁ ପ୍ରଥମ ପୁଅ ହେଲା ତାହାର ନାମ ଦିଆ ହେଲା ହରି । ପିଲାଟିକୁ ଯେତେବେଳେ ତିନି ପାଞ୍ଚ ବର୍ଷ ବୟସ ସେତେବେଳେ ମାଆ ମରିଗଲେ । ମହାଦେବ ବ୍ରହ୍ମାଙ୍କର ବୟସ ଅଳ୍ପ । ସେ ଆଉଥରେ ବିବାହ କଲେ । ସାବତ ମାଁ ଏଭଳି ଯତ୍ନରେ ପାଳିଲେ ଯେ ପିଲାଟି ଅନୁଭବ କରିନି ସତେ ଯେପରିକି ମାଆ ମରିନାହିଁ । ପରେ ଅନେକ ଭଉଣୀ ଓ

ଗୋଟିଏ ଭଉଣୀ ଜନ୍ମ ହେଲେ । ପଛ ତିନି ଭାଇଙ୍କ ନାମ ରାମ, ଗୋବିନ୍ଦ ଓ ଶଙ୍କର ଭଉଣୀର ନାମ ରହିଲା ଜଣା ।

ଗାଁରେ ଭର୍ଣ୍ଣାକୁଲାର ସ୍କୁଲ ଥାଏ; ଆଉ ଗୋଟିଏ ସଂସ୍କୃତ ବିଦ୍ୟାଳୟ ମଧ୍ୟ । ସେ କାଳରେ ଟିକିଏ ଅଧିକ ବୟସରେ ଯାଇ ପିଲା ପାଠ ପଢ଼ୁଥିଲେ । ହରିଙ୍କୁ ଯେତେବେଳେ ତେର ଚଉଦବର୍ଷ ସେତେବେଳେ ସେ ଅଞ୍ଚଳରେ ଲୋକଙ୍କର ମତିଗତି କଣ ଥିଲା, ସେ ସମ୍ପର୍କରେ ସେ ନିଜେ ଲେଖିଯାଇଛନ୍ତି । ତାଙ୍କ ଡାଏରୀରେ ଲେଖାଅଛି—"୧୮୯୩-୯୪ ସାଲର କଥା । ପାଶ୍ଚାତ୍ୟ ସଭ୍ୟତାର ଖରସ୍ରୋତ ଉତ୍କଳର ପୁରପଲ୍ଲୀକୁ ପ୍ଲାବିତ ନକରି ପାରିଥିଲେ ସୁଦ୍ଧା ଆମ ଗାଁରେ କେତେକ ପରିମାଣରେ ପ୍ରବେଶଲାଭ କରିଥିଲା । ଇଂରେଜୀ ଶିକ୍ଷାପ୍ରାପ୍ତ ଅଭିଭାବକମାନଙ୍କର ମନ ଆକୃଷ୍ଟ ହୋଇ ଆସୁଥିଲା । ଇଂରେଜୀ ପାଠପଢ଼ି ବଡ଼ ବଡ଼ ଚାକିରୀ ପାଇ ପ୍ରଭୂତ ଅର୍ଥ ଓ କ୍ଷମତା ଉପାର୍ଜନ କରିବାର ଉଦାହରଣ ସେମାନେ ଆଖି ଆଗରେ ଦେଖୁଥିଲେ । ଯେଉଁମାନେ ଇଂରାଜୀ ଦୁଇଅକ୍ଷର ପଢ଼ୁଥିଲେ ସେମାନଙ୍କର ଆଚାର—ବ୍ୟବହାର, ସ୍ୱାଚ୍ଛନ୍ଦ୍ୟ, ବେଶଭୂଷାର ପରିପାଟୀ, ନାମମାତ୍ର ଲଜ୍ଜା ନିବାରକ ବିଦେଶୀ ବସ୍ତ୍ରର ପରିଧାନ ଓ କଥାବାର୍ତ୍ତାର ପ୍ରଗଲ୍‌ଭତାରେ ପଲ୍ଲୀ ବାଳକ ମାନେ ସ୍ୱର୍ଗ ସୁଖ କଳ୍ପନା କରୁଥିଲେ । ଯାହା ବିଦେଶୀ, ତାକୁ ସଭ୍ୟତା ବୋଲି ମନେକରି ସ୍ୱଦେଶୀ ଭାବକୁ ଅସଭ୍ୟତା ବୋଲି କହିବାକୁ ଶିଖୁଥିଲେ । ଏହି ସମୟରେ ଇଂରେଜୀ ପାଠ ପଢ଼ିବା ପାଇଁ ପୁରୀ ସହରକୁ ଆସିଥିଲି ।"

ପରବର୍ତ୍ତୀ କାଳରେ ଏହି ହରି ଦିନେ ଯେତେବେଳେ "ଥାର୍ଡଫର୍ମ ହରିହର" ବୋଲି ପରିଚିତ ହୋଇଗଲେ ସେତେବେଳେ ଯେଉଁମାନେ ତାଙ୍କ ସମ୍ପର୍କରେ ଆସିଲେ ସେମାନଙ୍କ ମନରେ ଗୋଟିଏ ପ୍ରଶ୍ନ ବରାବର ଉଠେ । ଏହାଙ୍କର ଚାଲିଚଳନ ଏତେ ସାଧାସିଧା ହୋଇଲା କିଭଳି ? ସାଧାରଣ ଦରିଦ୍ର ଲୋକର ମନର କଥା ବୁଝିବାକୁ ଏଇ ସମର୍ଥ ହେଲେ କିପରି । ? ସରଳ ଜୀବନ ଓ ଦରିଦ୍ର ଲୋକର ଆଖିର ଭାଷା ବୁଝିବାର ଯୋଗ୍ୟତା ନଥିଲେ ଏତେକାଳ ଧରି ଜଣେ ଜନସାଧାରଣଙ୍କର ସେବକ ହୋଇ ରହିବା ସହଜ ହୁଅନ୍ତା ନାହିଁ । ଏହି ପ୍ରଶ୍ନର ଉତ୍ତର ସିଧାସଳଖ ନଦେଇ ମଧ୍ୟ ପରୋକ୍ଷରେ ସେ ନିଜେ ଦେଇଛନ୍ତି ।

ଗାଁରୁ ଯେତେବେଳେ ଭର୍ଣ୍ଣାକୁଲାର ସ୍କୁଲରୁ ପାସ୍‌କରି ଆସିଲେ ତାଙ୍କୁ ଛଅଟଙ୍କା ବୃତ୍ତି ମିଳୁଥିଲା । ସେତିକ ଟଙ୍କାରେ ମାସଯାକ ଚଳିଗଲେ ନନାଙ୍କ (ବାପା) ଉପରେ ଆଉ ବୋଝ ପଡ଼ିବ ନାହିଁ । ତେଣୁ ସେ କେମିତି ଚଳୁଥିଲେ ତାଙ୍କରି ଭାଷାରେ କୁହାଯାଉ—"ଯେତେବେଳେ ଆମେ ଦିକାଳେ ଭାତ ରାନ୍ଧୁ । ସେଥିରେ ବାଇଗଣ, ଅଳୁ, ସାରୁ ଯାହା ଥାଏ ତାକୁ ସିଝାଇ ନେଉ ଓ ଡାଲି (ମୁଗ) ଥିଲେ

ଙ୍କନାରେ ବାଛି ସେହି ଭାତ ହାଣ୍ଡିରେ ପକାଇ ସିଝାଇ ନେଉ । ପରେ ସେହି ସିଝା ଡ଼ାଲକୁ ଅଣକରେ ଚକଟି ସେଥିରେ ପେଜ ମିଶାଇ ଲୁଣ ଟିକିଏ ଦେଇ ଡ଼ାଲି କରୁ । ବାଇଗଣ କଖାରୁ ଯାହା ସିଝା ହୋଇଥାଏ ତାକୁ ଚକଟା କରୁ । ସକାଳେ ଭାତଡାଲି ଖାଉ । ରାତିକୁ ସେହି ସକାଳର ରନ୍ଧାଭାତ ପଖାଳ ଓ ଚକଟା ଖାଉ କେବେ କେବେ ଗ୍ରାମରୁ କେହି ଆସିଲେ ରାତି ଓଳି ରାନ୍ଧ ଦିଅନ୍ତି । ସେ ଦିନକ ସୁଖରେ ଡବଲ୍‌ଭାତ ଡ଼ାଲି ରାତିରେ ମଧ୍ୟ ଖାଉ । ଦୁଇଓଳି ରୋଷେଇ କରି ଖାଇବାକୁ ଇଚ୍ଛା ଥିଲେ ମଧ୍ୟ ପଢ଼ାପଢ଼ିରୁ ଏତେ ସମୟ ରୋଷେଇରେ ଦେବାକୁ ସମୟ ନଥାଏ ।"

ପୁରୀରେ ଅଳ୍ପ ବୟସରେ ହରିହର ଯେତେବେଳେ ଯାଇ ପହଞ୍ଚିଲେ ଦୁଇଜଣଙ୍କର ପ୍ରଭାବ ତାଙ୍କ ଉପରେ ଭିନ୍ନ ଭିନ୍ନ ସ୍ୱଭାବରେ ପଡ଼ିଲା । ଜଣେ ହେଉଛନ୍ତି ଗୋପୀନାଥ ଦାଶ । ତାଙ୍କରି ବସାରେ ସେ ବର୍ଷେ କାଳ ରହିଥିଲେ । ଗୋପୀଭାଇନାଙ୍କୁ ସେ ଖୁବ୍ ଭକ୍ତି କରୁଥିଲେ । ତାଙ୍କରି ଜରିଆରେ ଗୋପବନ୍ଧୁ ଦାସଙ୍କୁ ସେ ଚିହ୍ନିଲେ । ପ୍ରଥମେ ତାଙ୍କ ସହିତ କିପରି ଦେଖା ହେଲା ସେ କଥା ସେ ଅତି ସରଳଭାବରେ ଲେଖିଯାଇଛନ୍ତି ; ତେଣୁ ତାଙ୍କର ମୁହଁରୁ ଶୁଣିବା । ସେ ଲେଖିଛନ୍ତି— "ମୁଁ ପୁରୀ ଆସିବା ପରଦିନ ଗୋପୀଭାଇନାଙ୍କ ସାଙ୍ଗରେ ଦାସେ ଆପଣଙ୍କୁ ଭେଟିବାକୁ ଗଲି । ବାଟରେ ଆପଣେ ଆସୁଥିବାର ଦେଖିଲି । ମୁଁ ପିନ୍ଧିଯାଇଥିଲି ରଙ୍ଗଣୀ ଖଦୀ । ଦାସେ ଆପଣଙ୍କୁ ଦେଖିଲି, ସେ ପିନ୍ଧିଥିଲେ କଳାପାହାଡ଼ି ଖଦୀ ଅବଶ୍ୟ ମୋ ଖଦୀଠାରୁ ଅଳ୍ପସରୁ । ତାଙ୍କର ଏ ବେଶଭୂଷା ଦେଖି ମୋର ବଳିଆ ପତଳାଲୁଗା ପିନ୍ଧିବାର କଳ୍ପନା ଏକାବେଳକେ ଉଭେଇଗଲା । ଦାସେ ଆପଣଙ୍କ ସାଙ୍ଗରେ ଆଳାପ ହେଲାପରେ ସେ ମୋତେ ଅତି ଆପଣାର କରିନେଲେ । ମୁଁ ମୋ ଜୀବନରେ କାହାରିକୁ ଗୁରୁ କରିଥିବା ମୋର ମନେ ନାହିଁ । ଏପରିକି ମୋର କର୍ଣ୍ଣମନ୍ତ୍ରଦାତା ଗୁରୁ ମଧ୍ୟ କେହି ନାହାନ୍ତି । ମୋ ନନା ମୋତେ ଅନେକ ଥର ମନ୍ତ୍ରଗୁରୁ କରିବା ପାଇଁ କହିଛନ୍ତି; କିନ୍ତୁ ମୁଁ ସେଥିରେ ରାଜି ହୋଇନାହିଁ । କାରଣ, ମୁଁ ଯେଉଁଦିନ ଦାସେ ଆପଣଙ୍କୁ ପ୍ରଥମେ ଭେଟିଲି ସେହିଦିନଠାରୁ ତାଙ୍କୁ ଗୁରୁ ଆସନରେ ବସାଇ ସାରିଥିଲି ।" ଗୋପବନ୍ଧୁଙ୍କ ସହିତ ତାଙ୍କର ଏହି ଯେଉଁ ସାକ୍ଷାତ୍ ହେଲା ଓ ସେହି ସାକ୍ଷାତ ପ୍ରଭାବ ତାଙ୍କ ଉପରେ ଯେଉଁପରି ପଡ଼ିଲା, ହରିହରଙ୍କ ପରବର୍ତ୍ତୀ ଜୀବନସ୍ରୋତ ନୂତନ ଗତି ଧରିଲା । ୧୯୨୮ରେ ଦାସେ ଆପଣେ ଏ ସଂସାରରୁ ବିଦାୟ ନେଲା ପର୍ଯ୍ୟନ୍ତ ହରିହର ତାଙ୍କ ପ୍ରତି ସେହି ପ୍ରଗାଢ ଭକ୍ତି ଅକ୍ଷୁର୍ଣ୍ଣ ରହିଲା । ଗୋପୀ ଭାଇନା ମଧ୍ୟ ହରିହର ହୃଦୟରେ ଅତି ଉଚ୍ଚସ୍ଥାନରେ ବସିଥିଲେ । ତାଙ୍କ କଥା ଯେତେବେଳେ ପଡ଼େ ଓ ବକୁଳବନ ବିଦ୍ୟାଳୟ ଆରମ୍ଭ କଲେ ଗୋପୀଭାଇନାଙ୍କଠାରୁ ଅକୁଣ୍ଠିତ ସାହାଯ୍ୟ ମିଳିବା କଥା ସେ ଯେତେବେଳେ କୁହନ୍ତି ଆଶ୍ଚର୍ଯ୍ୟ ହରିହର ଭାବ ଗଦ୍‌ଗଦ୍ ହୋଇ ଉଠନ୍ତି । ଗୋପୀଭାଇନାଙ୍କ ପୁଅ ସର୍ବେଶ୍ୱରଙ୍କୁ ସେ ଏତେ ସ୍ନେହ ଆଦର ଯେ କରନ୍ତି ତାହାର ମୂଳ ହେଉଛି ୫୧୩-୧୪ର

ସେହି ପୁରୀ-ବସା । ସର୍ବେଶ୍ୱରଙ୍କର ଆଚାର୍ଯ୍ୟ ହରିହରଙ୍କ ପ୍ରତି ଭକ୍ତିକୁ ଲକ୍ଷ୍ୟ କଲେ ଆଜି ମଧ୍ୟ ଅନୁମାନ କରିହେବ ହରିହର ଗୋପୀଭୂଷଣଙ୍କ ପ୍ରତି କିଭଳି ଅନୁରକ୍ତ ଥିଲେ ।

ସେବକ ହରିହରଙ୍କର "ମୂଳଦୁଆ ଶୋଧ" ହୋଇଥିଲା ତାଂକ ଛାତ୍ରଜୀବନ-ବେଳେ । ସେତିକିବେଳୁ ମଜବୁତ ମୂଳଦୁଆ ନ ପଡ଼ିଥିଲେ ତା ଉପରେ ଦୀର୍ଘ ସତୁରି ବର୍ଷର "ସେବା-ସୌଧ" ମୁଣ୍ଡଟେକି ଠିଆ ହୋଇପାରି ନ ଥାନ୍ତା । ହାଇସ୍କୁଲରେ ପଢ଼ିଲାଦିନୁ ହିଁ ତାଂକର ମନ ବଳିଲା ଲୋକହିତକର କାମ କରିବା ପାଇଁ । କାହାର ରୋଗ ହେଲେ ସେବା କରିବା, ଲୋକ ଅଭାବ ପଡ଼ିଲେ ମଡ଼ା ଉଠାଇବାରେ ସାହାଯ୍ୟ କରିବା, ଗାଁ ସ୍କୁଲପାଇଁ ଚୁଣ ବାଉଁଶ ସଂଗ୍ରହ କରିବା ଓ ଗାଁର ନିରକ୍ଷର ଲୋକଙ୍କୁ ପାଠ ପଢ଼ାଇବା କାମ ସେହି ଅଳ୍ପ ବୟସରୁ ସେ କରିଥିଲେ । ସେବାହିଁ ଥିଲା ତାଙ୍କର ସହଜାତ ଗୁଣ । ସେହି ନିଆଁରେ ଗୁରୁ ଗୋପବନ୍ଧୁ ମଝିରେ ମଝିରେ ବରାବର "ଉତ୍ସାହ ଘିଅ', ଢାଳନ୍ତି, ତେଣୁ ତାହା କେବେହେଲେ ଲିଭି ନଥିଲା । ଓଡ଼ିଶାରେ ଯେଉଁମାନେ ବଢ଼ି ମରୁଡ଼ି ଦୁର୍ଭିକ୍ଷ ହଇଜା ବେଳେ ବେସରକାରୀ ସାହାଯ୍ୟ ବା:ସେବାର ଇତିହାସ ଜାଣନ୍ତି; ସେମାନେ ସ୍ୱୀକାର କରିବେ ଯେ ଆଚାର୍ଯ୍ୟ ମହାଶୟ ହିଁ ଗୋଟିଏ ସଂଗଠିତ ସେବାର ମୂଳଦୁଆ ଏ ପ୍ରଦେଶରେ ପକାଇଥିଲେ । ଛାତ୍ରମାନଙ୍କୁ ଯୁବକମାନଙ୍କୁ ସଂଗଠିତ କରି ସେବା-ଦିଗରେ ବ୍ରତୀ କରାଇବାର କୌଶଳ ତାଙ୍କୁ ଜଣାଥିଲା । ଜଣେ ଯଥାର୍ଥରେ କହିଥିଲେ, ଆଚାର୍ଯ୍ୟ ହରିହର ପ୍ରକୃତ ଅର୍ଥରେ ସେବାର କଳା ତଥା ବିଜ୍ଞାନ ଉଭୟକୁ ଆୟତ୍ତ କରିଥିଲେ । ସମସ୍ତେ ଲକ୍ଷ୍ୟ କରିଥିବେ ଯେ ସେବାର ଉଭୟ ଦିଗ—ମାନବିକ ତଥା ବୈପ୍ଳବିକ—ଭିତରେ ସେ ସାମଞ୍ଜସ୍ୟ ରଖିପାରୁଥିଲେ । ଟଙ୍କା ଅଭାବରୁ ଯେଉଁ ହଇଜା ରୋଗୀ ଚିତ୍କାର କରୁଛି ତାକୁ ଔଷଧ ଦେବାପାଇଁ ସେ ଯେତିକି ଆତୁର ହେଉଥିଲେ, କୋରାପୁଟର ପାହାଡ଼-ଜଙ୍ଗଲ କୋଳରେ ରହୁଥିବା ଆଦିବାସୀଙ୍କ ମନରେ ଅତ୍ୟାଚାର ବିରୁଦ୍ଧରେ ଶକ୍ତିର ସଞ୍ଚାର କରିବା ପାଇଁ ମଧ୍ୟ ଠିକ୍ ସେହି ପରିମାଣରେ ବ୍ୟାକୁଳତା ଦେଖାଉଥିଲେ । ଅତ୍ୟାଚାର ସହି ସହି ଯେଉଁ ଦରିଦ୍ର ଲୋକଙ୍କର ଅଣ୍ଟା ନଇଁଯାଇଛି ସେମାନଙ୍କ ହାତଧରି, ଅଣ୍ଟାକୁ ଆଉଁସିଦେଇ ସିଧା କରେଇବା କାର୍ଯ୍ୟକୁ ସେ ସେବା ବୋଲି ଧରି ନେଇଥିଲେ । ତାଙ୍କର ଶବାଧାର ଫେବୃୟାରୀ ୨୧ ତାରିଖ ( ୧୯୭୧ ) ଅପରବେଳା ଚାରିଟାବେଳେ ଯେତେବେଳେ ପୁରୀ ସେବାସମିତି ନିକଟରେ ପହଞ୍ଚିଲା, ସେତେବେଳେ ଜଣେ କାନ୍ଦିଉଠି କହିପକାଇଲେ—" ଏ ଯେଉଁ ଲୋକ ଆଜି ଆଖି ବୁଜିଦେଇଛି ସେ ତା ଜୀବନରେ ନିଜେ ତ ଲକ୍ଷେ ଲୋକଙ୍କ ସେବା କରିଥିବ । ଯେଉଁ ଯୁଗରେ ରଥଯାତ୍ରାରୁ ଫେରିଲାବେଳେ ଶହ ଶହ ଲୋକ ବାଟରେ ନିଶ୍ଚୟ ହଇଜାରେ ପଡ଼ି ମରୁଥିଲେ, ସେ

ଯୁଗରେ ଆଗୃଯିଙ୍କୁ ଦେଖିଲେ ମନେ ହେଉଥିଲା ଯେପରିକି ସେ ଅସହାୟର ଉଦ୍ଧାର ପାଇଁ ଜନ୍ମ ହୋଇଛନ୍ତି ।"

ବୃଦ୍ଧମାନେ 'ହରିହର'ଙ୍କୁ ଯେତିକି ଲୋକ ଜାଣନ୍ତି, 'ସଂସ୍କାରକ ଆଗୃଯି'ଙ୍କ କଥା ଭାବି ଯେତିକି ସଂଖ୍ୟକ ଲୋକ ଧନ୍ୟ ଧନ୍ୟ ବୋଲି କୁହନ୍ତି, 'ଶିକ୍ଷକ ହରିହର'ଙ୍କୁ ତାହାଠାରୁ ଅଧିକ ସଂଖ୍ୟକ ଲୋକ ଓଡ଼ିଶାରେ ଜାଣନ୍ତି ବୋଲି କହିଲେ ଗୋଟାଏ କିଛି ମସ୍ତବଡ ଭୁଲ ହୋଇଯିବ ନାହିଁ । ଆଜି ଓଡ଼ିଶାର ଯେଉଁ କୋଣକୁ ଯାଅ, ଦେଖିବ ସେଠାରେ ଆଗୃଯିଙ୍କର ଛାତ୍ର ରହିଛନ୍ତି । ସେ କେବେଠାରୁ 'ପାଠ ପଢ଼ାଇଲେ' ବୋଲି ପଚାରିଲେ ସତେ ଯେପରିକି ଆଖି ପାଉନାହିଁ । ଅଳ୍ପ ବୟସର ଛାତ୍ର ହୋଇ ଗାଁରେ ଥା'ନ୍ତି । ରାତିରେ ଗାଁ ଲୋକଙ୍କୁ, ନିରକ୍ଷରଙ୍କୁ ପାଠ ପଢାନ୍ତି । ଘରକୁ ଫେରିଲାବେଳକୁ ଡେରି ହୋଇଯାଏ । ପିଲାଲୋକ କେଉଁଠି କ'ଣ କରୁଥିବ ଭାବି ବୋଉ (ମା) ଶ୍ରଦ୍ଧାଦେବୀଙ୍କ ମନରେ ଥରେ ଥରେ ଆଶଙ୍କା ଉପୁଜେ । କିନ୍ତୁ ହରି ଏଭଳି ଗେହ୍ଲା ହୋଇଥାଏ ଯେ ସେ ତାକୁ କିଛି କୁହନ୍ତି ନାହିଁ । ଦିନେ ପଚାରିଲେ—"ଏତେ ଡେରିଯାଏ କେଉଁଠି ରହୁଛୁ ?" ଏତେ ଲୋକଙ୍କୁ ପାଠ ପଢ଼ାଉଥିବା କଥା ଶୁଣି କହି ପକାଇଲେ—"ଆରେ ପୁଅ ମୋତେ ଟିକିଏ ଅକ୍ଷର ଶିଖାନ୍ତୁ ନାହିଁ ?" ସେହି ଦିନଠାରୁ ସେ ମାଆଙ୍କର 'ଶିକ୍ଷକ' ହେଲେ । ସେହି କାଳରୁ ଆମେ ଯଦି ଚାଲିଆସିବା ୧୯୪୫ ବ୍ରହ୍ମପୁର ଜେଲରେ ବନ୍ଦୀ ଥିବା ଯୁଗ ପର୍ଯ୍ୟନ୍ତ, ବରାବର ଲକ୍ଷ୍ୟ କରିବା ସେ ଶିକ୍ଷକତା କେବେହେଲେ ଛାଡ଼ି ନାହାନ୍ତି । ପୁରୀରେ ପାଠ ପଢ଼ିଲାବେଳେ ସେ ଯେତେବେଳେ ତାଙ୍କର ମାମୁଁ ଅଜା ହରିହର ମିଶ୍ର (ଓକିଲ) ଙ୍କ ଘରେ ରହୁଥିଲେ, ସେତିକିବେଳେ ଲକ୍ଷ୍ୟ କରିଥିଲେ ଯେ ଓକିଲାତିରୁ ଭଲ ପଇସା ହୁଏ । ନନା ମହାଦେବ ବ୍ରହ୍ମା ବରାବର ଇଚ୍ଛା କରୁଥାନ୍ତି, ହରି କେମିତି ଓକିଲ ହେବ । ଏଫ୍. ଏ. ପାସ୍ ପରେ ସେ ବି. ଏଲ୍. ପଢ଼ିଲେ । କଟକରୁ ଯାଇ କଲିକତାରେ ମଧ୍ୟ କିଛିଦିନ ସେହି ପାଠ ପଢ଼ିଥିଲେ । 'କିନ୍ତୁ କାହିଁକି କେଜାଣି ଓକିଲାତି ବ୍ୟବସାୟ ଆଡକୁ ତାଙ୍କର ମନ ମୋଟେ ଗଲାନାହିଁ । ଶେଷ ପରୀକ୍ଷା ନ ଦେଇ ସେ ଚାଲି ଆସିଲେ ।' ପୁରୀ ଜିଲା ସ୍କୁଲରେ ଆସି ଶିକ୍ଷକତା କଲେ । ସରକାରୀ ଚାକିରିରେ ମନ ମାନିଲା ନାହିଁ । ନୀଳଗିରି ଗଡ଼ଜାତରେ ଗୋଟିଏ ପ୍ରସ୍ତାବିତ ହାଇସ୍କୁଲକୁ ଯିବାକୁ ମନକଲେ । ସେ ସେଠାକୁ ଗଲାବେଳକୁ ଉମାଚରଣ ଦାସ ଥା'ନ୍ତି ହେଡ଼ମାଷ୍ଟର । ତାଙ୍କ ପରେ ଗୋପବନ୍ଧୁ ଦାସ ସେହି ପଦରେ ରହିଲେ । ଓକିଲାତି ଫଳ ବାହାରିଲାରୁ ଦାସେ ଆପଣେ ଓକିଲାତି କରିବାକୁ ଚାଲିଗଲେ । ହରିହର ସହକାରୀ ହେଡ଼ମାଷ୍ଟର ଭାବରେ ଥାଆନ୍ତି । ସ୍କୁଲଟିକୁ ଭଲଭାବରେ ଗଢ଼ିବାପାଇଁ ପ୍ରବଳ ଉଦ୍ୟମ ଚାଲିଥାଏ । ଥରେ ପଲିଟିକାଲ୍ ଏଜେଣ୍ଟ୍ କବ୍‌ଡେନ୍ ରାମ୍‌ସେ ଆସିଲେ । ବଙ୍ଗ ଦେଶରେ ସେତେବେଳକୁ ଜାତୀୟ ଆନ୍ଦୋଳନ ଖୁବ୍ ମୁଣ୍ଡ ଟେକିଲାଣି । କବ୍‌ଡେନ୍‌ଙ୍କର ବୋଧହୁଏ ସନ୍ଦେହ ହେଲା

ଯେ ମୋଗଲବନ୍ଦୀର ଏହି ଯୁବକମାନେ ଏଠାରେ ଆସି ଗୋଟିଏ କିଛି ମତଲବରେ ଅଛନ୍ତି । ସେ ରାଜାଙ୍କୁ ପରାମର୍ଶ ଦେଲେ 'ହାଇସ୍କୁଲ ଭାଙ୍ଗି ଦିଆଯାଉ ।' ତାଙ୍କ ପରାମର୍ଶିତ ହୁକୁମ ଠାରୁ ବଳେ । ସ୍କୁଲ ଭାଙ୍ଗିଲା । ତା' ପରେ ହରିହର ଆସିଲେ କଟକର ପ୍ୟାରୀମୋହନ ଏକାଡ଼େମୀକୁ । ସେଠାରେ ସେ ନିଜର ଦକ୍ଷତା ଯୋଗୁଁ ସମସ୍ତଙ୍କ ପ୍ରିୟପାତ୍ର ହେଲେ । ବେଶୀ ବୟସର ପିଲା ଖୁବ୍ ଦୁଷ୍ଟାମି କରୁଥାନ୍ତି । ସେମାନଙ୍କୁ ସେ ଯେମିତି ସ୍ନେହରେ ବଶ କରି ଶାନ୍ତ କରାଇଲେ, ସେ କାହାଣୀ ଆଜି ମଧ୍ୟ ବହୁ ଲୋକ କୁହନ୍ତି । ୧୯୧୬ରେ ସେ ଗଲେ ସତ୍ୟବାଦୀର ବକୁଳ ବନ ବିଦ୍ୟାଳୟକୁ । ଉତ୍କଳମଣି, ନୀଳକଣ୍ଠ, ଗୋଦାବରୀଶ, ନନ୍ଦକିଶୋର, କୃପାସିନ୍ଧୁଙ୍କ ଗହଣରେ ସେଠାରେ ସେ ଆଦର୍ଶ ବିଦ୍ୟାଳୟ ଚଳାଇବାରେ ଭାଗୀ ହୋଇଥିଲେ । ୧୯୨୧ରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ସତ୍ୟବାଦୀ ହାଇସ୍କୁଲକୁ ଜାତୀୟ ବିଦ୍ୟାଳୟରେ ପରିଣତ କରାଗଲା । ଗୋପବନ୍ଧୁ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାରୁ ସରକାରଙ୍କ କୁଦୃଷ୍ଟି ଏହି ବିଦ୍ୟାଳୟ ଉପରେ ପଡ଼ିଲା ଓ ଏହା କ୍ରମେ ବନ୍ଦ ହୋଇଗଲା । ହରିହରଙ୍କ ଶିକ୍ଷକ-ଜୀବନ ଏହିଠାରେ ଶେଷ ହେଲେ ମଧ୍ୟ ଶିକ୍ଷାଦାନର ସୁଯୋଗ ସେ ସବୁବେଳେ ଖୋଜିଛନ୍ତି । ୧୯୩୦ରେ ହଜାରୀବାଗ୍ ଜେଲ୍ ଭିତରେ ବନ୍ଦୀମାନଙ୍କୁ ପଢାଇବାର ଦାୟିତ୍ୱ ତାଙ୍କରି ଉପରେ ଥିଲା । 'ଭାରତ ଛାଡ଼' ଆନ୍ଦୋଳନରେ ଯୋଗଦେଇ ସେ ଯେତେବେଳେ ୧୯୪୨ ଅଗଷ୍ଟରେ ବ୍ରହ୍ମପୁର ଜେଲରେ ଅଟକବନ୍ଦୀ ହେଲେ ସେତେବେଳେ ଆରମ୍ଭ କରିଥିଲେ ଗୀତା-କ୍ଲାସ । ଦୀର୍ଘ ଦୁଇବର୍ଷ କାଳ ପ୍ରତିଦିନ ଜଗନ୍ନାଥ ଦାସ, ଲୋକନାଥ ମିଶ୍ର, ଗୋପବନ୍ଧୁ ଚୌଧୁରୀ ଓ ଭଗୀରଥି ମହାପାତ୍ରଙ୍କ ମେଳରେ ବସି ସେ ଗୀତା ଓ ଉପନିଷଦ୍ ପଢାନ୍ତି । ସେହିଠାରେହିଁ 'ସମସ୍ୱରେ ଶ୍ରୀମଦ୍ଭଗବତ ଗୀତା' ରଚିତ ହୋଇଥିଲା । ମହାତ୍ମା ଗାନ୍ଧୀ ସେତେବେଳେ ଦେଶବାସୀଙ୍କୁ ଆହ୍ୱାନ କଲେ ନୂତନ ଶିକ୍ଷା ବା 'ନୟୀତାଲିମ୍'ର ପ୍ରବର୍ତ୍ତନ ପାଇଁ । ଉତ୍କଳ ମୌଳିକ ଶିକ୍ଷା ପରିଷଦ ଗଠନ କରାଗଲା ସେହି ପରିଷଦର ସଭାପତି ଥିଲେ ଆଗୁର୍ଯ୍ୟ ହରିହର । ସେ ଯେଉଁ କ୍ଷେତ୍ରରେ ଆଆନ୍ତୁ ନା କାହିଁକି "ଶିକ୍ଷକତା" କେବେହେଲେ ଛାଡ଼ି ନାହାନ୍ତି ।

୧୯୩୦ରେ ମହାତ୍ମା ଗାନ୍ଧୀ ସ୍ଥିର କରିଦେଲେ ଯେ ପୂର୍ଣ୍ଣ ସ୍ୱାଧୀନତା ହାସଲ ପାଇଁ ଆଇନ-ଅମାନ୍ୟ ଆନ୍ଦୋଳନ କରିବାକୁହିଁ ହେବ । ସେ ପ୍ରଥମେ ଲବଣ ଆଇନ୍ ଅମାନ୍ୟ କରିବେ । ସେହି ଉଦ୍ଦେଶ୍ୟରେ ଗୁଜୁରାଟର ସାବରମତୀ ଆଶ୍ରମରୁ ସମୁଦ୍ରକୂଳର ଦାଣ୍ଡି ଅଭିମୁଖେ ଯାତ୍ରା କଲେ । ଭାରତର ପ୍ରତି ପ୍ରଦେଶରୁ ଦୁଇଜଣ ଲେଖାଁ ମୁଖ୍ୟନେତା ଆଇନ ଅମାନ୍ୟର ଦାୟିତ୍ୱ ନେବେ । ସେମାନେ ଦଳେଲେଖା ସତ୍ୟାଗ୍ରହୀଙ୍କୁ ସଙ୍ଗରେ ଧରି ଗୋଟିଏ ନିର୍ଦ୍ଦିଷ୍ଟ ଦିନରେ ଲବଣ ଆଇନଅମାନ୍ୟ

କରିବେ । ସେମାନେ ଗିରଫ ହେଲା ପରେ ଅନ୍ୟମାନେ ନେତୃତ୍ୱ ନେବେ । ଓଡ଼ିଶାରୁ ବଛାଯାଇଥିଲେ ଗୋପବନ୍ଧୁ ଚୌଧୁରୀ ଓ ଆଚାର୍ଯ୍ୟ ହରିହର । ୬ ତାରିଖ ଦିନ କଟକଠାରୁ ଚୌଧୁରୀ ଓ ଆଚାର୍ଯ୍ୟଙ୍କ ନେତୃତ୍ୱରେ ସତ୍ୟାଗ୍ରହୀ ଦଳ ବାଲେଶ୍ୱରର ଇଞ୍ଚୁଡ଼ି ଅଭିମୁଖେ ବାହାରିଲେ । ଅନ୍ୟ ଗୋଟିଏ ମକଦ୍ଦମାରେ ଓ୍ୱାରେଣ୍ଟ ଥିବାରୁ ଚୌଧୁରୀଙ୍କୁ ଅଧବାଟରୁ ଗିରଫ କରି ନିଆଗଲା । ଆଚାର୍ଯ୍ୟ ହରିହର ଇଞ୍ଚୁଡ଼ି ଅଭିମୁଖେ ଯାତ୍ରାକଲେ । ସେଇଠାରେ ସେ ଏପ୍ରିଲ୍ ୧୩ ତାରିଖ ଦିନ ପ୍ରଥମେ ଲବଣ ଆଇନ୍ ଅମାନ୍ୟ କରିବାକୁ ଯାଇ ଗିରଫ ହେଲେ । ମହାତ୍ମା ଗାନ୍ଧୀଙ୍କ ଆଇନ୍ ଅମାନ୍ୟ ଆନ୍ଦୋଳନ ବା ସ୍ୱାଧୀନତା ସଂଗ୍ରାମର ପ୍ରଥମ ସେନାପତି ଆଚାର୍ଯ୍ୟ ହରିହରଙ୍କୁ ହଜାରୀବାଗ ଜେଲକୁ ପଠାଇ ଦିଆଯାଇଥିଲା । ସମସ୍ତଙ୍କ ଆହ୍ୱାନରେ ଓଡ଼ିଶାର ବହୁସଂଖ୍ୟକ ସ୍ୱେଚ୍ଛାସେବକ ସତ୍ୟାଗ୍ରହୀ ତାଲିକାରେ ନାମ ଲେଖାଇଥିଲେ ଓ ଓଡ଼ିଶାରେ ଜୋରସୋରରେ ସଂଗ୍ରାମ ଚାଲିଥିଲା । ସମସ୍ତଙ୍କ ସାଙ୍ଗରେ ସେ ୧୯୩୧ ମାର୍ଚ୍ଚରେ ଗାନ୍ଧୀ-ଇରଉଇନ୍ ଚୁକ୍ତି ଫଳରେ ଖଲାସ ହେଲେ ।ପୁଣି ଯେତେବେଳେ ୧୯୩୨ରେ ସରକାରଙ୍କ ସହିତ ସଂଘର୍ଷ ହେଲା, ହରିହର ଆଗୁଆ ହୋଇ ବାହାରି ପଡ଼ିଲେ । ୧୯୩୩ ବେଳକୁ ସାମୂହିକ ଆଇନ ଅମାନ୍ୟ ଆନ୍ଦୋଳନ ବନ୍ଦକରି ଦିଆଗଲା । କଂଗ୍ରେସ ଲୋକଙ୍କ ଭିତରେ କେତେକ ପରିମାଣରେ କ୍ଳାନ୍ତି ଦେଖାଦେଇଥିଲା । ତେଣୁ ଗାନ୍ଧୀଜୀ ଏପରି କଲେ କିନ୍ତୁ ତାହା ସଙ୍ଗେ ସଙ୍ଗେ ଏକଥା ମଧ୍ୟ ଜଣାଇଦେଲେ ଯେ ଯେଉଁମାନଙ୍କ ମନୋବଳ ଠିକ୍ ଅଛି, ଯେଉଁମାନେ ବିଶ୍ୱରୁଦ୍ଧନ୍ତ ସ୍ୱାଧୀନତାର ସଂଗ୍ରାମ ଚଳାଇ ଦିବାକୁ ହିଁ ହେବ, ସେମାନେ "ବ୍ୟକ୍ତିଗତ ଆଇନ୍ ଅମାନ୍ୟ" କରନ୍ତୁ । ହରିହର ଓ ଗୋପବନ୍ଧୁଙ୍କ ପ୍ରେରଣାରେ ଓଡ଼ିଶାର ଅଳ୍ପ କେତେଜଣ ଲୋକ "ବ୍ୟକ୍ତିଗତ ଆଇନ ଅମାନ୍ୟ" କରିଥିଲେ । ଆଚାର୍ଯ୍ୟ ମହାଶୟ ୧୯୩୪ ମେ' ମାସ ବେଳକୁ ଜେଲରେ ଥାଆନ୍ତି । ମହାତ୍ମା ଗାନ୍ଧୀ ସେହି ମାସ ୯ ତାରିଖ ଦିନ ପୁରୀରୁ ହରିଜନ ପଦଯାତ୍ରା ଆରମ୍ଭ କଲାବେଳେ ହରିହର ଥାଆନ୍ତି ଜେଲ ଭିତରେ । ଯାତ୍ରାର ଶେଷ ବେଳକୁ ସେ ମୁକ୍ତି ପାଇ ଗାନ୍ଧୀଜୀଙ୍କୁ ଆସି ଦେଖା କରିଥିଲେ । ୧୯୪୨ରେ ଯେତେବେଳେ 'ଭାରତ ଛାଡ଼' ଆନ୍ଦୋଳନ ଆରମ୍ଭ ହେଲା, ତେସଠି ଚଉଷଠି ବର୍ଷର ବୃଦ୍ଧ ହରିହର ସେଥିରେ ଝାସ ଦେଲେ । ଅଟକବନ୍ଦୀ ଭାବରେ ଦୁଇ ବର୍ଷରୁ ଅଧିକ କାଳ ରହିଲା ପରେ ୧୯୪୪ ଶେଷ ଭାଗରେ ଜେଲମୁକ୍ତ ହୋଇଥିଲେ ।

ଏହିଠାରେ ଉଲ୍ଲେଖ କରାଯାଇପାରେ ଯେ ଆଜି ନାରୀ ସ୍ୱାଧୀନତା ଯେଉଁଭଳି ରୂପ ନେଇଛି, ତିରିଶ ବର୍ଷ ତଳେ ସେ ଭଳି ନେଇ ନ ଥିଲା । ଆଜି ଶ୍ରୀମତୀ ରମା ଦେବୀଙ୍କର ଯେଉଁ ପ୍ରତିଷ୍ଠା ଅଛି, ତିରିଶ ବର୍ଷ ତଳେ ଠିକ୍ ସେମିତି ନଥିଲା, ତାଙ୍କ ବୟସ ମଧ୍ୟ କମ୍ ଥିଲା । ସୌଭାଗ୍ୟର କଥା ଯେ ଆଚାର୍ଯ୍ୟ ହରିହରଙ୍କ ଭଳି ଜଣେ ଉଚ୍ଚକୋଟିର ଚରିତ୍ରବାନ୍ ନେତା ଓ ଶ୍ରୀମତୀ ରମା ଦେବୀ

ମିଳିତ ଭାବରେ ଏହି ନାରୀ ଜାଗରଣ ଓ ସ୍ୱାଧୀନତା ସଂଗ୍ରାମ ଦିଗରେ କାମ କଲେ । ଉଭୟଙ୍କ ଉପରେ ସମସ୍ତଙ୍କର ଅଗାଧ ବିଶ୍ୱାସ ଜନ୍ମିଗଲା । ଆଗ୍ରୂର୍ଯ୍ୟ ହରିହର ତାଙ୍କର ଖୁବ୍ ଅଳ୍ପ ବୟସବେଳେ ବିବାହ କରିଥିଲେ ମଧ୍ୟ ପ୍ରଥମ ସ୍ତ୍ରୀ ତାଙ୍କ ଘରକୁ 'ପହିଲି ପାଳି' ଆସିଲା ପୂର୍ବରୁ ମୃତ୍ୟୁମୁଖରେ ପଡ଼ିଥିଲେ । ତାହାର ଅଳ୍ପଦିନ ପରେ ସେ ସେହି କମ୍ ବୟସରେ ଦ୍ୱିତୀୟ ଥର ବିବାହ କରି ନିଜର ପତ୍ନୀଙ୍କୁ ମାସ କେତୋଟାରେ ହରାଇଥିଲେ । ଯୁବକବେଳୁ ସେ ଏହି ଧରଣର ସାଂସାରିକ ସୁଖରୁ ମନକୁ ଏକାବେଳକେ ଫେରାଇ ନେଇଥିଲେ । ସେହି କାଳରୁ ନାରୀ ଭିତରେ ସେ ମାତାର, ଭଗିନୀର ବା କନ୍ୟାର ରୂପହିଁ ଦେଖିଛନ୍ତି । ତାଙ୍କ ଚରିତ୍ରବଳ ଉପରେ ଅନ୍ୟମାନଙ୍କର ଏଭଳି ଅଗାଧ ବିଶ୍ୱାସ ଥିଲା ଯେ ମାତ୍ର ୪୫ବର୍ଷ ବୟସବେଳେ ୧୯୨୪ରେ ଦାସେ ଆପଣେ ତାଙ୍କୁ ପୁରୀ ବିଧବାଶ୍ରମର ପରିଚାଳନା ଦାୟିତ୍ୱ ଦେଇଥିଲେ । ୧୯୩୧ ବେଳେ ତାଙ୍କର ବୟସ କେବଳ ୫୨; କିନ୍ତୁ ଓଡ଼ିଶାର ସମସ୍ତେ ତାଙ୍କୁ ସେହି ବୟସରୁ ମଧ୍ୟ 'ବୃଦ୍ଧପିତାମହ' ବୋଲି ମନେ କଲେଣି । ତାଙ୍କର 'ପିତୃଣଗାର' ଭିତରେ 'ମାତୃତ୍ୱ'ର ମାତ୍ରା ଏତେ ଅଧିକ ପରିମାଣରେ ଥିଲା ଯେ ଝିଅବୋହୂମାନେ ତାଙ୍କ ପାଖରେ ବସିଲେ ନିଜ ମା' କୋଳରେ ଅଛନ୍ତି ବୋଲି ବିଚାରନ୍ତି । ନାରୀ ମାନଙ୍କର ଏହି ବିଶ୍ୱାସ ଭକ୍ତିର ଉପଯୁକ୍ତ ପାତ୍ର ସେ ଥିଲେ । ଫଳରେ ବହୁସଂଖ୍ୟାରେ ମହିଳାମାନେ ଆସି ପୁରୀ ମୋଚିସାହି ମହିଳା ଟ୍ରେନିଂ କ୍ୟାମ୍ପରେ ଯୋଗଦେଲେ । ଯେଉଁମାନେ ସେହିଠାରେ ତାଲିମ୍ ପାଇଥିଲେ ସେମାନେ ପରବର୍ତ୍ତୀ କାଳରେ ଓଡ଼ିଶାରେ ଭିନ୍ନ ଭିନ୍ନ ସମୟର ସ୍ୱାଧୀନତା ଆନ୍ଦୋଳନରେ ମୁଖ୍ୟ ଭାଗ ନେଲେ । ଆଜି ମଧ୍ୟ ସେମାନେ ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟ କରୁଛନ୍ତି । ସେହିମାନେ ଯେଉଁ ସାହସ ଦେଖାଇଲେ, ତାହାର ପରିଣାମରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ବହୁସଂଖ୍ୟକ ନାରୀକର୍ମୀ ସାଧାରଣ କ୍ଷେତ୍ରକୁ ଆସିଲେ ।

ତେଣୁ ଆଜି ମଧ୍ୟ ରମା ଦେବୀ, ମାଳତୀ ଦେବୀ ପ୍ରଭୃତି ନାରୀନେତ୍ରୀମାନେ ମୁକ୍ତକଣ୍ଠରେ ସ୍ୱୀକାର କରନ୍ତି ଯେ ଓଡ଼ିଶାର ନାରୀ ଜାଗରଣ ପାଇଁ ଆଗ୍ରୂର୍ଯ୍ୟ ହରିହରଙ୍କ ଦାନର ମହତ୍ତ୍ୱ ସବୁଦିନ ପାଇଁ ରହିବ । ଗଲା ଚାଳିଶ ବର୍ଷ ଭିତରେ ଓଡ଼ିଶାର ଯେକୌଣସି ସ୍ଥାନରେ ମହିଳାମାନେ ବାହାରି କାମ କରିଛନ୍ତି, ଆଗ୍ରୂର୍ଯ୍ୟ ହରିହର ସେମାନଙ୍କୁ ଆଶୀର୍ବାଦ କରିବାକୁ ଯାଇ ପହଞ୍ଚି ଯାଇଛନ୍ତି । ତାଙ୍କୁ ଦେଖି ସେମାନଙ୍କ ମନରେ ନୂତନ ବଳର ସଞ୍ଚାର ହୋଇଛି ।

ଗାନ୍ଧୀଜୀଙ୍କ ପ୍ରବର୍ତ୍ତିତ 'ହରିଜନ ଆନ୍ଦୋଳନ' ଯେତେବେଳେ ଓଡ଼ିଶାରେ ଆରମ୍ଭ ହେଲା ଆଗ୍ରୂର୍ଯ୍ୟ ହରିହର ତାହାର ନେତୃତ୍ୱ ନେଲେ । ତାଙ୍କଭଳି ଜଣେ ଧର୍ମପରାୟଣ ନିଷ୍ଠାପର ସଚ୍ଚରିତ୍ର ଶାସ୍ତ୍ରବିତ୍ ବ୍ରାହ୍ମଣ ନେତୃତ୍ୱ ନେବାରୁ ଓଡ଼ିଶାର ହରିଜନ ଆନ୍ଦୋଳନର ମହତ୍ତ୍ୱ ଆରମ୍ଭରୁ ହିଁ ବଢ଼ିଗଲା । ୧୯୩୨ରେ ବ୍ୟାପକଭାବରେ

ଓଡ଼ିଶାରେ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନ ଚାଲିଲା । କାରଣ ମହାତ୍ମା ଗାନ୍ଧୀ ପୁରୀଠାରୁ ଭଦ୍ରଖ ପର୍ଯ୍ୟନ୍ତ ପଦଯାତ୍ରା କରି ଅସ୍ପୃଶ୍ୟତା ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ତାଙ୍କର ଏହି ପଦଯାତ୍ରାର କାହାଣୀ ସମଗ୍ର ଭାରତରେ ପ୍ରଚାରିତ ହୋଇ ଥିଲା । ସେତିକବେଳେ ଓଡ଼ିଶାର ଲୋକେ ଶଙ୍କର ସହିତ ଗୋଟିଏ ବିଷୟର ଉଲ୍ଲେଖ କରୁଥିଲେ । ମହାତ୍ମା ଗାନ୍ଧୀ ଭାରତରେ ସାଧାରଣ କ୍ଷେତ୍ରକୁ ଆସିବା ପୂର୍ବରୁ ହରିହର (ସେତେବେଳକୁ ଆଚାର୍ଯ୍ୟ ହୋଇ ନ ଥିଲେ) ତଥାକଥିତ ଅସ୍ପୃଶ୍ୟମାନଙ୍କୁ ଆପଣାର କରିବାକୁ ବା ଅନ୍ୟ ଭାବରେ କହିବାକୁ ଗଲେ ସେମାନଙ୍କ ପ୍ରତି ନ୍ୟାୟ ପ୍ରଦର୍ଶନ କରିବା ପାଇଁ ଆଗଭର ହେଉଥିଲେ । ଥରେ ଜଣେ ଅସହାୟ ହରିଜନ ଲୋକ ମରିଗଲା । କେତେଜଣଙ୍କୁ ସଙ୍ଗରେ ନେଇ ହରିହର ଦାସ ତା ଶବକୁ ଦାହ କରାଇଦେଲେ । ବ୍ରାହ୍ମଣ ମାନେ ତାଙ୍କୁ ଜାତିରୁ ଅଟକ କରିବା ପାଇଁ ବାହାରିଲେ । ସେଥିପାଇଁ ସଭା ବସିଲା । ସଂସ୍କୃତ ଟୋଲର ପଣ୍ଡିତ ମନୁ ସଂହିତା ବାହାର କରି ସେଥିରୁ ଉଦ୍ଧାର କରି ଦେଖାଇ ଦେଲେ ଯେ ଅନାଥ ଶବ ସତ୍କାର କଲେ ଅଶ୍ୱମେଧ ଯଜ୍ଞର ଫଳ ମିଳେ । ତେଣୁ ହରିବାବୁ ପ୍ରଭୃତି ଯେତେବେଳେ ଗୋଟାଏ ଅନାଥର ଶବ ଦାହ କରିଛନ୍ତି, ସେମାନେ ପାପ ତ କରିନାହାନ୍ତି—ବରଂ ବହୁ ପୁଣ୍ୟ ଅର୍ଜନ କରିଛନ୍ତି ।

ପ୍ରକୃତ ଅର୍ଥରେ ସେ ଥିଲେ ସନ୍ନ୍ୟାସୀ । କେତେ ବର୍ଷ ତଳେ ସେ ପଇତା ଛାଡ଼ିଦେଲେ । କେତେକଙ୍କୁ ଟିକିଏ ଅଡୁଆ ଲାଗିଲା । ସେମାନଙ୍କୁ ଆଚାର୍ଯ୍ୟ ମହାଶୟ ବୁଝାଇ ଦେଲେ —"ମୁଁ ଅନୁଭବ କରୁଛି ମୋ ଭିତରେ ସବୁଜାତି ଅଛନ୍ତି । ମୁଁ ଗୋଟିଏ ଜାତି ଭିତରେ ବାନ୍ଧିହେବାଟା କ'ଣ ଠିକ୍ ହେବ ? ଅହଂଭାବରୁ ମୁଁ ମୁକ୍ତ ହେବାକୁ ଚାହେଁ । ଯେତେବେଳେ ପଇତାଟିକୁ ଦେଖୁଛି, ଅଲକ୍ଷ୍ୟରେ ମୋ ମନ ଭିତରେ ବେଳେ ବେଳେ ଭାବ ଜନ୍ମୁଛି ଯେ ମୁଁ ଟିକିଏ ଉଚ୍ଚଜାତିର ଲୋକ । ମୋର ଜୀବନ ସହିତ ଏହା ଖାପ ଖାଉନାହିଁ । କୌଣସି ଅହଂଭାବରୁ ନୁହେଁ, ମୋ ମନକୁ ଶାନ୍ତି ଦେବାପାଇଁ ଏପରି କରୁଛି ।"

ସେ ଥିଲେ ବିନୟର ଅବତାର । ପଣ୍ଡିତ କୃପାସିନ୍ଧୁ ହୋତାଙ୍କୁ ଓଡ଼ିଶାରେ ସମସ୍ତେ ଜାଣନ୍ତି । ସ୍ପଷ୍ଟବାଦିତାରେ ତାଙ୍କୁ ବଳିଯିବା ଲୋକ ଓଡ଼ିଶାରେ କେହି ଦେଖା-ଯାଉନାହାନ୍ତି । ଆଚାର୍ଯ୍ୟ ହରିହରଙ୍କ ବିରୁଦ୍ଧରେ ତାଙ୍କର ସବୁ ଦିନେ ଗୋଟାଏ ବଡ଼ ଅଭିଯୋଗ ଯେ ସେ ସ୍ପଷ୍ଟଭାବରେ ନିଜର ମତପ୍ରକାଶ କରୁନାହାନ୍ତି; ଫଳରେ ଅନେକ କଥା ସୁଧୁରି ପାରୁନାହିଁ । ଏ ଅଭିଯୋଗ ସେ ଆଚାର୍ଯ୍ୟଙ୍କ ଆଗରେ ହିଁ କରନ୍ତି—ପଛରେ ନୁହେଁ । ଆଚାର୍ଯ୍ୟ ହସି ଦିଅନ୍ତି, ନିଜର 'ଦୁର୍ବଳତା' ସ୍ୱୀକାର କରିଯାନ୍ତି । ଅନ୍ୟମନଙ୍କରେ କଷ୍ଟ ହେଲଭଳି କହିବାକୁ ତାଙ୍କର ଆଦୌ ସତ୍ତ ବଳେ ନାହିଁ । ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ଯେତେବେଳେ ଡ଼କ୍ଟରେଟ୍ ଉପାଧି ଦେବାପାଇଁ

ପ୍ରସ୍ତାବ ଦେଲେ, ସେ ଅତି ବିନମ୍ରର ସହିତ ତାହା ଗ୍ରହଣ କରିବାକୁ ଅସ୍ୱୀକାର କରିଦେଲେ । ବିଶ୍ୱବିଦ୍ୟାଳୟ ଗୌରବାନ୍ୱିତ ହେବାର ସୁଯୋଗ ପାଇଲା ନାହିଁ । ଅରେ ମାଣ ସେ ଅନ୍ତ୍ୟାରେ ପଢ଼ି ନିଜର ଅଭିନନ୍ଦନ ଗ୍ରନ୍ଥଟି ଗ୍ରହଣ କରିବା ପାଇଁ କିଭଳି ରାଜି ହୋଇଥିଲେ, ତାହା ଉଲ୍ଲେଖ କରି ଖୁବ୍ ହସନ୍ତି ।

୧୯୩୪ରେ ଷାଠିଏ ବର୍ଷ ପୂରିଯାଉଥିବାରୁ ତାଙ୍କ ଜୟନ୍ତୀ ପାଳିବାର ଆୟୋଜନ କରାଗଲା । ପାଞ୍ଚହଜାର ଟଙ୍କାର ଗୋଟିଏ ଥଳି ତାଙ୍କୁ ଭେଟି ଦିଆଯିବାର କଥା ଥାଏ । ଠକ୍କର ବାପା ଖାସ୍ ସେହି ଉଦ୍ଦେଶ୍ୟରେ କଟକ ଆସୁଥାନ୍ତି । ସେହି ଅବସରରେ ଗୋଟିଏ କ୍ଷୁଦ୍ର ଅଭିନନ୍ଦନ ଗ୍ରନ୍ଥ ଛପାଯାଉଥାଏ । ଥଳି ଦେଲାବେଳେ ଏହିଅଭିନନ୍ଦନ ଗ୍ରନ୍ଥ ମଧ ଦିଆଯିବ ବୋଲି ଯେତେବେଳେ ଠକ୍କର ବାପାଙ୍କୁ କୁହାଗଲା । ସେ ପଚାରିଲେ—"ଆଗ୍ରୁର୍ଯ୍ୟଙ୍କ ଅନୁମତି ନେଇଛ ତ ?" ସେତେବେଳକୁ ଅନୁମତି ନିଆଯାଇ ନଥାଏ । ତାଙ୍କର ନିର୍ଦ୍ଦେଶରେ ହରିଜନସେବା କରୁଥିବା ଜୟନ୍ତୀ କମିଟିର ଯୁବକ ସଂପାଦକ ଏହି ପ୍ରଶ୍ନ ତାଙ୍କ ଆଗରେ କରିବାରୁ ଆଗ୍ରୁର୍ଯ୍ୟ ମହାଶୟ କହିଲେ—"ହିଁ ମୁଁ ଥଳୀ ଭେଟି ନେବି ଗରିବ ହରିଜନଙ୍କ ପାଇଁ ଖର୍ଚ୍ଚ କରିବା ଉଦ୍ଦେଶ୍ୟରେ । ଅଭିନନ୍ଦନ ଗ୍ରନ୍ଥ ମୋର କ'ଣ ହେବ ?" ଯୁବକ ଜଣକେ ଆଉ କିଛି ଉପାୟ ନଦେଖି ଟିକିଏ ଗମ୍ଭୀର ହୋଇଗଲାଭଳି ଭାବ ଦେଖାଇ କହିଲେ—"କେତେକ ଲୋକ ଯାହା କହୁଥିଲେ ସତ, ଆପଣଙ୍କ ଭିତରେ ଅହଂଭାବ ତ ପୂରିରହିଛି ।" ବୁଢ଼ା ଟିକିଏ ହସିଦେଇ ପଚାରିଲେ "ଅହଂଭାବ କଣ ?" ସଂପାଦକ ଉତ୍ତର ଦେଲେ—ଆପଣ ବୋଧହୁଏ ବିଚାରୁଥିଲେ ଯେ ଆପଣଙ୍କ ପ୍ରଶଂସା ହିଁ ସମସ୍ତଙ୍କ ଲେଖାରେ ଥିବ । ଜଣେ ଜଣେ ତ ଆପଣଙ୍କ ବିରୁଦ୍ଧରେ ଲେଖି ଦେଇଛନ୍ତି । ସେଇଥି ପାଇଁ ବୋଧହୁଏ ଆପଣ ରାଗିଛନ୍ତି ଓ ଏହାକୁ ଗ୍ରହଣ କରିବାକୁ ରାଜି ହେଉନାହାନ୍ତି ।" ଠୋ ଠୋ ହସି ଦେଇ ସେ କହିଲେ—"ତୋତେ ଆଉ ପାରିବ ନାହିଁ ।" ଶେଷରେ ତାଙ୍କୁ ସେ ଅଭିନନ୍ଦନ ଗ୍ରନ୍ଥ ଦିଆଗଲା । ସେଥିରେ ମହାତ୍ମା ଗାନ୍ଧୀଙ୍କର ବାର୍ତ୍ତା ପ୍ରଥମେ ଦିଆଯାଇଥିଲା । ବାର୍ତ୍ତାରେ ଥିଲା—"ଆଗ୍ରୁର୍ଯ୍ୟ ହରିହର ଦାସଂକର ଷାଠିଏ ବର୍ଷ ପୂରି ଯାଉଥିବା ଯୋଗୁଁ ତାଙ୍କୁ ଥଳି ଭେଟି ଦେବାପାଇଁ ଯେଉଁ ଉତ୍ସବ ହେଉଛି, ସେଥିରେ ଉପସ୍ଥିତ ରହିପାରିଥିଲେ ମୁଁ ଭାରି ଖୁସିହୋଇଥାନ୍ତି । ଆମର ଯେଉଁ ସ୍ୱାର୍ଥତ୍ୟାଗୀ କର୍ମୀ ଅଛନ୍ତି, ସେ ତାଙ୍କର ଭିତରୁ ଜଣେ । ମାତୃଭୂମିର ସେବାପାଇଁ ଭଗବାନ ତାଙ୍କୁ ଆହୁରି ବହୁ ବର୍ଷ ବଞ୍ଚାଇ ରଖନ୍ତୁ ।"

୧୯୨୮ରେ ହରିହରଙ୍କୁ ଦାରୁଣ ଦୁଃଖ ହୋଇଥିଲା । ତାଙ୍କ ଗୁରୁ ଦାସେ ଆପଣେ ସେହି ବର୍ଷ ଏ ସଂସାର ଛାଡ଼ି ଚାଲିଗଲେ । ଜୀବନଟା ତାଙ୍କୁ ଶୂନ୍ୟ-ଶୂନ୍ୟ ମନେହେଲା । ସେ ଦିନର କଥା ଯେତେବେଳେ ସେ ମନେ ପକାନ୍ତି, ଆଖି ଛଳ ଛଳ କରି ଦିଅନ୍ତି । ସେ ଧକ୍କାଟି କୌଣସିମତେ ସହିଯାଇ କୋଡ଼ିଏ ବର୍ଷ

କଟାଇ ଦେଲାପରେ ୧୯୪୮ ଜାନୁୟାରୀ ୩୦ ତାରିଖରେ ଆଉ ଏକ ପ୍ରଚଣ୍ଡ ଆଘାତ ପାଇଲେ। ସେହିଦିନ ମହାତ୍ମା ଗାନ୍ଧୀ ଗୁଳିବର୍ଷଣରେ ଢଳିପଡ଼ିଲେ। ଆଚାର୍ଯ୍ୟ ମହାଶୟ ତ ଖୁବ୍ କମ୍ କଥା କୁହନ୍ତି। କିନ୍ତୁ ତାଙ୍କ ମୁହଁରୁ ଦୁଇ ତିନିବର୍ଷ ପର୍ଯ୍ୟନ୍ତ ଜଣାପଡ଼ୁଥିଲା ଯେ ତାଙ୍କ ହୃଦୟ ଭିତରେ ଶୋକ ଭରିରହିଛି। ସବୁ କାମ ଚାଲିଲା ସତ—ମନରୁ ଆନନ୍ଦ ଚାଲିଗଲାଭଳି ମନେ ହେଉଥାଏ। ଚାରିବର୍ଷ ପରେ ବିନୋବାଜୀ ଭୂମିଦାନ ଆନ୍ଦୋଳନ ଆରମ୍ଭ କଲେ। ସେହି ଆନ୍ଦୋଳନ ଭିତରେ ସେ ବିରାଟ ସମ୍ଭାବନା ଦେଖିଲେ। ତେଣୁ ସେଇଥିରେ ମନପ୍ରାଣ ଢାଳିଦେଲେ।

୧୯୫୪ ବେଳକୁ ତାଙ୍କର ଦୃଷ୍ଟିଶକ୍ତି କମିଆସିଲାଣି। ୧୯୫୫ରେ ଜଣାପଡ଼ିଲା ଯେ ତାଙ୍କୁ ଆଉ ଦେଖାଯାଉ ନାହିଁ। କେହି ଜଣେ ତାଙ୍କୁ ସାହାଯ୍ୟ ନ କଲେ ଏଣେ ତେଣେ ବୁଲାଚଲା କରିବା ସହଜ ହେଉ ନଥାଏ। ଫକୀର ମିଶ୍ର ତାଙ୍କ ପାଖେ ପାଖେ ଥାଆନ୍ତି କହିଲେ ଚଲେ। ପୁରୀରେ ନିଖିଳ ଭାରତ ସର୍ବୋଦୟ ସମ୍ମିଳନୀ ହେବ ବୋଲି ସେ ଅତି ମାତ୍ରାରେ କାର୍ଯ୍ୟବ୍ୟସ୍ତ।

୧୯୫୮ ଆସିଗଲା। ଏପ୍ରିଲ୍ ୨୧ ତାରିଖ ରାତିରେ ଗୋପବନ୍ଧୁ ଚୌଧୁରୀ ଏ ସଂସାର ଛାଡ଼ି ଚାଲିଗଲେ। ଆଚାର୍ଯ୍ୟଙ୍କଠାରୁ ସେ ପନ୍ଦର ବର୍ଷ ସାନ। ଆଚାର୍ଯ୍ୟଙ୍କୁ ସେତେବେଳକୁ ୭୧ ବର୍ଷ ବୟସ। ସେ ଏକାବେଳକେ ତଟସ୍ଥ ହୋଇଗଲେ। ସଂପୂର୍ଣ୍ଣରୂପେ ଭାଙ୍ଗିପଡ଼ିବା ପୂର୍ବରୁ ତାଙ୍କର ମନେ ପଡ଼ିଗଲା ରମା ଦେବୀଙ୍କ କଥା। ଏତେବେଳେ ତାଙ୍କୁ ସାନ୍ତ୍ୱନା ଦେବା ହିଁ ହେଉଛି ସର୍ବପ୍ରଥମ କର୍ତ୍ତବ୍ୟ। ଉପରକୁ ଦେଖାଇଲେ ଯେପରିକି ସେ ଭାଙ୍ଗିପଡ଼ି ନାହାନ୍ତି। ସେଦିନ ରାତିରେ ତାଙ୍କୁ ଯିଏ ଦେଖିଛି ସେ ବୁଝିଛି ପ୍ରାୟ ଅଣି ବର୍ଷ ବୟସର ବୃଦ୍ଧଙ୍କର ମନରେ କେତେ ବଳ ରହିଛି

ତିନିମାସ କାଳ ସେ ଖୁବ୍ ଚିନ୍ତାମଗ୍ନ ରହିଲେ। ଗୋପବାବୁ ଯେହିଁ ଭୂଦାନ ଆନ୍ଦୋଳନର ଓଡ଼ିଶାରେ ଅଗ୍ରଣୀ ଥିଲେ, ତାକୁ ଆଗେଇନେବା ଦାୟିତ୍ୱ ତାଙ୍କର ଉପରେ ପଡ଼ିଛି ବୋଲି ସେ ବିଚାରିଲେ। ଆଖି ଆଉ ତାଙ୍କ ସହିତ ସହଯୋଗ କରୁ ନଥିଲେ ମଧ୍ୟ ସେ ଗୋଡ ଦୁଇଟି ତ ଚାଲୁଛି ! ଓଡ଼ିଶାରେ ପଦଯାତ୍ରା କରିବେ। କାହାର ମନା ମାନିଲେ ନାହିଁ। ଉତ୍ତର ବାଲେଶ୍ୱର ସୀମାନ୍ତରୁ ସେହିବର୍ଷ ଅଗଷ୍ଟ ୧୫ ତାରିଖ ସ୍ୱାଧୀନତା ଦିବସରେ ଆରମ୍ଭ କଲେ ପଦଯାତ୍ରା। ଖରା ବର୍ଷା ଶୀତ ନ ମାନି ୧୯୬୦ ପର୍ଯ୍ୟନ୍ତ ପ୍ରାୟ ତିନି ହଜାର ମାଇଲ ସେ ବୁଲିଥିଲେ। ସେ ଯାତ୍ରାବେଳେ ତାଙ୍କୁ ଯିଏ ଦେଖିଛି, ସେ ବିସ୍ମିତ ହୋଇଛି। ମନର ବଳ ପାଖରେ ଶରୀରର ଦୁର୍ବଳତା କିଭଳି ସଂପୂର୍ଣ୍ଣ ପରାଜୟ ସ୍ୱୀକାର କରେ ତାହାର ପ୍ରମାଣ ଦେଇ ଦେଇ ସତେ ଯେପରିକି ସେ ଚାଲି ଥା'ନ୍ତି।

୧୯୬୦ରେ ଓ୍ୱାର୍ଦ୍ଧାଠାରେ ନିଖିଳ ଭାରତ ସର୍ବୋଦୟ ସମ୍ମିଳନୀରେ ସଭାପତିତ୍ୱ କରିବାର ଥାଏ । ସେଥିପାଇଁ ପଦଯାତ୍ରା କିଛୁଦିନ ବନ୍ଦହେଲା ।

ଅଶୀ ପୂରି ତାଙ୍କୁ ଏକାଅଶୀ ଚାଲିଲାଣି । ଶରୀରର ବଳ କମି କମି ଆସୁଛି । ତାଙ୍କୁ ଯେଉଁ ସ୍ଥାନଟି ଭଲ ଲାଗୁଛି ସେଠାରେ ବସି ଯାଆନ୍ତୁ ଓ ଅନ୍ୟମାନଙ୍କୁ ଉପଦେଶ ଦେବାରେ ସମସ୍ତ କଣ୍ଠାନ୍ତୁ ବୋଲି ଯେତେ ବୁଝାଇଲେ ମଧ୍ୟ ତାଙ୍କ ମନ ବୁଝିଲା ନାହିଁ । "ଦେହରେ କିଛି କିଛି ଶକ୍ତି ତ ଅଛି—କାମ ନ କରିବି କାହିଁକି" ? ଏ ଉତ୍ତର ଆଚାର୍ଯ୍ୟଙ୍କୁ ବା ଦେବ କିଏ ?

୧୯୬୦ ଏପ୍ରିଲ ୨୧ ତାରିଖ । ଗୋପବାବୁଙ୍କ ବିୟୋଗ ପରେ ଦ୍ୱିତୀୟ ଶ୍ରାଦ୍ଧ ଦିବସ । ସେହିଦିନ ମୟୂରଭଞ୍ଜରୁ ବାହାରିଲେ ସର୍ବୋଦୟ ବାର୍ତ୍ତା ଗାଁ ଗାଁରେ ଶୁଣାଇବା ଉଦ୍ଦେଶ୍ୟରେ । କୋରାପୁଟରେ ପହଞ୍ଚିଲା ବେଳକୁ ପ୍ରବଳ ଜ୍ୱର । ଚାଲିବା ପାଇଁ ଆଉ ବଳ ପାଇଲା ନାହିଁ । ସ୍ଥିର ହେଲା ଯେ ପୁରୀ ଫେରି-ଆସିବେ ଓ କିଛି ଦିନ ପାଇଁ ବିଶ୍ରାମ ନେବେ ।

୧୯୬୨ରୁ ୭୮ ପର୍ଯ୍ୟନ୍ତ ପୁରୀ ଗୋପବନ୍ଧୁ ଭବନରେ ରହିଲେ । ଲବଣ ସତ୍ୟାଗ୍ରହ ବେଳୁ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇଥିବା ସଚ୍ଚିଦାନନ୍ଦ ମହାନ୍ତି ତାଙ୍କ ପାଖେ ପାଖେ ଛାଇଭଳି ରହିବା ଫଳରେ ସେ ଚାଲିଗଲେ । ପଣ୍ଡିତ କୃପାସିନ୍ଧୁ ହୋତା ଓ ଶ୍ରୀମତୀ ସୁନାମଣି ଦେବୀ ଗୋପବନ୍ଧୁ ଭବନରେ ରହୁଥାଆନ୍ତି । ମଝିରେ ମଝିରେ ଅନେକ ଲୋକ ଯାଆନ୍ତି ଆଚାର୍ଯ୍ୟଙ୍କ ଦର୍ଶନ ପାଇଁ । ସେ ଯେ ଏକାବେଳକେ ବସିଗଲେ, ତା ନୁହେଁ; ମଝିରେ ମଝିରେ ସୁନ୍ଦରଗଡ଼, ସମ୍ବଲପୁର, କୋରାପୁଟ ଯାଆନ୍ତି କର୍ମୀମାନଙ୍କୁ ଟିକିଏ ପ୍ରେରଣା ଦେବାପାଇଁ । କଟକ ଆଡ଼େ ମଧ୍ୟ ଆସନ୍ତି ।

ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କ ଆତ୍ମ-କାହାଣୀରେ ଲେଖିଛନ୍ତି—"ସେ ଥିଲେ ଆମ ସମସ୍ତଙ୍କର ହିରା ଭାଇନା । ସେବା ଓ ଚରିତ୍ରବଳରେ ଆମେମାନେ ତାଂକୁ ଆଦର୍ଶ କରି ଧରିଥିଲୁ । ସେ ମିଛ କହି ଜାଣୁ ନ ଥିଲେ । ଶିଖିବା ପାଇଁ ରାଜି ହୋଇ ପାଞ୍ଚଥର ଆବୃତ୍ତି କଲେ ମଧ୍ୟ କହିଲାବେଳକୁ ସତଟା ପାଟିରୁ ଗଳି ପଡ଼ାଉଥିଲେ ।" କେବଳ ଓଡ଼ିଶା ବା ଭାରତ କାହିଁକି—ସମଗ୍ର ପୃଥିବୀରେ ଏପର୍ଯ୍ୟନ୍ତ ଖୁବ୍ କମ୍ ଲୋକ ଜନ୍ମ ହୋଇଛନ୍ତି, ଯେଉଁମାନେ କି 'ମିଛ କହି ଜାଣୁ ନ ଥିବେ ।' ମିଛ ନ କହିବା ପାଇଁ ସତତ ଉଦ୍ୟମଶୀଳ ଥିବା ବହୁଲୋକ ଅଛନ୍ତି ଓ ସେମାନଙ୍କର ସେ ଦିଗରେ ସାଧୁ ଉଦ୍ୟମ ଅନ୍ୟମାନଂକୁ ପ୍ରେରଣା ଦିଏ । କିନ୍ତୁ ସତ୍ୟପ୍ରତି ନିଷ୍ଠା ଏତେ ଦୃଢ଼ ଯେ 'ମିଛ କହି ଜାଣିବ ନାହିଁ'—ଏଭଳି ଲୋକଙ୍କ ସଂଖ୍ୟା କେତେ ? ଆଚାର୍ଯ୍ୟ ବୋଲି ପରିଚିତ ହେବା ପୂର୍ବରୁ ମଧ୍ୟ ହରିହର ସତ କହୁଥିଲେ—ମିଛ

କହୁ ନଥିଲେ । ତାଙ୍କ ଜୀବଦ୍ଦଶାରେ ଯେଉଁମାନଙ୍କର ସୌଭାଗ୍ୟ ହୋଇଛି ତାଙ୍କ ସହିତ ବହୁବାର ଆଲୋଚନା କରିବାର, ବହୁ ବର୍ଷ କଟାଇବାର ବା ବହୁକାଳଧରି ସହକର୍ମୀ ଭାବରେ ରହିବାର ସେମାନେ ସମସ୍ତେ ତାଙ୍କଠାରୁ ଗୋଟିଏ କଥା କେବେ ନା କେବେ ନିଶ୍ଚୟ ଶୁଣିଥିବେ । ସେହି କଥାଟି ହେଉଛି—ମିଥ୍ୟା ନକହି ମଧ୍ୟ ଆମେ ଜୀବନରେ ଅନେକ ସମୟରେ ମିଥ୍ୟାଚାର କରିଥାଉଁ ।" ଆଚାର୍ଯ୍ୟଙ୍କର ନିର୍ଦ୍ଦିଷ୍ଟ ମତ ଥିଲା ଯେ ତୁମେ ଯେଉଁ ଶପଥ ନେବ, ତା'ର ବିରୁଦ୍ଧାଚରଣ କଲାଭଳି ପରୋକ୍ଷରେ ମଧ୍ୟ କିଛି କଲେ ମିଥ୍ୟାଚାରହିଁ କଲ । ସତ୍ୟପ୍ରତି ଯାହାର ନିଷ୍ଠା ଅଛି ସେ କେବେହେଲେ ଏଭଳି ଆଚରଣ ଦେଖାଇ ପାରିବ ନାହିଁ । ସେହି କଥାକୁ ସେ ଆହୁରି ଟିକିଏ ଭଲଭାବରେ ବୁଝାଇବାକୁ ଯାଇ ଅତି ଅଳ୍ପ ବୟସରେ ଗୋପବନ୍ଧୁ, ନୀଳକଣ୍ଠ, ଅନନ୍ତ ଓ ସେ ନିଜେ ଯେଉଁ ସଙ୍କଳ୍ପ କରିଥିଲେ, ତାକୁହିଁ ସମସ୍ତଙ୍କର ମନେ ପକାଇ ଦିଅନ୍ତି । ସେହି ସଂକଳ୍ପ କିପରି ନିଆହୋଇଥିଲା ସେ ବିଷୟରେ ପଣ୍ଡିତ ନୀଳକଣ୍ଠ ଲେଖିଛନ୍ତି—

"ରାତି ହେଲା, ନିର୍ମଳ ଶୁଭ୍ର ଜ୍ୟୋତ୍ସ୍ନା ରଜନୀ, ସେଦିନ ହୁଏତ ପୂର୍ଣ୍ଣିମା ଚତୁର୍ଦ୍ଦଶୀ ବା ପ୍ରତିପଦା । ନଈବନ୍ଧ ଉପରେ ବରଗଛତଳେ ଜ୍ୟୋଛନା ବିଛା ହୋଇ ପଡ଼ିଥିଲା ! ଆମେ ଯାଇଥିଲୁ ତିନିଜଣ—ସ୍ୱର୍ଗତ ପ୍ରଚାରକ ଅନନ୍ତ ମିଶ୍ର, ଆଚାର୍ଯ୍ୟ ହରିହର ଦାସ ଓ ମୁଁ । ଗାମୁଛା ପକାଇ ତିନିହେଁ ବସିଗଲୁ । ବନ୍ଧତଳକୁ ନଈଧାରଟି, ତାହା ଆରପଟେ ସ୍ୱଚ୍ଛ ନଈବାଲି ଧଉ ଧଉ ଦିଶୁଛି । ସେକାଳେ ବସନ୍ତରେ 'ବାଡ଼ି-ପଡ଼ିବା' ଗୋଟିଏ ସାଧାରଣ କଥା ଥିଲା । ଲୋକେ ଏବେ ବି କହନ୍ତି 'ଚଇତବାଡ଼ି' । ଆମେ ବସିବା ଜାଗାର ଆରପାଖେ ବାଲିଖଣ୍ଡ ହେଉଛି ବକସ୍ତର ଗାଁର ଶ୍ମଶାନ ତଳ । ନଈ ଶୁଖିଥିଲାବେଳେ ଏଇଠାହିଁ ଶ୍ମଶାନ ହୁଏ । ବଲପୁରରେ ଭାରି ବାଡ଼ି ପଡ଼ିଥିଲା—ସେକାଳେ ସେପରି ହେଉଥିଲା । ଲୋକେ ସବୁ ଶବ ଦାହ କରିପାରୁ ନଥିଲେ । ଅନେକ ଶବ ଅର୍ଦ୍ଧଦଗ୍ଧ ଅବସ୍ଥାରେ ଛାଡ଼ି ଚାଲିଯାଉଥିଲେ । ରାତିଆକ ବିଲୁଆଏ ଜମା ହୋଇ ନିଜ ସ୍ୱାଭାବିକ କ୍ରୂର ସ୍ୱରରେ ଏହି ଅର୍ଦ୍ଧଦଗ୍ଧ ଶବ ସବୁ କାମୁଡ଼ି ଓଟାରୁଥାନ୍ତି । ଆମକୁ ଡ଼ର ମାଡ଼ିବାର କଥା । କିନ୍ତୁ ଗୋପବନ୍ଧୁଙ୍କ ସାଙ୍ଗେ ସେଇଠାରେ ବସି, ସେଇ ଭୀମକାନ୍ତ ଦୃଶ୍ୟ ଭିତରେ ସେ ଦିନ ରାତି ପାହିଯାଇଥିଲା । କି ଭାବାବେଶରେ— କହି ହେଉନାହିଁ । ସମସ୍ତେ ସଙ୍କଳ୍ପ କଲୁ, "ସରକାରୀ ଚାକିରି କରିବା ନାହିଁ । ନିଜ ଭରଣ ପୋଷଣ, ବିଳାସରେ ମନ ଦେବା ନାହିଁ । ଜନ୍ମ ହୋଇ ଦେଶକୁ ଯାହା ଦେଖିଥାଉ; ମଲାବେଳେ ତାହାଠାରୁ ଉନ୍ନତତର ଅବସ୍ଥାରେ ଛାଡ଼ିଦିବା ଓ ସେଥିପାଇଁ ବରାବର ପ୍ରଯତ୍ନରେ ରହିବା ।"

ଏହି ସଙ୍କଳ୍ପ ପରେ ଆଚାର୍ଯ୍ୟ ହରିହର ପ୍ରାୟ ସାତ ଦଶନ୍ଧି ଏ ଢଙ୍ଗରେ ବଞ୍ଚିକରି ରହିଛନ୍ତି । ଆମେ ତାଙ୍କର ଦୀର୍ଘ ଜୀବନକାଳକୁ ସମାଲୋଚକ ଦୃଷ୍ଟିରେ

ଦେଖିଆସିବା । ଅରେ ମାଣ ଏହି ସଂକଳ୍ପରୁ ସେ ଟିକଏ ବିଚ୍ୟୁତ ହୋଇଛନ୍ତି— ଯେତେବେଳେ କି ପୁରୀ ଜିଲା ସ୍କୁଲରେ ଶିକ୍ଷକତା କରୁଥିଲେ । ମନେ ପଡିଗଲା ତାଙ୍କର ସେହି ସଂକଳ୍ପ କଥା । ସରକାରୀ ଚାକିରୀ ଛାଡ଼ିଦେଲେ ।

ନିଜର ଭରଣପୋଷଣ ଉଦ୍ଦେଶ୍ୟରେ ପଇସା ଜମାଇବାର ଉଦ୍ୟମ ସେ କରିଛନ୍ତି କି ନାହିଁ ଦେଶର ପ୍ରତ୍ୟେକ ଲୋକ ଜାଣନ୍ତି । ନିଜ ଗାଁର ଖାତା-ଖତିଆନରେ ତାଙ୍କ ନାମ ଯେପରି ନରହିବ ଏହାର ବ୍ୟବସ୍ଥା ସେ ନିଜେ ଯାଇ କରିଦେଇ ଆସିଥିଲେ । କିଲାପ ତାଙ୍କ ନିକଟକୁ ଆସିବା ପାଇଁ କେବେହେଲେ ସାହସ ବାନ୍ଧି ପାରିନାହିଁ । ମଲାବେଳେ ଦେଶକୁ କିଭଳି ଉନ୍ନତତର ଅବସ୍ଥାରେ ଛାଡ଼ିଯିବେ- ସେଥିପାଇଁ ସେ ୧୯୭୦ ପର୍ଯ୍ୟନ୍ତ ଅର୍ଥାତ୍ ତାଙ୍କୁ ଯେତେବେଳେ ନବେ ବର୍ଷ ହେଲାଣି ସେପାଏ କାମ କରି ଆସିଛନ୍ତି । ଏହାକୁହିଁ କୁହନ୍ତି ସତ୍ୟପ୍ରତି ନିଷ୍ଠା । ପ୍ରାର୍ଥନା- ବେଳେ ଅହିଂସା ସତ୍ୟ ଅସ୍ତେୟ ବ୍ରହ୍ମଚର୍ଯ୍ୟ ଅସଂଗ୍ରହ; ଶରୀରଶ୍ରମ ଆସ୍ୱାଦ ସର୍ବତ୍ର ଭୟବର୍ଜନ, ସର୍ବଧର୍ମ-ସମାନତ୍ୱ ସ୍ୱଦେଶୀ ସ୍ପର୍ଶଭାବନା—ବୋଲି ଯେଉଁ ମନ୍ତ୍ର ବୋଲନ୍ତି ସେଥିରୁ ପ୍ରତ୍ୟେକଟିକୁ ନିଜ ଜୀବନରେ, ଆଚରଣରେ ଦେଖାଇବା ପାଇଁ ତାଙ୍କର କି ଅଦମ୍ୟ ଚେଷ୍ଟା ! ଖାଇ ବସିଲା ବେଳେ କଞ୍ଚା ଲଙ୍କାଟିଏ ଓ ଶାଗ ଟିକିଏ ମିଳିଗଲେ ତାଂକୁ ଭଲ ଲାଗେ । ଏହି ଦୁର୍ବଳତା ପାଇଁ ସେ କେତେ ବ୍ୟସ୍ତ ନହୋଇଛନ୍ତି ! ସେହି ବ୍ୟସ୍ତତାରୁ ହିଁ ପ୍ରମାଣ ମିଳୁଛି ଯେ ସତ୍ୟପ୍ରତି ତାଙ୍କର କେତେ ଆଦର । "ସଙ୍କଳ୍ପ ରକ୍ଷା" ଓ "ସତ୍ୟ"—ସମାର୍ଥ ବୋଧକ ଶବ୍ଦ ବୋଲି ସେ ବାରମ୍ବାର କହିବାରେ କେବେହେଲେ ହେଳା କରି ନାହାନ୍ତି । ୧୯୬୯ର ଦ୍ୱିତୀୟ ଭାଗ ଆରମ୍ଭ ହେଲାବେଳକୁ ଯେତେବେଳେ ତାଙ୍କର ସବୁ ଇନ୍ଦ୍ରିୟ କ୍ରମେ ତାଙ୍କ ସହିତ ଅସହଯୋଗ କରିବାକୁ ଆରମ୍ଭ କଲେ ସେତିକିବେଳେ ସେ—"ଆଉ ମୋତେ ଖାଇବାକୁ ଦିଅ ନାହିଁ" ବୋଲି ସମସ୍ତଂକୁ ବିକଳ ହୋଇ କହିଲେ । ତେଣିକି ତାଂକୁ ଯେଉଁ ତରଳ ଖାଦ୍ୟ ଦିଆଯାଉଥିଲା ତାହା ଭିତରେ ସ୍ୱାଦ ଅଛି କି ନାହିଁ, ସେ ବିଷୟରେ କୌଣସି ପ୍ରଶ୍ନହିଁ ନଥିଲା ।

ତାଙ୍କ ଚେହେରାଟି ଥିଏ ଦେଖିବ, ବେଶଭୂଷାକୁ ଲକ୍ଷ୍ୟ କରିବ, ତାଙ୍କ ସାଙ୍ଗରେ ଥରେ କେବେ ବସି ପୁରୀ ଗୋପବନ୍ଧୁ ଭବନ ବା କଟକ ଭୁଦାନ ଅଫିସରେ ଖାଇଥିବ, ସେ କେବେହେଲେ ଅନୁମାନ କରିବ ନାହିଁ ଯେ ସେଇ ଲୋକ ଭିତରେ ମଉଜିଆ କଥା ହାସ୍ୟରସ ପୂରିରହିଛି । ସଙ୍ଗୀତ ଶିକ୍ଷକଙ୍କ ଘର ପୋଡ଼ିଯିବା ଖବର ସଙ୍ଗୀତ-ଗୁରୁ କିଭଳି ଆସି ତାଳ ମାନ ଲୟରେ କହୁ କହୁ ତେଣେ ସ୍କୁରୁଙ୍କ ଘର ପୋଡ଼ି ଭସ୍ମସାତ ହୋଇଗଲା କଥା ସେ ଯେତେବେଳେ ରହସ୍ୟ କରି ବର୍ଣ୍ଣନା କରନ୍ତି, ସେତେବେଳେ ମନେହୁଏ ଯେ ହାସ୍ୟରସ ସତେ ଯେପରିକି ମୂର୍ତ୍ତିମନ୍ତ ହୋଇ ଠିଆହୋଇଯାଇଛି । ରହସ୍ୟର ଖଣି ମାଲଗିରିର କୈଳାସବାବୁ ଓ

ଆଚାର୍ଯ୍ୟ ହରିହର ଯଦି ଏକାଠି ବସିଗଲେ ସେଠାରୁ ଅନ୍ୟମାନେ ଉଠି ଚାଲିଯିବାର ପ୍ରଶ୍ନ ଆଉ ନଥିବ । କଥାବାର୍ତ୍ତାବେଳେ ସେ ମଜାରେ ମଜାରେ ଏମିତି କହିଦେବେ ଯେ ତାଙ୍କ ସହିତ ମୁକ୍ତ କରୁଥିବା ଲୋକ ପାଟିରୁ ଆଉ କଥା ବାହାରିବ ନାହିଁ । ସ୍ୱାଧୀନତା ସଂଗ୍ରାମବେଳେ କଟକ ଟାଉନହଲରେ ଥରେ ସଭା ହେଉଥାଏ । ଆଚାର୍ଯ୍ୟ ହରିହର ବସିଥାନ୍ତି ପ୍ରଥମ ଧାଡ଼ି ପଛରେ । ଖୁବ୍ ଗରମାଗରମ ବକ୍ତୃତା ଚାଲିଥାଏ । ଜଣେ ଯୁବକ ନୂଆହୋଇ କମିଉନିଜିମ୍‌ରେ ଦୀକ୍ଷିତ ହୋଇଥାନ୍ତି । ସେ ପନ୍ଦର ମିନିଟ କାଳ କେବଳ ଭଗବାନଙ୍କୁ ଗାଳିଦେଲେ । ହରିହରଙ୍କ ପାଖରେ ବସିଥିବା ଜଣେ ଯୁବକ ତାଙ୍କୁ ଧିରେ କରି ପଚାରିଲେ—"ବ୍ରିଟିଶ ସରକାରଙ୍କୁ ଗାଳି ନ ଦେଇ ଇଏ ଭଗବାନଙ୍କୁ ଏତେ ଗାଳି ଦେଉଛନ୍ତି ?" ବାମ୍ପଶକ୍ତିକ ଧୀର ଉଠୁ ଉଠ, ଆଚାର୍ଯ୍ୟ ମହାଶୟ କହିଦେଲେ—"ଦେଖୁନା, ସେ ଜଣରେ ବ୍ରିଟିଶ ସରକାରଙ୍କ ପୁଲିସ ବସି ସବୁକଥା ଟିପୁଛନ୍ତି । ତାଙ୍କୁ ବେଶୀ ଗାଳିଦେବାରେ ବିପଦ । ଏଠି ବିଚରା ସେହି ଭଗବାନଙ୍କର କେହି ଟିପିଲାବାଲା ନାହାନ୍ତି ବୋଲି ସେ ଗାଳି ଖାଉଛନ୍ତି ।" ସମସ୍ତେ ହସିଉଠିଲେ ଓ ସେହି ହସ ଭିତରେ ଆଚାର୍ଯ୍ୟ ମହାଶୟ ସଭା ଛାଡ଼ି ଚାଲିଗଲେ ।

ତାଙ୍କ ଶିକ୍ଷକ-ଜୀବନରେ ସେ ଛାତ୍ରମାନଙ୍କୁ ନେଇ ମାଇଲ ମାଇଲ ବାଟ ଯାଆନ୍ତି । ବାଟଯାକ ଏଭଳି ଏକ ମଜା ଗପ କହନ୍ତି ଯେ ସେମାନେ କ୍ଲାନ୍ତି ଅନୁଭବ କରନ୍ତି ନାହିଁ । ଏଭଳି ମଜଲିଆ ଲୋକ ଅନ୍ୟର ମନରେ କଷ୍ଟ ଦେଲାଭଳି ବିଦ୍ରୂପ କରି କେବେ କହନ୍ତି ନାହିଁ । ସେ ହିଁ ହେଉଛି ତାଙ୍କର ବିଶେଷତ୍ୱ । କେବଳ ଥରେ ତାଙ୍କ ଅଜ୍ଞରେ ନାତି-ବୟସ୍କର ଜଣେ ଅଧ୍ୟାପକଙ୍କ ମୁହଁ ଶୁଖିଯାଇଥିଲା ବୋଲି ସେ ଏକାଧିକ ବାର ସେହି କଥା ମନେ ପକାଇ ମନକଷ୍ଟ କରିଛନ୍ତି । କୌଣସି ଜୀବନ୍ତ ମହାପୁରୁଷଙ୍କ ଭକ୍ତମାନେ ଶ୍ରୀରାମଚନ୍ଦ୍ର ଭବନରେ ସଭା ଡାକିଥାନ୍ତି । ଜଣେ ତରୁଣ ଅଧ୍ୟାପକ ସେହି ସଭାର ମୁଖ୍ୟବକ୍ତା । ଦୁଇ ଚାରିଜଣଙ୍କୁ ସଙ୍ଗରେ ନେଇ ଆଚାର୍ଯ୍ୟ ମହାଶୟ ସେଠାରେ ପହଞ୍ଚିଲେ । ଇଂରାଜୀରେ ଭାଷଣ ଚାଲିଲା । ସଭା ଭାଙ୍ଗିଲାବେଳକୁ ସେ ଆସି ତାଙ୍କୁ ଭକ୍ତିପୂର୍ଣ୍ଣ ପ୍ରଣାମ ଜଣାଇଲେ । ଉଦ୍ୟୋକ୍ତାମାନେ ହରିହରଙ୍କୁ ପଚାରିଲେ—"ଚମତ୍କାର ଭାଷଣ ହେଲା ନାହିଁ ?" ତାଙ୍କ ସଙ୍ଗେ ଉତ୍ତର ମିଳିଲା—"ହଁ, ସେଥିରେ କ'ଣ ଆଉ କେହି ଦ୍ୱିମତ ହେବ ? କେବଳ ଓଡ଼ିଆରେ କହିଥିଲେ ବହୁ ଦେବଦେବୀଙ୍କ ନାମର ବିକୃତ ଉଚ୍ଚାରଣ ହୋଇ ନଥାନ୍ତା ।"

ମହାତ୍ମା ଗାନ୍ଧୀଙ୍କର ଚିନ୍ତାଧାରା ତାଙ୍କ ଜୀବନ ଉପରେ ଗଭୀର ପ୍ରଭାବ ପକାଇଥିଲା ସତ, କିନ୍ତୁ ଦେଶପ୍ରେମ ବା ସ୍ୱଦେଶୀଭାବରେ ସେ ଭାରତରେ ଗାନ୍ଧୀ-ଯୁଗ ଆରମ୍ଭର ବହୁ ପୂର୍ବରୁ ଦୀକ୍ଷିତ ହୋଇ ସାରିଥିଲେ । ବଙ୍ଗଭଙ୍ଗ ଆନ୍ଦୋଳନ

ବେଳେ ଭାରତର ପୂର୍ବ ଅଞ୍ଚଳରେ ଯାହାସବୁ ଘଟିଲା ତା'ର ପ୍ରଭାବ ଓଡ଼ିଶାର ଶିକ୍ଷିତ ଲୋକଙ୍କ ଉପରେ କିଛି କିଛି ପଡ଼ିଥିଲା । ଶ୍ରୀ ଅରବିନ୍ଦ ଘୋଷଙ୍କ ନେତୃତ୍ୱରେ ବଙ୍ଗର ସ୍ୱଦେଶପ୍ରେମୀ ଯୁବକ ବିପ୍ଳବୀମାନେ ସ୍ୱଦେଶୀ ଆନ୍ଦୋଳନ ଆରମ୍ଭ କରିଥିଲେ । ମୁଜାଫର ପୁର ଠାରେ ବିପ୍ଳବୀମାନଙ୍କୁ ସଂଖ୍ୟାସବାଦ ଅଭିଯୋଗରେ କଠୋର ଦଣ୍ଡ ଦେବାରୁ ଜିଲ୍ଲା ଜଜ୍ କିଙ୍ଗସ ଫୋର୍ଡଙ୍କ ଉପରେ ସମସ୍ତଙ୍କର ରାଗ ଥାଏ । ଥରେ ତାଙ୍କ ଉପରେ ବୋମାମାଡ଼ ହେଲା । ବିପ୍ଳବୀ ଖୁଦିରାମ ଏହିସବୁ ଘଟଣାରେ ସଂପୃକ୍ତ ଥିଲେ । ସେ କଟକ ଚାଲିଆସି ବ୍ରଜସୁନ୍ଦର ଦାସଙ୍କ ଘରେ ଆଶ୍ରୟ ନେଇ ଓଡ଼ିଶାର ଯୁବକମାନଙ୍କୁ ସ୍ୱଦେଶୀ ଆନ୍ଦୋଳନରେ ଅନୁପ୍ରାଣିତ ହେବା ପାଇଁ ଉଦ୍‌ବୋଧନ ଦେଇଥିଲେ । ବାଡ଼ିଖେଳ, କୁସ୍ତି କସରତ୍ ଭଳି ଶିକ୍ଷା ଦିଆଯିବ ତା'ର ଯୋଜନା ପ୍ରସ୍ତୁତ କରିଥିଲେ । ଯେଉଁମାନଙ୍କ ସହିତ ସେ ଗୁପ୍ତ ପରାମର୍ଶ କରିଥିଲେ ସେମାନଙ୍କ ଭିତରେ ଥିଲେ ଗୋପବନ୍ଧୁ, ହରିହର, ନୀଳକଣ୍ଠ, ଜଗନ୍ନାଥ ଓ ବାସୁଦେବ ମହାପାତ୍ର । ବଙ୍ଗଳାର ବିପ୍ଳବୀ ଶିକ୍ଷକ ଶଶିଭୂଷଣ ଚୌଧୁରୀ ସେ ଯୁଗରେ ଭୁବନେଶ୍ୱରରେ ଆତ୍ମଗୋପନ କରି ରହିଥାନ୍ତି । ହରିହର ତାଙ୍କ ସଂପର୍କରେ ମଧ୍ୟ ଆସିଥିଲେ ।

ଆମ୍ଭେମାନେ ଟିକିଏ ଲକ୍ଷ୍ୟକଲେ ଜାଣିପାରିବା ଯେ ୧୯୦୫ରୁ ୧୯୩୫ ଭିତରେ ଯେଉଁମାନଙ୍କର ସ୍ୱଦେଶପ୍ରୀତି କ୍ରମେ ଦୃଢ଼ରୁ ଦୃଢ଼ତର ହେଉଥିଲା, ପରବର୍ତ୍ତୀ କାଳରେ ବିଶେଷ କରି ସ୍ୱାଧୀନତାର ପରବର୍ତ୍ତୀ ଯୁଗରେ ସେଇମାନେ ଭୋଗକୁ ତ୍ୟାଗଠାରୁ ଅଧିକ ଉଚ୍ଚସ୍ଥାନ ଦେଲେ । କେହି କେହି କ୍ଳାନ୍ତ ହୋଇ ବସିପଡ଼ିଲେ । କେତେକଙ୍କ କ୍ଷେତ୍ରରେ ଦେଖାଗଲା ଯେ ସେମାନେ ଆତ୍ମପ୍ରତ୍ୟୟ ହରାଇ ବସିଛନ୍ତି । କିନ୍ତୁ ଆଚାର୍ଯ୍ୟ ହରିହର ଯେଉଁଥିରେ ବିଶ୍ୱାସ କରୁଥିଲେ ସେଥିରେ କ୍ରମେ ଅଧିକରୁ ଅଧିକ ଦୃଢ଼ ହେଲେ ସିନା—ଦୁର୍ବଳତାର କୌଣସି ଲକ୍ଷଣ ପ୍ରକାଶ ପାଇଲା ନାହିଁ ।

ଭାରତରେ ୧୯୨୦ ପରେ ଗୋଟାଏ ନୂତନ ଜୀବନର ସଞ୍ଚାର ହେଲା । ଅହିଂସା ସଂଗ୍ରାମର ସଂପୂର୍ଣ୍ଣ ଅଭିନବ କୌଶଳ ଭାରତୀୟ ପରମ୍ପରା ସହିତ ଖାପ ଖାଇଗଲା । ଦେଶ ଆଗରେ ଗାନ୍ଧୀ ଏଭଳି କର୍ମପନ୍ଥା ରଖିଲେ ଯେ ଜାତୀୟ ଆନ୍ଦୋଳନରେ ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ ଅଂଶ ଗ୍ରହଣ କରିବାର ସୁଯୋଗ ପାଇଲେ । ଯେଉଁ ଲୋକ ଘରେ ବସି ସୂତା କାଟୁଥିଲା, ସେ ମଧ୍ୟ ଜାତୀୟ ସଂଗ୍ରାମରେ ଭାଗ ନେଇଛି ବୋଲି ଅନୁଭବ କଲା । ସେଭଳି ଅନୁଭବ କରିବାପାଇଁ ଯେଉଁ ପ୍ରକାରର ବାୟୁମଣ୍ଡଳ ସୃଷ୍ଟି ହେବା ଆବଶ୍ୟକ, ଠିକ୍ ସେହି ପ୍ରକାରର ବାୟୁମଣ୍ଡଳ ଗାନ୍ଧୀଜୀ ସୃଷ୍ଟି କରି ଦେଇଥାନ୍ତି । ସେହି କଳା ତାଙ୍କୁ ଜଣାଥିଲା । କୁଟୀରଶିଳ୍ପର ପୁନରୁଦ୍ଧାର, ନାରୀ ଜାଗରଣ, ସାଂପ୍ରଦାୟିକ ଏକତା ପାଇଁ କାର୍ଯ୍ୟ, ହରିଜନସେବା

ବା ଅସ୍ପୃଶ୍ୟତା ନିବାରଣ—ଏଭଳିକି ଗ୍ରାମ ସଫେଇ ମଧ୍ୟ ଜାତୀୟ ଆନ୍ଦୋଳନର ଅଙ୍ଗ ବୋଲି ଗାନ୍ଧୀଜୀ ବାରମ୍ବାର କହିବାକୁ ଲାଗିଲେ । ମୋଟଉପରେ ଦେଖିବାକୁ ଗଲେ ଜେଲ୍ ଯିବାଟା ହେଲା ସଂଗ୍ରାମର ଶେଷ କାର୍ଯ୍ୟ—ଉପରୋକ୍ତ ଗଠନମୂଳକ କାର୍ଯ୍ୟ ସେହି ସଂଗ୍ରାମ ପାଇଁ ପ୍ରସ୍ତୁତି । ଯେଉଁମାନେ ଗାନ୍ଧୀଙ୍କଠାରେ ଅଟଳ ବିଶ୍ୱାସ ରଖିଥିଲେ, ନିଜର ସମସ୍ତ ସମୟ ଦେଇ ଦେଶକାର୍ଯ୍ୟ କରୁଥିଲେ, ସେମାନେ କ୍ରମେ ଗୋଟିଏ ଗୋଟିଏ ସଙ୍ଗଠନ କାର୍ଯ୍ୟକେନ୍ଦ୍ର ଖୋଲିଲେ । ବଖ୍ରି ସେବାଘର ବା ଅଲକାଶ୍ରମ, ଜୀବରାମ କଲ୍ୟାଣଜୀଙ୍କ ଭଦ୍ରକ ଆଶ୍ରମ, ଅଗରପଡ଼ାର କର୍ମମନ୍ଦିର, ସୋରର ପୁରୁଷୋତ୍ତମ ଆଶ୍ରମ, ସାକ୍ଷୀଗୋପାଳର ଗୋପବନ୍ଧୁ ଦରିଦ୍ର ନାରାୟଣ ସେବାସଂଘ ଏହିଭଳି ଗୋଟିଏ ଗୋଟିଏ କେନ୍ଦ୍ର । ଶ୍ରୀମତୀ ରମା ଦେବୀ ବରୀରେ ବସିଗଲେ ଓ ପଣ୍ଡିତ ନୀଳକଣ୍ଠ ବସିଲେ ବେରବୋଇଠାରେ । ମାଳତୀ ଦେବୀ ବାଜି ରାଉତ ଛାତ୍ରାବାସର ଦାୟିତ୍ୱରେ ରହିଲେ । ଓଡ଼ିଶାର ବହୁସ୍ଥାନରେ ଖଦୀକେନ୍ଦ୍ର ଖୋଲିଗଲା । କିନ୍ତୁ ଆଚାର୍ଯ୍ୟ ମହାଶୟ କୌଣସି ଗୋଟିଏ କେନ୍ଦ୍ରରେ ନିଜକୁ ବାନ୍ଧି ରଖିଦେଲେ ନାହିଁ । ପ୍ରତ୍ୟେକ ସଙ୍ଗଠନ କାର୍ଯ୍ୟ ଅନୁଷ୍ଠାନ ବା କେନ୍ଦ୍ର ତାଙ୍କର ନିଜର ବୋଲି ସେ ମନେକଲେ । ସମସ୍ତଙ୍କୁ ପ୍ରେରଣା ଦେବା, ସବୁଠାରେ କିଛିଦିନ ଲେଖାଏ ରହିବା ଥିଲା ତାଙ୍କର କାର୍ଯ୍ୟ । ଗୋଟିଏ ବିଛଣା, ଖଣ୍ଡିଏ ବାକ୍ସ ଚରଖା ବା ଅରଟ ଥିଲା ତାଙ୍କର ସମ୍ବଳ । ସେଇ ଦୁଇଟିକୁ ଧରି ସେ ଯେକୌଣସି କର୍ମକ୍ଷେତ୍ରରେ ପହଞ୍ଚି ଯାଉଥିଲେ । ତାଙ୍କର ଅତି ପ୍ରିୟ ଗୁଣନିଧି ମହାନ୍ତି, ଈଶ୍ୱରଲାଲ ବ୍ୟାସ ଅନେକ ସମୟରେ ଏହିସବୁ ଯାତ୍ରାରେ ସାଥୀ ହୋଇ ରହିଥାଆନ୍ତି ।

ଏହି ଶାନ୍ତ ସ୍ୱଭାବର ଆଚାର୍ଯ୍ୟ ହରିହର କାହାକୁ ପଦେ କଡ଼ା କଥା କହନ୍ତି ନାହିଁ ସିନା—କେଉଁଠି ଅତ୍ୟାଚାର ହେଲେ, କାହାପ୍ରତି ଅନ୍ୟାୟ କରାଗଲେ ସେ ବରଦାସ୍ତ କରିପାରନ୍ତି ନାହିଁ, ସ୍ଥିର ହୋଇ ରହିପାରନ୍ତି ନାହିଁ । ଦରିଦ୍ର ହରିଜନମାନଙ୍କ ଉପରେ ଅତ୍ୟାଚାର ହେଲେ ସେ ଯାଇ ସେମାନଙ୍କ ପାଖରେ ଠିଆ ହୋଇଯିବେ । ସମାଜରେ କୁସଂସ୍କାର ତାର ବିକଟରୂପ ଦେଖାଇଲେ ସେ ତାହାର ପ୍ରତିବାଦ କରନ୍ତି । ତାଙ୍କ ପ୍ରତିବାଦର ଢଙ୍ଗ ସଂପୂର୍ଣ୍ଣ ନୂତନ ଧରଣର ହୋଇଥିବାରୁ ସେଥିରେ ବାହାରକୁ ଚମକ ନ ଥାଏ । କିନ୍ତୁ ଟିକିଏ ଲକ୍ଷ୍ୟ କଲେ ଜଣାପଡ଼ିବ ସେ କେତେ ଦୃଢ଼ ଥା'ନ୍ତି । ୧୯୬୪ରେ ସେ ପୁରୀରେ ଟିକିଏ ବିଶ୍ରାମ ନେବା ଅବସ୍ଥାରେ ଥା'ନ୍ତି । ଓଡ଼ିଶାରେ ଚାଲିଲା ଛାତ୍ର ଆନ୍ଦୋଳନ । ପୁଲିସଂକ ଗୁଳିମାଡରେ କେତେଜଣ ଛାତ୍ର ପ୍ରାଣ ହରାଇଲେ । ସରକାରଂକ ସହିତ ଗୋଟାଏ ମିଳାମିଶା ନ ହେବାରୁ ଓଡ଼ିଶାର ଚାରିଆଡ଼େ ସବୁ ଯେପରିକି ଅଶାନ୍ତିର ନିଆଁ ବ୍ୟାପିଯାଉଥାଏ । ଆଚାର୍ଯ୍ୟ ମହାଶୟ ସ୍ଥିର ହୋଇ ରହିପାରିଲେ ନାହିଁ । ଦିନେ ଖବରକାଗଜକୁ ବିବୃତି ଦେଇଦେଲେ— ମୁଁ ଧୃତରାଷ୍ଟ୍ରଂକ ଭଳି ଅନ୍ଧ ହୋଇ ବସି ମୋର ନାତିନାତୁଣୀଂକ ଦୁଃଖର କାହାଣୀ

ଶୁଣି ପାରିବ ନାହିଁ । କାହାର ଦୋଷ ସେ ବିଚାର ମୋ ପାଖରେ ନାହିଁ । ଯେଉଁମାନେ ଅଙ୍ଗ ଶାସନ ଗାଦିରେ ସେମାନଙ୍କୁ ମଧ୍ୟ ମୁଁ ଗଭୀର ଶ୍ରଦ୍ଧା କରେ । ତଥାପି ମୁଁ ଯାଇ ଭୁବନେଶ୍ୱରରେ ଆମରଣ ଅନଶନ କରିବି । ଏ କଥାଁ ଯଦି ଲଭ ନ ଯାଏ ମୁଁ ବଞ୍ଚିରହିବାର କୌଣସି ଆବଶ୍ୟକତା ନାହିଁ ।

ଏହି ଘୋଷଣାର ପ୍ରଭାବ ଶାସକ ତଥା ଗ୍ରାମମାନଙ୍କ ଉପରେ କିଭଳି ଭାବରେ ପଡ଼ିଲା, ତାହା ତ ଏହି ଅଲ୍ପଦିନର ଇତିହାସ । ତାଙ୍କୁ ଆମରଣ ଅନଶନ କରିବାକୁ ପଡ଼ିଲା ନାହିଁ ।

୧୯୬୧ ଶେଷ ବେଳକୁ ଦେଖାଗଲା ଯେ ତାଙ୍କ ଦେହ ମଝିରେ ମଝିରେ ଖରାପ ହେଉଛି । ବେଳେବେଳେ ସେ ଅନେକ କଥା ଭୁଲିଯାଉଛନ୍ତି । ଅନେକ ସମୟରେ ଡାକ୍ତରମାନଙ୍କର ପରାମର୍ଶ ଲୋଡ଼ା ପଡୁଛି । ପୁରୀ ଗୋପବନ୍ଧୁ ସେବାସଦନରେ ତାଙ୍କର ଯତ୍ନ ନେବାର ସବୁ ବ୍ୟବସ୍ଥା କରି ହେଉନାହିଁ । କଟକକୁ ଆସିଲେ ଯେତେବେଳେ ଡାକ୍ତରମାନେ ଦେଖି ପାରିବେ । ବହୁ ଲୋକଙ୍କ ମେଳରେ ରହିଲେ ତାଙ୍କୁ ଟିକିଏ ଭଲ ଲାଗିବ । ଏହି ସବୁ କାରଣରୁ ଆଚାର୍ଯ୍ୟଙ୍କୁ କଟକ ଯୋବରା ସାହିର ଭୂଦାନ ଅଫିସକୁ ଆଣିବାର ବ୍ୟବସ୍ଥା କରାଗଲା ।

ଅଳ୍ପ କେତେ ମାସ ସେ ଏକପ୍ରକାର ଚଳିଗଲେ । ତାଙ୍କ ଜ୍ଞାନେନ୍ଦ୍ରିୟଗୁଡ଼ିକ କ୍ରମେ କ୍ରମେ ଅକାମୀ ହୋଇ ଆସୁଥା'ନ୍ତି । ପୂର୍ବରୁ ଦୃଷ୍ଟିଶକ୍ତି ହରାଇ ସାରିଥିଲେ । ଏଣିକି କାନକୁ ଭଲ ଶୁଭିଲା ନାହିଁ । ମସ୍ତିଷ୍କ କ୍ରମେ ଦୁର୍ବଳ ହୋଇ ଆସିଲା । କଥାବାର୍ତ୍ତା କରିବାକୁ ସେ ସୁଖ ମଣିଲେ ନାହିଁ । କିଛି ଗୋଟାଏ ପଚାରିଲେ ଉତ୍ତର ପାଇବା ସମ୍ଭବ ହେଉ ନ ଥାଏ, କାରଣ ସେ କିଛି ବୁଝିପାରୁ ନ ଥାନ୍ତି କହିଲେ ଚଳେ ।

ଖାଇବା ଛାଡ଼ିଦେବେ ବୋଲି ଜିଦ୍ ଧରିଲେ । ବହୁ କଷ୍ଟରେ ରାଜି ହେଲେ କେବଳ ତରଳ ଖାଦ୍ୟ ଖାଇବା ପାଇଁ । ସଜ ପେଲଦହି ଟିକିଏ,କେତେବେଳେ କିଛି ଫଳରସ, ଅଳ୍ପ ଟିକିଏ ହରଲିକ୍ସ୍ ବା ସେହିଭଳି କିଛି ଖୁଆଇ ତାଙ୍କୁ ବଞ୍ଚାଇ ରଖା ଯାଇଥାଏ । ସର୍ଚ୍ଚିବାବୁଙ୍କ ପରଦରେ ତାଙ୍କୁ ତରିଗ ଘଣ୍ଟା ଜଗିବା ଆଉ ସମ୍ଭବ ହେଲା ନାହିଁ । ନିଜ ଇଚ୍ଛାରେ ଝାଡ଼ା ପରିସ୍ରା ସେ କରୁନଥାନ୍ତି । ଗ୍ରେଟ ଶିଶୁଙ୍କ ଯେଉଁଭଳି ଝାଡ଼ା ପରିସ୍ରା କରାନ୍ତି ତାଙ୍କୁ ମଧ୍ୟ ସେହିଭଳି କରାଯାଉଥାଏ । ଭୂଦାନ କର୍ମୀ ସୁରେନ୍ଦ୍ର ନାଥ ମହାନ୍ତି ଆଉ ଜଣେ ଆଚାର୍ଯ୍ୟ ସେବକ ଭାବରେ ଯୋଗଦେଲେ । ରମା ଦେବୀଙ୍କର ସଜାଗ ଦୃଷ୍ଟି ସବୁବେଳେ ଥାଏ । ଡାକ୍ତରମାନଙ୍କ ଭିତରୁ ଶରତ ଚନ୍ଦ୍ର ମିଶ୍ର, ସୁଧାକର ଆଚାର୍ଯ୍ୟ,ହରିଶ୍ଚନ୍ଦ୍ର ବସୁ ଗୁରୁପ୍ରସାଦ ମହାନ୍ତି, ନୃସିଂହ ଚରଣ ମିଶ୍ର, କିଶୋରଚନ୍ଦ୍ର ମିତ୍ର,ବନମାଳୀ ପ୍ରମୁଖ ମିଳିତ ଭାବରେ ଆଚାର୍ଯ୍ୟଙ୍କ ଶରୀରର

ଦାୟିତ୍ୱ ନେଇଥାନ୍ତି । ଭାଇବୋହୂ ତାରାମଣି, ପୁରୁରୀ ରବନାରାୟଣ, ନବକିଶୋର ଉମାଚରଣ, ସଚ୍ଚିଦାନନ୍ଦ, ଲକ୍ଷ୍ମୀନାରାୟଣ ଓ ରାଜକିଶୋର, ଝିଆରୀ ସ୍ନେହଲତା, ଗୀତା, ଝିଆରୀଜ୍ୱାଇଁ ରାଧିକାପ୍ରସାଦ, କାଳୀପ୍ରସାଦ ତାଙ୍କର ଯତ୍ନ ନେଉଥାନ୍ତି । ଭୂଦାନ ଅଫିସର ସମସ୍ତେ ସତେ ଯେପରିକି ହରିହରଙ୍କ ସେବାପାଇଁ ସବୁବେଳେ ପ୍ରସ୍ତୁତ ହୋଇ ରହିଥାନ୍ତି ।

ମଝିରେ ମଝିରେ ତାଙ୍କ ଅବସ୍ଥା ଉଦ୍‌ବେଗ ଜନକ ହୋଇଉଠେ । ଖବର ପାଇ ସମ୍ବାଦପତ୍ରରୁ ପଢ଼ି ବହୁଲୋକ ତାଙ୍କୁ ଦେଖିବାକୁ ଆସନ୍ତି । ଓଡ଼ିଶାର ଭିନ୍ନ ଭିନ୍ନ ଅଞ୍ଚଳରୁ ଯିଏ ଯେତେବେଳେ କଟକ ଆସନ୍ତି ଆଚାର୍ଯ୍ୟଙ୍କର ଦର୍ଶନ କରିବାକୁ ଭୁଲନ୍ତି ନାହିଁ । ସେ କାହାକୁ ଚିହ୍ନି ନ ଥାନ୍ତି, କାହାରି କଥା ଶୁଣୁ ନ ଥାନ୍ତି । କିନ୍ତୁ ସମସ୍ତେ ତାଙ୍କ ପାଖରେ ଟିକିଏ ବସିଗଲେ ବା ପାଦ ସ୍ପର୍ଶ କଲେ ଅନୁଭବ କରନ୍ତି ସତେ ଯେପରିକି ସେ କଥାବାର୍ତ୍ତା କରୁଛନ୍ତି । ଯେତେ ଲୋକ ତାଙ୍କୁ ଦେଖିବାକୁ ଆସନ୍ତି ସମସ୍ତେ ଏକ ମୁଖରେ ସ୍ୱୀକାର କରନ୍ତି ଯେ ତାଙ୍କର ଯେଉଁଭଳି ସେବା କରାଯାଉଅଛି ଆଉ କେହି ସେଭଳି କରିପାରନ୍ତେ ନାହିଁ ।

୧୯୭୨ ଫେବୃୟାରୀ ୨୧ ତାରିଖ ଆସିଗଲା । ଦ୍ୱିପହର ବେଳକୁ ଜଣା-ପଡ଼ିଲା ଯେ ଗ୍ରନ୍ଥି ଭିତରେ କଫ ହୋଇଛି । ଦେହରେ ଜ୍ୱର ଥାଏ । ଡାକ୍ତରମାନେ ଆଶଙ୍କା କଲେ । ମାସ-ମାସଧରି ପଡ଼ିରହିଛନ୍ତି । ଯଦିଓ ନିଜେ କିଛି ପ୍ରକାଶ କରିପାରୁ ନାହାନ୍ତି ଭିତରେ କଷ୍ଟ ପାଉଥିବେ ବୋଲି କେହି କେହି ମଝିରେ ମଝିରେ ମତ ଦିଅନ୍ତି । 'ତାଙ୍କୁ ଭଗବାନ ନେଇଯାଆନ୍ତୁ ବୋଲି' ମଧ୍ୟ କେବେ କେବେ କାହାରି ମୁହଁରୁ ଶୁଣାଯାଇଛି । ତଥାପି ସମସ୍ତଙ୍କ ମନ ଦବି ଆସୁଥାଏ । ପୂର୍ବରୁ କେତେଥର ସେ ଯିବା ଯିବା ଅବସ୍ଥାକୁ ଆସି ଯାଇଛନ୍ତି; ପୁଣି ଭଲ ହୋଇ ଯାଇଛନ୍ତି । ଏଥର ସେ ମଧ୍ୟ ଭଲ ହୋଇଯାଇ ପାରନ୍ତି । ସେ ଏମିତି ଶୋଇ ରହିଥିଲେ ବି ଅନ୍ୟମାନେ ପ୍ରେରଣା ପାଉଛନ୍ତି ।

କୋଡ଼ିଏ ତାରିଖ ଦିନ ଗୋଟାକ ବେଳକୁ ଅବସ୍ଥା ଆତୁର ଖରାପ ହୋଇ ଆସିଲା । କଫର ପ୍ରକୋପ ବଢ଼ିଛି । ଦୀର୍ଘ ନିଶ୍ୱାସ ପକାଇଲେଣି । କୌଣସି ପ୍ରକାରର ଇଞ୍ଜେକ୍‌ସନ ଦେଇ ତାଙ୍କୁ କଷ୍ଟ ଦିଆଯିବନାହିଁ ବୋଲି ସ୍ଥିର ରହିଥାଏ । ଅକ୍‌ସିଜେନ ଦେଲେ ଭଲ ହୁଅନ୍ତା । ଗୋଟିଏ ସିଲିଣ୍ଡର ରୋଟାରୀ କ୍ଳବରୁ ଯୋଗାଡ଼ ହେଲା । "ମୁଖା" ସାହାଯ୍ୟରେ ନାକବାଟେ ଅକ୍‌ସିଜେନ୍ ଦେବାରୁ ଜୋର ନିଶ୍ୱାସଟା ଟିକିଏ ଧୀର ହେଲା । ଜଣକ ପରେ ଜଣେ ଡ଼ାକ୍ତର ଆସି ଦେଖୁଥାନ୍ତି—ଏ ଔଷଧ ସେ ଔଷଧ ଆଣ ବୋଲି କହି ବିବାଦ ହେଉଥାଏ । ସାନଭାଇ, ଝିଆରୀ, ପୁରୁରୀ ଭୂଦାନ କର୍ମୀମାନେ, ତାଙ୍କ ସହିତ ପ୍ରାୟ ତିରିଶ ବର୍ଷ କଟାଇଆସିଥିବା କେତେଜଣ ସାଧାରଣ କର୍ମୀ ପାଖେ ପାଖେ ଥାଆନ୍ତି । ବୟସରେ ତାଂକଠାରୁ ଚାରି ପାଞ୍ଚବର୍ଷ ସାନ ପଣ୍ଡିତ ହୋତା ଓ ତାଂକ ଝିଅ-ବୟସର ୭୨ ବର୍ଷ-ବୟସ୍କା ରମାଦେବୀ ଭୂଦାନ

ସର୍ବୋଦୟ ହେବା ଭିତରେ ଏପାଖ ସେପାଖ ବୁଲି ବୁଲି ନିଜ ମନକୁ କଅଣ ସବୁ ବୁଝାଉ ଥାଆନ୍ତି ।

ସନ୍ଧ୍ୟା ହୋଇଗଲା । ଖବରକାଗଜ ଗୁଡ଼ିକରେ ବାହାରି ପଡ଼ିଲା ଯେ ତାଙ୍କ ଅବସ୍ଥା ଉଦ୍‌ବେଗଜନକ । ରାତି ଦଶଟା ପର୍ଯ୍ୟନ୍ତ ବହୁଲୋକ ଆସି ବୁଝିଯାଉ ଥାଆନ୍ତି କେମିତି ଅଛନ୍ତି । ଡାକ୍ତର ଶରତ ବାବୁ, ନୃସିଂହ ବାବୁ, ସୁଧାକର ବାବୁ ପାଳି କଲାଭଳି ଜଣକ ପରେ ଜଣେ ଜଗି ଥାଆନ୍ତି ।

ତାଙ୍କ ଶେଷ ଶଯ୍ୟାର ଖୁବ୍ ଅଳ୍ପ ଦୂରରେ ସମବେତ ପ୍ରାର୍ଥନା ଗମ୍ଭୀର ବାତାବରଣ ଭିତରେ ହେଲା । ଯେଉଁ ଭଜନ ଗୁଡ଼ିକ ଆଚାର୍ଯ୍ୟ ମହାଶୟଙ୍କୁ ଖୁବ୍ ଭଲ ଲାଗେ ସେଥିରୁ ଗୋଟିଏ ଜଣେ ଭଉଣୀ ବୋଲିଲେ ।

ଦୁଇ ତିନିଜଣ ତାଙ୍କ ପାଖରେ ବସି ରହିଲେ । ଅନ୍ୟମାନେ ଏଠି ସେଠି ଶୋଇ ପଡ଼ିଥାନ୍ତି । ରାତି ଦୁଇଟା ପଚିଶ ମିନିଟ୍ । ଦେଖାଗଲା ଯେ ସେ କ୍ରମେ ଦବି ଆସୁଛନ୍ତି । ଆଉ ଉଧୁରିବେ ବୋଲି ଆଶା ରହିଲା ନାହିଁ । ତାଙ୍କ 'ଜନ୍ମ ପରିବାର'ର ଯେଉଁମାନେ ଅଳ୍ପ କେତେଘଣ୍ଟା ପୂର୍ବରୁ ଖିଆପିଆ କରିବାକୁ ଚାଲି ଯାଇଥିଲେ ସେମାନଙ୍କୁ ଡକାଇ ପଠାଗଲା । ସେମାନଙ୍କ ବ୍ୟତୀତ ଆଉ 'ଛ' ସାତଜଣ ଶେଷ ମୁହୂର୍ତ୍ତରେ ଉପସ୍ଥିତ ରହିବା ନିଶ୍ଚୟ ଉଚିତ ବୋଲି ଅନୁଭବ କରା ଯିବାରୁ ସେମାନଙ୍କୁ ମଧ୍ୟ ଡକାଗଲା ଗୀତାପାଠ ଆରମ୍ଭ ହୋଇ ଯାଇଥାଏ । ଦୁଇଜଣ ଡାକ୍ତର ବସି ରହିଥା'ନ୍ତି ।

ସକାଳ ଛଟା ପଚିଶ ମିନିଟ୍ । ଏକାଦଶୀ ତିଥି ଆରମ୍ଭ । ନିଶ୍ୱାସ ବନ୍ଦ ହୋଇଗଲା । ସମସ୍ତେ ପାଦତଳେ ମୁଣ୍ଡିଆଟିଏ ଲେଖାଁ ମାରି ନୀରବରେ ଠିଆହୋଇ ରହିଲେ ।

ଦିନ ଏଗାରଟା ବେଳେ ଭୂଦାନ ଅଫିସରୁ ଶବଶୋଭାଯାତ୍ରା ବାହାରିଲା । ସାକ୍ଷୀଗୋପାଳକୁ ଶବ ନିଆଯିବ । ପୁରୀରୁ ବହୁଲୋକ ଟେଲିଫୋନ୍ ଯୋଗେ ନିବେଦନ କଲେ ଯେ ପୁରୀ ସହରର ଲୋକେ ଯେପରି ତାଙ୍କ ଶେଷ ଦର୍ଶନର ସୁଯୋଗ ପାଆନ୍ତି । ତେଣୁ ସ୍ଥିରହେଲା—ଶୋଭାଯାତ୍ରା ବାଣୀବିହାରବାଟେ ପୁରୀ ଯିବ ଓ ସେଠାରୁ ଫେରି ବକୁଳବନ ସମାଧି ପୀଠରେ ଶେଷକୃତ୍ୟ ସମ୍ପନ୍ନ ହେବ ।

ମଟରରେ ଆଚାର୍ଯ୍ୟଙ୍କର ଶବକୁ ନିଆଗଲା ବେଳେ କଟକରୁ ପୁରୀ ଓ ସାକ୍ଷୀଗୋପାଳ ଭିତରେ ବହୁସ୍ଥାନରେ ଶୋକାକୁଳ ଜନତା ଶବାଧାର ଉପରେ ଭକ୍ତି-ପୁଷ୍ପ ବୃଷ୍ଟି କରୁଥାନ୍ତି । ଦୀର୍ଘ ସାଢେ ପାଞ୍ଚଘଣ୍ଟା କାଳ ''ରାମନାମ ସତ୍ୟ'' ବୋଲା ହେଉଥାଏ ।

ସାକ୍ଷୀଗୋପାଳରେ ଅପୂର୍ବ ଦୃଶ୍ୟ । ଗୋପବନ୍ଧୁ, ଗୋଦାବରୀଶ, ହରିହର, ନୀଳକଣ୍ଠ, କୃପାସିନ୍ଧୁ—ଏହି ପଞ୍ଚସଖାଙ୍କ ଭିତରୁ ଆଚାର୍ଯ୍ୟ ହରିହର ଥିଲେ ଶେଷସଖା । ତାଙ୍କ ସହିତ ଗୋଟିଏ ଯୁଗ ଚାଲିଗଲା ବୋଲି ସମସ୍ତେ କହୁଥାନ୍ତି ।

ସନ୍ନ୍ୟାସୀ କୋଇଲେ ବୁଝାଏ କ'ଣ ? ସଂସାରର ସମସ୍ତ ମାୟା ମୋହ ତୁଟାଇ ଯେଉଁ ଲୋକ ଭଗବତ୍ ଆରାଧନାରେ ପ୍ରତି ମୁହୂର୍ତ୍ତ ବ୍ୟସ୍ତ କରୁଛନ୍ତି ତାଙ୍କୁହିଁ ତ ସନ୍ନ୍ୟାସୀ କୁହାଯିବ ? ହରିହର ତ ସେହି ସଂଜ୍ଞା ଭିତରେ ପଡ଼ିଯାଉଛନ୍ତି ! ଶ୍ମଶାନରୁ ଫେରି ଯଦି କେହି ତାଙ୍କ "ସମ୍ପତ୍ତି"ର ତାଲିକା କରିଥା'ନ୍ତା, ସେ ଦେଖିଥାନ୍ତା ଯେ ତାଙ୍କର ନିଜର ଗୋଟିଏ ପୁଞ୍ଜା ଟଙ୍କା ଏ ସଂସାରରେ ସମ୍ପତ୍ତି ବୋଲି ନାହିଁ । ଯେଉଁ ଲୁଗା ଖଣ୍ଡିକ ପିନ୍ଧିଥିଲେ ତାହା ତାଙ୍କ ସାଙ୍ଗରେ ଯାଇଛି । ବାକି ଯେଉଁ ଖଣ୍ଡେ ଦିଖଣ୍ଡ ଗ୍ରେଟ ଧୋତି ଚଦର ରହିଥିଲା ତା'କୁ ଭୂଦାନ ଅଫିସରେ ସଜାଇ ରଖାଯାଇଛି । ସେ କ'ଣ ତାଙ୍କର ପ୍ରତି ମୁହୂର୍ତ୍ତିକୁ ଭଗବତ୍ ସେବାରେ ଲଗାଇଥିଲେ ? "ନିଶ୍ଚୟ" ବୋଲି କହିଲେ କିଛି ଭୁଲ୍ ହେବନାହିଁ । ସେ ଭଗବାନଙ୍କୁ ନରନାରାୟଣ ରୂପେ ଦେଖୁଥିଲେ । ଦୁଃସ୍ଥ, ନିଷ୍ପେଶିତ, ଦରିଦ୍ର ଓ ଆର୍ତ୍ତର ସେବାହିଁ ପ୍ରକୃତ ଭଗବତ୍ ସେବା ବୋଲି ସେ ଏକା ବେଳକେ ନିଶ୍ଚିତ ହୋଇ ଯାଇଥିଲେ । "ସତ୍ୟହିଁ ଭଗବାନ"—ଏହାର ପ୍ରକୃତ ଅର୍ଥ ସେ ବୁଝିଥିଲେ । ତାଙ୍କୁ ସନ୍ନ୍ୟାସୀ କୁହାଯିବ ନାହିଁ ତ ଆଉ କାହାକୁ କୁହାଯିବ ?

ସତ୍ୟର ଏହି ପୂଜାରୀଙ୍କ ଜୀବନୀ ତିନିହଜାର ପୃଷ୍ଠାରେ ଲେଖାଯାଇପାରେ—ତିରିଶି ପୃଷ୍ଠାରେ ମଧ୍ୟ ଲେଖାଯାଇପାରେ । ତାଙ୍କ ସହିତ ଯେଉଁମାନେ କେତେ ବର୍ଷ କଟାଇଛନ୍ତି ସେମାନେ ଯଦି ନିଜର ଅନୁଭୂତିହିଁ ଲେଖିଦିବେ, ଶହଶହ ପୃଷ୍ଠାର ଗୋଟିଏ ଗୋଟିଏ ବହି କାହାରି ପଢ଼ିବ ।

'ମୋତେ ସେ ସବୁଠାରୁ ଅଧିକ ସ୍ନେହ କରୁଥିଲେ' ବୋଲି କହିବା ଲୋକ ଆଜି ମଧ୍ୟ ଓଡ଼ିଶାରେ ଶହଶହ ଅଛନ୍ତି । 'ତାଙ୍କଭଳି ଆଦର୍ଶ ଶିକ୍ଷକ ଆଉ ମିଳିବେ ନାହିଁ'—ଏହି କଥା ନିଜ ଅନୁଭୂତିରୁ କହିବା ପାଇଁ ନିଶ୍ଚୟ ପାଞ୍ଚଶହ ବା ହଜାରେ ଲୋକ ଥିବେ । 'ଦରିଦ୍ର ମନର କଥା ସେ ଯେମିତି ବୁଝୁଥିଲେ ଆଉ କିଏ ବୁଝିବ ?' ବୋଲି ହଜାର ହଜାର ଲୋକଙ୍କ ମୁହଁରୁ ଶୁଣିବ । ପ୍ରତ୍ୟେକଙ୍କ ମୁହଁରେ ଗୋଟିଏ-କାହାଣୀ ରହିଛି । ବିଂଶ ଶତାବ୍ଦୀର ଆରମ୍ଭରୁ ୧୯୭୧ ପର୍ଯ୍ୟନ୍ତ ଯେଉଁ ଲୋକ ନିଜକୁ ଭୁଲି ଅନ୍ୟର କଥାହିଁ ଚିନ୍ତା କରିଛି, ତା ଜୀବନୀ ବିଷୟର ତଥ୍ୟ ସଂଗ୍ରହ କରିବାକୁ ଗୁଡ଼ାଏ ପରିଶ୍ରମ କରିବାକୁ ପଡ଼ିବ ନାହିଁ । ତାଙ୍କୁ ଯିଏ ଯେଉଁ ଦୃଷ୍ଟିରୁ ବଡ଼ ବୋଲି ଦେଖିଛି ସେ ଦୃଷ୍ଟିରୁ ବର୍ଣ୍ଣନା କରି ଦିବାରେ ଭୁଲ କିଛି ହେବ ନାହିଁ ।

●

# ସ ମେ ଭକ୍ତଃ ସ ମେ ପ୍ରିୟଃ

ଚିତ୍ତ ରଞ୍ଜନ ଦାସ

ସେ ଦିନର ଘଟଣା ଠିକ୍ କାଲିପରି ମନେ ହେଉଛି, ଆଖି ବୁଜାଇ ଦେଲେ ଜଳ ଜଳ ଦିଶିଯାଉଛି, ସତେ ଅବା କାହାକୁ ଛୁଇଁ ଆସିଲା ପରି ମନେହେଉଛି । ସେମାନେ ଆଚାର୍ଯ୍ୟ ମହାଶୟଙ୍କୁ ବାରଣ୍ଡାରେ ଗୋଟିଏ ଉଚ୍ଚ ଆସ୍ଥାନ ଉପରେ ଆଣି ଶୁଆଇ ଦେଇଥାନ୍ତି, ଧଳା ଦେହରେ ତାଙ୍କର ଶରୀରଟାକୁ ଘୋଡ଼ାଇ ଦିଆଯାଇଥାଏ । ତାହାର ଉପରେ ଫୁଲ ବିଛା ହୋଇଥାଏ । ପାଖରେ ତୁଳସୀ କୋଡ଼ୁଆ, ଦୀପଟିଏ ନିର୍ବାତ ହୋଇ ଜଳୁଥାଏ । ଜଣେ କିଏ ଗୀତା ପଢ଼ୁଥାନ୍ତି । ଭକ୍ତ, ଅନୁରକ୍ତ, ଅନୁଗତ ତଥା ଶୋକ ସନ୍ତପ୍ତ ମାନେ ଶବପାଖରେ ଘେରିକରି ବସିଥାନ୍ତି ।

କ୍ରମେ କୋଳାହଳ ବଢ଼ିଲା । ଗୋଟାଏ ମୃତ୍ୟୁକୁ କେନ୍ଦ୍ର କରି ଜନସମାଗମ ଲାଗିଗଲା । କିଏ ପାଦରେ ଆସି ପହଞ୍ଚିଲେ, କିଏ ସାଇକେଲରେ, କିଏ ରିକ୍ସାରେ ଓ ପୁଣି ଆଉ କିଏ କାର୍‌ରେ । କିଏ ଏକୁଟିଆ, କିଏ ସପରିବାର । ନିର୍ମଳ ସଫାଲୁଗା ପିନ୍ଧି ନେତାମାନେ ପହଞ୍ଚିଲେ, ବୟୋଜ୍ୟେଷ୍ଠମାନେ ବି ଆସି ପହଞ୍ଚିଲେ । ଆଉ ବାରଣ୍ଡା ଉପରେ ସ୍ଥାନ ହେଲାନାହିଁ । ତେଣୁ ମଣିଷଙ୍କ ମେଳା ଦୁଆର ମୁହଁକୁ ମଧ୍ୟ ପ୍ରସାରିତ ହୋଇଗଲା । ସଂଖ୍ୟା ବଢ଼ିବାରୁ କଥାବାର୍ତ୍ତାର ଚହଳ ବି ଆରମ୍ଭ ହେଲା । କିଏ କିପରି ସମ୍ବାଦ ପାଇ କିପରି ଆସି ପହଞ୍ଚିଲେ, ହୁଏତ ଆଗ ସେଇକଥା ପଡ଼ିଲା । ତାପରେ ଆଚାର୍ଯ୍ୟ ମହାଶୟଙ୍କ କଥା ପଡ଼ିଲା । ସିଏ କ'ଣ ଥିଲେ, କେତେଭଲ ଲୋକ ଥିଲେ ଏବଂ ଆଜି ସମସ୍ତଙ୍କୁ ଛାଡ଼ି ଚାଲିଗଲେ— ସେଇ କଥାର ଚର୍ଚ୍ଚା ହେଲା । ଫଟୋବାଲା ଫଟୋ ନେଲେ, ସଦ୍ୟ ଘଟିଯାଇ ଥିବା ଏକ ଦୁଃସମ୍ବାଦକୁ ବ୍ୟକ୍ତିଗତ ଖେଦର ଏକ ଅନୁରଞ୍ଜନା ଦେବା ସକାଶେ ସାମ୍ବାଦିକ ମାନେ ବକ୍ତବ୍ୟମାନ ବି ନେଲେ । ଆପଣାଆପଣାର ସ୍ବକୀୟ ବୃହାଣିରେ ଦେଖି ଓ ଗୋଟାଏ ମୃତ୍ୟୁ ଏବଂ ତଜ୍ଜନିତ ଦୁଃଖକୁ ଅନୁଭବ କରିବାର ଆପଣା-ଆପଣା ଠାଣି ଦେଇ କିଏ କହିଲେ, ଅନ୍ତରର ଗୋଟାଏ ଫୁଲ ଝରି ପଡ଼ିଲା । କିଏ କହିଲେ, ଗୋଟାଏ ଯୁଗ ଶେଷ ହୋଇଗଲା । ସମସ୍ତଙ୍କର ବକ୍ତବ୍ୟରୁ ବ୍ୟଞ୍ଜନା ନେଇ ଏକାଠି ମୂର୍ତ୍ତି ମାରିଲା ପରି ସେଦିନ ସଞ୍ଜକୁ ସମ୍ବାଦପତ୍ରରେ ଏତେ ଭଲା ଅକ୍ଷରରେ ବାହାରିଲା ଯେ 'ଉତ୍କଳର ଖ୍ରୀଷ୍ଟଦେବ, ସର୍ବୋଦୟର

ସୂର୍ଯ୍ୟମୂର୍ତ୍ତି ଓ ବକୁଲ ବନର ଋଷି ଆଗ୍ଯୁର୍ଯ୍ୟ ହରିହରଙ୍କର ମହାପ୍ରସ୍ଥାଣ ଘଟିଲା ।

ଆଗ୍ଯୁର୍ଯ୍ୟ ମହାଶୟ ସକାଳେ ଗଲେ, ଶବର କାଗଜ ସଞ୍ଜକୁ ବାହାରିଲା । ଏବଂ ସକାଳୁ ସଞ୍ଜଯାଏ ମର୍ତ୍ତ୍ୟରେ ଏହି ବାର କମ୍ବା ଚଉଦ ଘଣ୍ଟା ଭିତର କେତେ ଆଡ଼ମ୍ବରରେ ଆମର ଶୋକଶୋଭାଯାତ୍ରା ଚାଲିଲା । କେଡ଼େ ସୁତନ୍ତ୍ରିତ, ସଂଗଠିତ ଓ ସମୃଦ୍ଧିତ ଭାବରେ ଚାଲିଲା । ଆଗ୍ଯୁର୍ଯ୍ୟ ମହାଶୟଙ୍କର ସାନ ଆବାସସ୍ଥାନଟିରୁ କଟକର ନଗରପ୍ରାନ୍ତ ସବୁ ପରିକ୍ରମା କରି କାଠଯୋଡ଼ି ପାର ହୋଇ ପୁଣି ବାଟ ଦେଇ ଶେଷକୁ ସାକ୍ଷୀଗୋପାଳରେ ଆସି ପହଞ୍ଚିଲା । ଏବଂ ସେଇଠି ସେଇଠି ସମାଜମାନଙ୍କ ମେଳରେ ତାଙ୍କୁ ଚିତା ଉପରେ ବସାଇ ଦିଆଗଲା । ସବୁ ସରିବା ପରେ ଆମେ ସମସ୍ତେ ଭସ୍ମ ନେଇ ଘରକୁ ଆସିଲୁ, କୃତକୃତ୍ୟ ହେଲୁ । ଅର୍ଥାତ୍ ଆମର କାମ ସାରିଦେଲୁ । ନଶ୍ୱର କ୍ଷୀଣଶକ୍ତି ମଣିଷ ଏହାଠାରୁ ଆଉ ଅଧିକ କ'ଣ କରି ପାରନ୍ତା ? ଯେଉଁ ବାଟରେ ଯାଉଥିବା ମଣିଷକୁ କେହି କେବେହେଲେ ଅଟକାଇ ରଖି ପାରନାହିଁ, ଏବଂ ସେଥିଲାଗି ଆପଣାର ପ୍ରିୟସ୍ୱଜନ ମାନଙ୍କୁ ସେଇଠୁ ବିଦା ଦେଇ କେବଳ କାନ୍ଦି କାନ୍ଦି ଫେରିବାକୁ ହିଁ ହୋଇଛି, ସେହି ବାଟରେ ଆଉ ଅନ୍ୟକିଛି କରି ପାରିବା ଲାଗି ଆଉ କାହାର କୌଣସି ବଳ ନାହିଁ । ତେଣୁ ଏହି ସଂସାରକୁ ଗୋଟାଏ ଖେଳଘର ବୋଲି ମାନିନେବା ବ୍ୟତୀତ ଆଉ ଅନ୍ୟ ଉପାୟ ନାହିଁ; ସାନ ଓ ଅନାମଧେୟ ମାନଙ୍କ ପାଇଁ ଅଳପ କାନ୍ଦିବା, ଏବଂ ବଡ଼ମାନଙ୍କ ପାଇଁ ଟିକିଏ ଅଧିକ ଆଡ଼ମ୍ବର ସହିତ ଗୋଷ୍ଠୀରେ ବସି ଓ ସଭା ମଣ୍ଡାଇ କାନ୍ଦିବା,—ଆମର କରିବା ଭିତରେ କ୍ଷେତ୍ର ଓ କ୍ଷେତ୍ର ମଧ୍ୟରେ ଯାହା କେବଳ ଏତିକମାତ୍ର ସ୍ୱାଧୀନତା ହିଁ ରହିଛି ।

ସେ ଦିନ, ଅର୍ଥାତ୍ ତାଙ୍କ ସେହି ପ୍ରସ୍ଥାଣଦିବସରେ ଆଗ୍ଯୁର୍ଯ୍ୟ ମହାଶୟଙ୍କର ଶରୀର ଆଡ଼କୁ ଅନାଇ ତାକୁ ନଶ୍ୱର ବୋଲି କହିବାକୁ ଆଦୌ ମନ ହୋଇ ନଥିଲା । ଏବଂ ସେହିଭଳି ଏକ ବାଉଳା ଆଖିରେ ସେତେବେଳେ ଆପଣାର ଶରୀରଟାକୁ ମୁଁ କାହିଁକି ଆଦୌ ଏକ ନଶ୍ୱର ଶରୀର ବୋଲି ଅନୁଭବ କରି ପାରୁନଥିଲି । ସେତେବେଳେ ତାଙ୍କର ଶରୀରର ଦର୍ପଣ ଉପରେ ମୁଁ ଯେପରି ଆପଣାର ଶରୀରକୁ ମଧ୍ୟ ଦେଖିବାରେ ଲାଗିଥିଲି । ଏଇଟା ମୋଟେ ଅହଙ୍କାର ନୁହେଁ ଏହା ଏକ ଅଭିମାନ; ଆପଣାର ଏକ ଐଶ୍ୱର୍ଯ୍ୟକୁ ଯଥାର୍ଥରେ ଏକ ଐଶ୍ୱର୍ଯ୍ୟରୂପେ ଅନୁଭବ କରି ପାରିବାର ଏକ ଅଭିମାନ । ଆମେ କହିଲେ ସାଧାରଣତଃ ଗୋଟାଏ ଆଦ୍ୟ ଓ ଗୋଟାଏ ଅନ୍ତଭିତରେ ବନ୍ଦ ଦିଆହୋଇ ରହିଥିବା ଯେଉଁ ପର୍ଯ୍ୟାପ୍ତବାଚତାର କଳ୍ପନା କରିଥାଉ, ତାହା ପ୍ରଥମେ ପିଲା ହୋଇ ଏହି ସଂସାରକୁ ଆସେ,

ଏହି ସଂସାରର ଖାଣ୍ଡରେ ସିଏ କେତେ ଅଙ୍କଟ ଲଗାଏ, କେତେ ଧୂଳି ଧୂସର ହୁଏ । କେତେ ଖେଳେ ଓ ପିଲାବୟସ କାଟି ଆସିଥିବା ଅନ୍ୟ କେତେଲୋକଙ୍କୁ କେତେ ଆନନ୍ଦ ଦିଏ ; ତାପରେ ସେହି ଶରୀର ଯୁବା ହୁଏ, ଯୌବନରେ ବଳ ହୋଇ କେତେ ସୁନ୍ଦର ଦିଶେ, କେତେ ମସ୍ତକ ଚଢ଼ାଏ । ସେଇ ଶରୀର କେତେ ଦମ୍ଭ ଦେଖାଏ, କେତେ ଦର୍ପ ଭାଙ୍ଗେ ଓ ପୁଣି କେତେ ଦର୍ପ ଅରଜେ । କେତେ ସାଉଁଟେ, କେତେ ଜମାକରେ, ନିଜକୁ କେତେକେତେ ଗଦି ଉପରେ ନେଇ ବସାଇ ଦିଏ । ମୁଣ୍ଡ ଉପରର ସୂର୍ଯ୍ୟ ଘର ଖାଲି ତଳକୁ ଅନାଇ ସେ ସଂସାର ଆଉ ସମସ୍ତଙ୍କୁ ଦେଖୁଥାଏ ଓ ସମସ୍ତଙ୍କୁ ସତେଅବା ଜଳକା କରି ଅନୁଭବ କରୁଥାଏ । ସିଏ ସନ୍ତାନର ବାପ ମାଆ ହୁଏ ଭବିଷ୍ୟତକୁ ଜନ୍ମ ଦେଇ ବର୍ତ୍ତମାନକୁ ଗୌରବଶାଳୀ କରାଏ, ଆପଣା ରଥରେ କେତେକେତେ ପାରଙ୍ଗମତାର ପତାକା ବାନ୍ଧି ସେ ଆପେ ଆପଣାର ସାରଥି ହୋଇ ଜୀବନ ବାହୁଥାଏ । ତା'ପରେ ଖସି ନଇଁ ଆସେ, ସବୁ ସଂଯମ ମଉଳନ ପଡ଼ିଯାଏ, ମୁହଁର କାନ୍ତିଗୁଡ଼ାକ ବୟସର କ୍ଲେଦରେଖା ତଳେ ଲଜ୍ଜିତ ହୋଇ ଲୁଚିଯାଏ । ତେଣୁ ଦୁର୍ବଳ ହୋଇଆସେ । ତା ପରେ ନାନା ଯଷ୍ଟିକୁ ଆଶ୍ରେ କରି ବାଟ ଗୁଳୁଗୁଳୁ ଶରୀର ଅଚଳ ହୋଇ ପଡ଼ିରହେ, ଆପଣାର ନଶ୍ୱରତାକୁ ପ୍ରମାଣ କରିଦିଏ; ମୃତ୍ୟୁଭିତରେ ଜୀବନର ବିଳୟ ହୋଯାଇଏ । ମନେହୁଏ ସତେ ଯେପରି ସେହି ଶରୀରଭିତରେ ଆଉକିଛି ଶରୀରକୁ ଆଶ୍ରା ଦେଇଥିଲା, ଶରୀରକୁ ଚଳାଉଥିଲା ଏବଂ ଶେଷରେ ତାକୁ ଛାଡ଼ି ବାହାରିଯିବାରୁ ଶରୀର ଧରାଶାୟିତ ହୋଇ ରହିଲା । ମାତ୍ର ଆଗୃର୍ଣ୍ଣ ମହାଶୟଙ୍କର ଶରୀରକୁ ସେଦିନ ଆଖି ପୂରାଇ ଦେଖି ଦେଖି ସେଇଟା ଯେ ଗୋଟାଏ ଧରାଶାୟିତ ଶରୀର, ସେ କଥା ଆଦୌ ମନେ ହେଉନଥାଏ । ପକ୍ଷୀ ଉଡ଼ି ଗୁଲ ଗଲାଣି, ଖାଲି ପିଞ୍ଜରାଟା ମାତ୍ର ପଡ଼ି ରହିଛି ବୋଲି କହିବାକୁ ଜିଭ ଲେଉଟୁ ନଥାଏ । ଯେଉଁ ଶରୀର ଆଗୃର୍ଯ୍ୟ ମହାଶୟଙ୍କର ସେହି ବିରାଟ ସଂକଳ୍ପ, ବିରାଟ ଅନୁରୋଧ ଓ ବିରାଟ ସାହସିକତାକୁ ଧରି ରଖିଥିଲା, ଗୋଟିଏ କଥାରେ କହିଲେ ସିଏ ସେହି ବିରାଟ ଆତ୍ମାକୁ ଧରି ରଖିଥିଲା, ମୁଁ ତାକୁ ଧରାଶାୟିତ ବା ନଶ୍ୱର ବୋଲି କିପରି କହିବି ? ତାଙ୍କ ଜୀବନର ଢ଼'ଙ୍ଗରୁ ତେସ୍ତାନବେ ପର୍ଯ୍ୟନ୍ତ ସେହି ଶରୀର ଭିତରେ ମୁଁ ସତେଅବା ଗୋଟାଏ ସିଡ଼ି ଦେଖିପାରୁ ପାଇଲି, ଗୋଟାଏ ସେତୁ ପଡ଼ିଥିବାର ଅନୁଭବ କରି ପାରିଲି । ଏହି ସିଡ଼ି କେବଳ ଜଣକପାଇଁ ନୁହେଁ, ଏହା ଆମ ସଭିଙ୍କ ପାଇଁ,—ସେତେବେଳେ ମୁଁ ସେହିଭଳି ଅନୁଭବ କରୁଥିଲି ।

ଏହି ସଂସାରରେ ଆମେ ଅନେକ ମଣିଷର ଜୀବନକୁ ସତେଅବା ଆକଥାକ କରି ବିଚାର କରିଥାଉ । ଏହି ବିଚାରର ଅନୁସାରେ ସବୁବେଳେ କେବଳ ଗୋଟିଏ

ଥାକ ଯାଇ ଆଉ ଗୋଟିଏ ଥାକ ଆସି ପହଞ୍ଚେ । ବାଲ୍ୟ କାଳ ପରେ ଯୁବାକାଳ ଆସେ, ଯୁବାକାଳ ପରେ ପ୍ରୌଢ଼ତ୍ୱ ଓ ବାର୍ଦ୍ଧକ୍ୟ ଆସି ଗ୍ରାସ କରି ପକାଏ ଓ ସବା ଶେଷରେ ଝଡ଼ ପଡ଼ିବାର ବେଳ ଆସି ପହଞ୍ଚେ । ଘଡ଼ିକ ଲାଗି ଖେଳ ଲାଗେ, ପୁଣି ଘଡ଼ିକ ପରେ ସବୁ ଶେଷ ହୋଇଯାଏ । ଏବଂ ଯେଉଁମାନେ ପଛରେ ରହି-ଯାଆନ୍ତି, ଝଡ଼ି ପଡ଼ିଥିବା ଶରୀରଟା ଲାଗି ସେମାନେ କେତେ ଲୁହ ଗଡ଼ାନ୍ତି ଏବଂ ସମ୍ଭବତଃ ତାହାଦ୍ୱାରା ଆପଣ ଅନାଗତ ବିଦାୟକାଳର ସମ୍ମୁଖୀନ ହେବାଲାଗି କଳ୍ପିତ ସାହସ ବି ସଂଗ୍ରହ କରିନିଅନ୍ତି । ଏହି କାଠର ଆମ ଅନେକଙ୍କୁ ଛାଡ଼ିଦେଲେ ଏହି ସଂସାରକୁ ଆଉ ଥୋକେ ମଣିଷ ବି ଆସନ୍ତି, ଯେଉଁମାନେ କି ଜୀବନକୁ ଥାକ ଥାକ କରି ନିଅନ୍ତି । ସେମାନେ ଆପଣାକୁ ଧର୍ମତଃ ଏକ ଯାତ୍ରାପଥର ଯାତ୍ରୀ ପରି ଅନୁଭବ କରନ୍ତି । ସେମାନେ ଭିତରେ ସତତ ଅବା ଏକ ମୂଳବାସନା ଦ୍ୱାରା ପ୍ରେରିତ ହୋଇଥିବା ପରି ଯାତ୍ରୀ ହୋଇ ବାହାରି ଆଆନ୍ତି । ଏବଂ ସେହି ଅନ୍ତର୍ଯାତ୍ରାର ଆଖି ସଂସାରର ବହିର୍ଯାତ୍ରାଟାକୁ ମଧ୍ୟ କେବଳ ସେହିପରି ଏକ ଯାତ୍ରା ବୋଲି ଅନୁଭବ କରୁଥାନ୍ତି । ଏମାନେ ପାହାଚପରେ ପାହାଚ ଉଠିଯାଆନ୍ତି ; ଗୋଟିଏ ପାହାଚକୁ ଆଉ ଗୋଟିଏ ପାହାଚର ପରିପୂରକ ରୂପେ ଗ୍ରହଣ କରନ୍ତି ଏବଂ ମୃତ୍ୟୁକୁ ଜୀବନର ପରିପୂରକ ରୂପେ ଗ୍ରହଣ କରନ୍ତି । ତେଣୁ ଏମାନେ ବୁଢା ହୁଅନ୍ତି ନାହିଁ, ଏମାନେ ମରନ୍ତି ନାହିଁ । ଏମାନଙ୍କର ଦେହ ତଥାକଥିତ ଦେହଘାତ ମରଣର ସହିତ ପ୍ରତୀକ୍ଷାରେ କେବେହେଲେ ଶୀର୍ଣ୍ଣ ଅଥବା ମ୍ରିୟମାଣ ହୋଇ ପଡ଼େନାହିଁ, ଏମାନଙ୍କର ମୁମୂର୍ଷୁ ହୃଦୟ କେତେବେଳେ ହେଲେ ମୁମୂର୍ଷୁ ହୁଏନାହିଁ ଏମାନଙ୍କର ଜୀବନବଣିଜ ସର୍ବଦା ଏକ ଅଗ୍ରୀପ୍ସା ମୂଳ ବଣିଜ ହୋଇ ରହିଥାଏ, ଏହି ପୋତର ଅଚଳନ୍ତି ମୁଦ୍ରା ଗୁଡ଼ାକୁ ନେଇ ସେହି ପୋତରେ କମ୍ବା ସେ ତାଙ୍କସ୍ତରେ ଚଳାଇବାରେ କୌଣସି ଅପବର୍ଜନରେ ସେମାନଙ୍କର ଏତେ ଟିକିଏ ହେଲେ ଆଗ୍ରହ ନଥାଏ । ଅଗ୍ରଣୀ ହରିହର ପ୍ରକୃତରେ କଣ ଏହିଭଳି ଜଣେ ମଣିଷ ଥିଲେ କି ?,—ଆପଣାର ଆଗ୍ରହକୁ ତାଙ୍କପାଏ ପ୍ରସାରିତ କରିଦେଇ ତାଙ୍କୁ କଳନା କରିବାର ସାହାସ କଲାବେଳେ ଏହିପରି ଏକ ସମ୍ବଳିତ ପ୍ରଶ୍ନ ଆପଣାକୁ ସତତ ଅବା ଉଦ୍‌ବୋଧିତ କରି ଦେଉଥିବା ପରି ମନେହୁଏ । 'ଐତରେୟ ବ୍ରାହ୍ମଣ'ରେ (୭।୧୫) ଠିକ୍ ଏହିପରି ଏକ ସତତ ଚାଲିବାର ଉଦ୍‌ବୋଧନ ଦିଆଯାଇଚି । 'ପୁଷ୍ପିଣ୍ୟୌ ଚରତୋ ଜଙ୍ଘେ ଭୂଷ୍ଣୁରାତ୍ମା ଫଳଗ୍ରାହିଃ' ବୋଲି କୁହାଯାଇଚି ଅର୍ଥାତ୍ ଯିଏ ଚାଲିଚି, ଫୁଲ ଫୁଟିବା ପରି ତାର ଦେହରେ ଅପୂର୍ବ ଶୋଭା ପ୍ରସ୍ଫୁଟିତ ହୋଇଉଠେ ବୋଲି ବର୍ଣ୍ଣନା କରାଯାଇଚି । ସତତ ଚାଲୁଥିବା ମଣିଷର ଦେହ ଝାଉଁଳେ ନାହିଁ, ମୁଖ କୁଞ୍ଚିତ କମ୍ବା ଭ୍ରୂ କୁଟିଳ ହୋଇ ଆସେନାହିଁ । ତା'ର ଭେଣ୍ଟ କେବେ ହେଲେ ଶୁଷ୍କ ହୁଏନାହିଁ, କୌଣସି ନୈରାଶ୍ୟର ଭାରରେ ତା'ର ଆଖି କଦାପି ଭାରାକ୍ରାନ୍ତ ହୋଇ ଉଠେନାହିଁ । ମଲାବେଳେ ମଧ୍ୟ ସେ ଫୁଲ ଫୁଟିଲା ପରି ଦିଶୁଥାଏ, ମରିକରି ଶୋଇଥିଲା ବେଳେ ମଧ୍ୟ ସେ ସମସ୍ତଙ୍କର

ଆଖିଆଗରେ ସତେ ଅବା କେଉଁ ସରଚପ୍ରବାହ ଉପରେ ଗୋଟିଏ ପଦ୍ମଫୁଲ ହୋଇ ଭାସି ଭାସି ଚାଲି ଯାଉଥାଏ । ଆମ ସମସ୍ତଙ୍କୁ କେବଳ ପ୍ରସନ୍ନ ବାଟଚାଲିବାର ଉଦ୍‌ବୋଧନ ଦେଇ ଯାଉଥାଏ, ଅର୍ଥାତ୍ ପ୍ରସନ୍ନ ହୋଇ ପଥ ଉଠିବାର ଉଦ୍‌ବୋଧନ ଦେଇ ଯାଉଥାଏ ।

ବଞ୍ଚିଥିଲା ବେଳେ ଆଗ୍ରଫୀ ମହାଶୟ ଆପଣାର ଉତ୍ସାହରେ ଟୋକାମାନଙ୍କୁ ଲାଜରା କରି ଦେଉଥିଲେ, ବନମୁକାରେ ବୟୋଜ୍ୟେଷ୍ଠ ଅନେକଙ୍କୁ ଲାଜରା କରି ଦେଉଥିଲେ ଓ ଆପଣାର ସଂକଳ୍ପରେ ଯୋଧୀମାନଙ୍କୁ ବି ଲାଜରା କରି ଦେଉଥିଲେ । ସେ କେବେହେଲେ ବଡ଼ପାଟିରେ କଥା କହୁନଥିଲେ, କିନ୍ତୁ କୁହାଳିଆ ମାନଙ୍କ ଠାରୁ ଦଶଗୁଣ ଅଧିକ କରି ଦେଖାଇ ଦେଉଥିଲେ । ଓଡ଼ିଶାର ବାଟଘାଟରେ ସେ କେତେ ପଥ ଚାଲିଲେ, କେତେ ଖରାରେ ଚାଲିଲେ, କେତେ ପାହାଡ଼ ଡେଇଁଲେ, କେତେ ବର୍ଷାରେ ଭିଜିଲେ ଓ କେତେ ନଈ ପାରି ହେଲେ; ତଥାପି ତାଙ୍କର ଚାଲିବା ବନ୍ଦ ହେଲନାହିଁ । କାରଣ କେଉଁଠି କେଉଁ ଉଚ୍ଚଖାଲେଇରେ ଯାଇ ପଶିଯିବା ପାଇଁ କିମ୍ବା ବସିଯିବା ପାଇଁ ସେ ବାଟ ଚାଲୁନଥିଲେ । ବାଟ ଚାଲିବାକୁ ଧର୍ମ ମଣେନେଇ ବାଟ ଚାଲୁଥିଲେ ଏବଂ ଏହି ଚାଲିବା ସଙ୍ଗେସଙ୍ଗେ ଯିଏ ଦେଖା ଓ ଚିହ୍ନା ସଂସାରଟାକୁ ସତେଅବା ଆପଣାର ସାଙ୍ଗରେ ନେଇ ଚାଲିବାରେ ଲାଗିଥିଲେ । ଏମିତି ବାଟ ଚାଲୁଚାଲୁ ଦିନେ ତାଙ୍କର ଆଖିଦୁଇଟା ଅନ୍ଧ ହୋଇଗଲା, ତଥାପି ତାଙ୍କର ବାଟ ଚାଲିବା ବନ୍ଦ ହେଲନାହିଁ । ତାଙ୍କ ଭିତରେ ଉତ୍ସାହ ସତେଅବା ଆଖି ହୋଇ ତାଙ୍କୁ ବାଟ ଚଳାଇ ନେଇଗଲା । ଆମର ଏହି ଆୟତନଟି ଭିତରେ ଆମେ ଯାହାକୁ ଆଖି ବୋଲି କହୁ, ସେ ଦୁଇଟା ନଥାଇ ମଧ୍ୟ ସେ ସେଇଥିରେ ସାରା ଓଡ଼ିଶା ବୁଲି ଆସିଲେ, ଅର୍ଥାତ୍ ପାଦରେ ଚାଲି ପରିକ୍ରମା କରି ଆସିଲେ । ଭିତରେ ଯୋଉ ଆଖିର ବଳରେ ମଣିଷ ଏକଥାକୁ ସାଧ୍ୟ କରିପାରେ କେବଳ ତାହାରି ଅନୁମାନ କରି ପାରିଲେ ଯାଇ ଆମେ ଅଗ୍ରଫୀ୍ୟ ମହାଶୟଙ୍କର କିଞ୍ଚିତ୍ କଳନା କରିପାରିବା । ଏଠୁ ଯିବା ଆଗରୁ ସେ ପ୍ରାୟ ଦୁଇବର୍ଷ କାଳ ରୋଗରେ କଷ୍ଟ ପାଇଲେ, ବିଛଣାରୁ ଉଠି ପାରିଲେନାହିଁ । ରୋଗରେ ପଡ଼ିବା କହିଲେ ସାଧାରଣତଃ ରୋଗକଷ୍ଟରେ ଘାଣ୍ଟି ହେବାକୁ ବୁଝାଏ, ନାନା ଯନ୍ତ୍ରଣାରେ ଘାଣ୍ଟି ହେବାକୁ ବୁଝାଏ ଓ ନାନା ବିପତ୍ତିବ୍ୟଥା ଭୋଗ କରିବାକୁ ବୁଝାଏ । ଆଗ୍ରଫୀ୍ୟ ହରିହରଙ୍କର ଶରୀରକୁ ମଧ୍ୟ ଶେଷ କାଳରେ ଅନେକ ଯନ୍ତ୍ରଣା ଅଙ୍ଗେ ନଗ୍ଭାଇବାକୁ ପଡ଼ିଚି । ମାତ୍ର ଯିଏ ଯେ କେବେ ସେଥିରେ ଘାଣ୍ଟି ହୋଇଛନ୍ତି, କୌଣସି ପ୍ରକାର ଆତୁର ଅସହିଷ୍ଣୁତା ଦେଖାଇ କଳବଳ ହୋଇଛନ୍ତି, ସେକଥା କେହି କହିବେନାହିଁ । ଏତେ ଦୁଃଖ ଓ ଏତେ ଯନ୍ତ୍ରଣାକୁ ଜିଣି ଓ ସମାହିତ କରିନେବା ଲାଗି ତାଙ୍କ ଦେହରେ ଏତେ ଶକ୍ତି

କୁଆଡ଼ୁ ଆସିଲା ବୋଲି ତାଙ୍କର ଅତି ପାଖରେ ରହିଥିବା ଲୋକମାନେ ଅନେକ ସମୟରେ ବିସ୍ମିତ ହୋଇ ପଡ଼ିଛନ୍ତି । ସେହି ପ୍ରସନ୍ନ ଓ ବିକାରମୁକ୍ତ ଦେହ, ସେହି ପ୍ରସନ୍ନ ଓ ବିକାରମୁକ୍ତ ମୁଖମୁଦ୍ରା,—ନ ଶୋଚତି, ନ କାଙ୍‌କ୍ଷତି । ସେ ଯେପରି କେବଳ ଅପେକ୍ଷା କରି ରହିଛନ୍ତି; ଆଉ ଏକ ଯାହାଲାଗି ପ୍ରସ୍ତୁତ ହେଉଛନ୍ତି । ତାଙ୍କ ଆଗରେ ସତେ ଯେପରି କୌଣସି ଅନ୍ଧାର ନାହିଁ, କୌଣସି ଅନିଶ୍ଚିୟତା ନାହିଁ, ଏଠି ଆହୁରି ଅନେକଙ୍କଛି ବାକୀ ରହି ଯାଇଥିଲେ ମଧ୍ୟ ତଥାପି ଅଗତ୍ୟା ଯିବାକୁ ପଡ଼ିଲା ବୋଲି ଶୋଚନା କରୁଥିବା ପରି କୌଣସି ଉଚ୍ଛିନ୍ନତା ବି ନାହିଁ । ଏସବୁ ଦେଖି ଦେହକୁ ଖିନ୍‌ଭିନ୍ କରି ଦେଖି ରୋଗକୁ ବାହାର କରୁଥିବା ଡାକ୍ତରମାନେ ବି ଅନେକ ସମୟରେ ଅବାକ୍ ହୋଇ ଯାଇଛନ୍ତି । ଏପରିକି କୌଣସି ଔଷଧ ଦେଇ ତାଙ୍କୁ କୌଣସି ପ୍ରକାରେ ବିଚଳିତ କରିବାକୁ ମଧ୍ୟ ଇଚ୍ଛା କରିନାହାନ୍ତି । କେବଳ ଧାର୍ମିକ ହେଲେ ଅର୍ଥାତ୍ କୌଣସି ଏକ ବିଶେଷ ଧର୍ମଧାରଣାକୁ ଅବୋରି ରହିଲେ ଏକଥା ହୁଏନାହିଁ; ଖାଲି ତ୍ୟାଗୀ ବା ବୈରାଗୀ ହେଲେ ଏକଥା ହୁଏନାହିଁ, ଗୋଟାଏ ବିଶେଷ ଜାତି ବା ବିଶେଷ ଦେଶଲାଗି ଜୀବନ ଉତ୍ସର୍ଗ କରି ସଂଗ୍ରାମ ଲଢ଼ିଲେ ଏକଥା କଦାପି ହୁଏନାହିଁ । କେବଳ ଆଦର୍ଶବାଦୀ କିମ୍ବା ଆଦର୍ଶବେପାରୀ ସକାଶେ ତାହା ବହୁ-ଦୂର ହୋଇ ରହିଥାଏ ; ଆପଣାର ଭିତରେ ତଥା ବାହାରେ ସୂର୍ଯ୍ୟକୁ ସାଥୀ କରି ସୂର୍ଯ୍ୟମୁହାଁ ହୋଇ ବାଟ ଚାଲି ପାରିଲେ ଯାଇ ତାହା ସମ୍ଭବ ହୁଏ, ଆପଣାର ଭିତରେ ତଥା ବାହାରେ ଜୀବନପ୍ରତି ଅଜସ୍ର ଶ୍ରଦ୍ଧା ରଖିବାର ଅଧି-କାରୀ ହୋଇ ପାରିଲେ ଯାଇ ସେକଥା ହୁଏ, ଉତ୍କ୍ରାନ୍ତିକୁ ହିଁ ଆପଣାର ସର୍ବ-ମୂଳ ଅଭିକ୍ରମରେ ପରିଣତ କରିପାରିଲେ ତାହା ହୁଏ । ସେଇ ଐତରେୟ ବ୍ରାହ୍ମଣରେ ଅଛି "ଯେ ମଣିଷର ବାଟ ଚାଲିବା ବନ୍ଦ ହୋଇଗଲେ ଅର୍ଥାତ୍ ସେ କେଉଁଠି କ୍ଳାନ୍ତ ହୋଇ ଅଟକିଗଲେ ବା ଶୋଇ ପଡ଼ିଲେ ହିଁ ତାକୁ ସେଇଠୁ କଳି ଆସି ଘୋଟିଯାଏ, ଏବଂ ଆଗକୁ ବାଟ ଚାଲିବା ଆରମ୍ଭ ହେଲେ ହିଁ ସତ୍ୟଯୁଗ ଆରମ୍ଭ ହୁଏ । କଳିଃ ଶୟାନୋ ଭବତି…କୃତଂ ସମ୍ପଦ୍ୟତେ ଚରନ୍ । ଆମ ସମସ୍ତଙ୍କ ଲାଗି ଆଚାର୍ଯ୍ୟ ମହାଶୟ ସେହି ସତ୍ୟଯୁଗର ହିଁ ପରିଚାୟକ ହୋଇ ରହିଥିଲେ । ଆମେ ଯେଉଁମାନେ ନାନା ଛଳରେ ଓ ନାନା କଳରେ କେତେପ୍ରକାରେ ଅଟକି ରହିଯାଇଛୁ, ସେମାନଙ୍କ ସକାଶେ ସେ ଗର୍ଣ୍ଣ ଛଡ଼ାଇ ବାହାରି ଯିବାର ପ୍ରେରକ ହୋଇ ରହିଥିଲେ । ଆପେ ସତେ ବାଟ ଚାଲି ସେ ଆମ ସମସ୍ତଙ୍କୁ ବାଟ ଚାଲିବାର ଉଦ୍‌ବୋଧନ ଦେଇ ଯାଉଥିଲେ ।

ଆଚାର୍ଯ୍ୟ ମହାଶୟ ଆମଭିତରୁ ଚାଲିଯିବା ପରେ ସେ ଗ୍ରୁଡ ଚାଲି-ଗଲେ ବୋଲି ଶୋକପ୍ରକାଶ କରି ଯେଉଁସବୁ ବିବୃତି ଦିଆଯାଇ ଥିଲା ବା ଭାଷଣ-ମାନ ହୋଇଥିଲା, ସେଥିରେ ଅନେକେ ଆଚାର୍ଯ୍ୟ ମହାଶୟ ଚାଲିଯିବା ଦ୍ୱାରା

ସତ୍ୟବାଦୀ- ଯୁଗର ଅବସାନ ହେଲା ବୋଲି ଖେଦ କରି କହୁଥିଲେ । ଆମେ ଯେଉଁମାନେ ଏଭଳି କହୁଥିଲୁ ବା ଭାବୁଥିଲୁ, ସେମାନେ ସତ୍ୟବାଦୀ-ଯୁଗ କହିଲେ ସ୍ଥୂଳତଃ ପାଞ୍ଚଜଣ ବ୍ୟକ୍ତିଙ୍କୁ ହିଁ ଭାବୁଥିଲୁ । ଉତ୍କଳମଣି ଗୋପବନ୍ଧୁ ତଥା ତାଙ୍କୁ କେନ୍ଦ୍ର କରି ସତ୍ୟବାଦୀଠାରେ ଏକାଠି ହୋଇଥିବା ଅର୍ଥାତ୍ ସିଏ ଟାଣି ଆଣି ସତ୍ୟବାଦୀଠାରେ ଏକାଠି କରିଥିବା ପଣ୍ଡିତ କୃପାସିନ୍ଧୁ, ପଣ୍ଡିତ ନୀଳକଣ୍ଠ ଗୋଦାବରୀଶ ଏବଂ ଆଚାର୍ଯ୍ୟ ହରିହରଙ୍କୁ ଭାବୁଥିଲୁ । ଭାବପରବଶ ହୋଇ ଆମେ କେତେଥର ସେମାନଙ୍କୁ ଉତ୍କଳ ପଞ୍ଚସଖା ବୋଲି ବି କହୁଥିଲୁ । ମାତ୍ର ଟିକିଏ ଅଧିକ ଗମ୍ଭୀର ଭାବରେ ବିଚାର କଲେ ସତ୍ୟବାଦୀ-ଯୁଗର ତ ହୁଏତ ସେଇଦିନ ଅବସାନ ଘଟିଥିଲା, ଯେଉଁଦିନ ଏହି ପାଞ୍ଚଜଣ ସତ୍ୟବାଦୀ ଗୁରୁ ଆପଣା-ଆପଣାର ପଥରେ ଅନ୍ୟତ୍ର ବାହାରି ଯାଇଥିଲେ; କିଏ ଅନ୍ୟତ୍ର ଆହ୍ୱାନ ପାଇ ବାହାରିଗଲେ ଓ ଆଉ କିଏ ଅନ୍ୟତ୍ର ଆପଣାର ଭାଗ୍ୟ ଖୋଜିବାକୁ ଓ ଭାଗ୍ୟ ଗଢ଼ିବାକୁ ବାହାରିଗଲେ । ପଣ୍ଡିତ ଗୋପବନ୍ଧୁ ଭାରତର ସ୍ୱାଧୀନତା-ଆନ୍ଦୋଳନରେ ଝାସ ଦେଲେ, ଅର୍ଥାତ୍ ଆମ ଓଡ଼ିଶାରେ ସେ ଜାତୀୟ ସ୍ୱାଧୀନତାର ଆନ୍ଦୋଳନରେ ପୁରୋଧା ହେଲେ ଏବଂ ସେହି ନୂତନ ଉତ୍ସାହର ପ୍ରବାହ ଭିତରେ ଆପଣାକୁ ଗୋଟାପୁରା ମିଶାଇଦେବା ବ୍ୟତୀତ ସତ୍ୟବାଦୀର ଆଉ କିଛିହେଲେ କରିବାକୁ ନାହିଁ ବୋଲି ସେ ହୁଏତ ଅନୁଭବ ବି କରିଥିଲେ । ସତ୍ୟବାଦୀର ପିଲାଏ ଯାହା କରନ୍ତୁ ବା ନକରନ୍ତୁ ପଛକେ, ଅନ୍ତତଃ ସତ୍ୟବାଦୀର ଶିକ୍ଷକମାନେ ସତ୍ୟବାଦୀର ଆୟତନ ଭିତରୁ ବାହାରିଆସି ଆନ୍ଦୋଳନରେ ଝାସ ଦିଅନ୍ତୁ, ନୂତନ ଭାବଦ୍ୱାରା ଉଦ୍‌ବୁଦ୍ଧ ଉତ୍କଳମଣି ବୋଧହୁଏ ସେହିପରି ବିଚାରିଥିଲେ । ତାହାରି ଫଳରେ ବକୁଳବନର ଜୀବନଘଡ଼ି ଭାଙ୍ଗିଲା, ବକୁଳ ବନର ମାୟା ତୁଟିଲା, ଶିକ୍ଷାର ପ୍ରୟୋଗ ସେତିକିରେ ରହିଲା । ସେତେବେଳେ ସେଠି ଯେଉଁ ପିଲାମାନେ ପାଠ ପଢ଼ି ଆସିଥିଲେ, ନୂଆ ଆଖି ଲାଭ କରିବାଲାଗି ଏକାଠି ହୋଇଥିଲେ ଓ ସ୍ୱୟଂ ଉତ୍କଳମଣିଙ୍କର ଭାଷାରେ କହିବାକୁ ଗଲେ ପୁରାତନ ସଂସ୍କାର ଓ ସମାଜକୁ ଫଟାଇବା ଲାଗି ବୋମା ପରି ତିଆରି ହେଉଥିଲେ, ସେମାନେ ସତ୍ୟବାଦୀରୁ ବାହାରି କେତେମନ୍ତେ କିଏ କୁଆଡ଼େ ମୁହାଁଇଗଲେ, କେତେ ସୁନ୍ଦରରେ ପୁରୁଣା ସମାଜଟା ସହିତ ମିଶିଗଲେ । ସେମାନେ ବଡ଼ ହୋଇ ପୁରୁଣା ସମାଜକୁ ଭାଙ୍ଗିବା ପରିବର୍ତ୍ତେ ସେହି ସମାଜରେ ନେତା ହେଲେ, ଅର୍ଥାତ୍ ଭାରି କୁଶଳ ଭାବରେ ସେହି ସମାଜ ସହିତ ଖାପ ଖାଇଗଲେ, ତାହାରି ଭିତରେ ଚମତ୍କାର ସଫଳତା ଅର୍ଜନ କଲେ । ସେମାନେ ତାହାରି ଭିତରେ ଓକିଲ ହେଲେ, ତାହାରି ଭିତରେ ବଡ଼ ଚାକିରିଆ ହେଲେ ଓ ତାହାରି ଭିତରେ ଶିକ୍ଷାବିତ୍ ଅର୍ଥାତ୍ ଶିକ୍ଷାଧିକାରୀ ହୋଇ ଅଶିକ୍ଷାର ଆସ୍ଥାନମୂଳଟାକୁ ଅଧିକ ମଜବୁତ କରି ରଖିବାରେ ଜୀବନ ଉତ୍ସର୍ଗ କଲେ । ସତ୍ୟବାଦୀ କହିଲେ ସେମାନେ ପ୍ରଧାନତଃ ପଛକୁ ଚାହିଁବାକୁ

ହିଁ ବୁଝିଲେ, ଅର୍ଥାତ୍ ଔପଚାରିକ ଯାବତୀୟ ଉପଲକ୍ଷରେ ଉତ୍କଳମଣି ଏବଂ ସତ୍ୟବାଦୀ ବିଦ୍ୟାଳୟ ସମ୍ପର୍କରେ ଲେଖିଲାବେଳେ ସେମାନେ କେବଳ ଆମ୍ଭେ ସେଠାରେ ରହୁଥିବା ବେଳର ସ୍ମୃତିଗୁଡ଼ାକର ଉଦ୍‌ଗାର କଲେ, କେବଳ ସ୍ମୃତି ବାହୁନିଲେ । ତେଣୁ କାଳକ୍ରମେ ସତ୍ୟବାଦୀ ପ୍ରଧାନତଃ ଏକ ସ୍ମୃତିପୀଠ ହୋଇ ରହିଗଲା, ପ୍ରେରଣାର ଏକ ଉତ୍ସ ହୋଇ ରହି ପାରିଲାନାହିଁ । ଉତ୍କଳମଣି ଗୋପବନ୍ଧୁ ଓ ପଣ୍ଡିତ କୃପାସିନ୍ଧୁ ପ୍ରାୟ ଅକାଳରେ ସଂସାର ଛାଡ଼ିଲେ । ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶ ତା'ପରେ ଓଡ଼ିଶାର ରାଜନୀତିରେ କେତେପ୍ରକାର ଢଙ୍ଗରେ ଯାଇ ବସିଲେ, କେତେପ୍ରକାରେ ମଙ୍ଗୁଆଳ ହେଲେ । ସେମାନେ ସାହିତ୍ୟ କଲେ, ସଂସ୍କୃତି ବି କଲେ । ଓଡ଼ିଶାକୁ ତା'ର ପଡ଼ୋଶୀମାନଙ୍କ ଆଗରେ ଏକ ସ୍ୱତନ୍ତ୍ର ଅସ୍ତିତ୍ୱରୂପେ ଠିଆ କରାଇ ଧରିବାକୁ ସେମାନେ କେତେକ'ଣ କଲେ । ସେମାନେ ସାଧାରଣ ଜୀବନର କେତେ କ୍ଷେତ୍ରକୁ ଯାଇ ପରଖିଲେ ଅର୍ଥାତ୍ କେତେକେତେ କ୍ଷେତ୍ରଭିତରେ ପଶି ଆପଣାକୁ ପରଖିଲେ । ଓଡ଼ିଶାରେ ନୂଆ ବିଶ୍ୱବିଦ୍ୟାଳୟ ଗଢ଼ାହେଲା, ଶିକ୍ଷାର ପ୍ରସାର ହେଲା; ଅର୍ଥାତ୍ ପୁରୁଣା ଓ ପଚରା ଯାଉଥିଲା, ତାହାରି ପ୍ରସାର ହେଲା, ଗୁଣକ ଦଶଗୁଣ ହେଲା । ପୁଷ୍ଟିହୋଇ ଉତ୍ସାହରେ ନୂଆ ବୋଲି କହି ସେହି ପୁରୁଣା ଗୁଡ଼ାକ ପରଷା ହେଲା । ସ୍କୁଲ ବଢ଼ିଲା, କଲେଜ ବଢ଼ିଲା;—ମାତ୍ର ଏଗୁଡ଼ାକ ଜରିଆରେ ଆମ ଜାତୀୟ ଜୀବନରେ ପ୍ରକୃତରେ କ'ଣ ବଢ଼ିଲା ବା ଛିଡ଼ିଲା, ତାହାର ବିଚାର କରି ପାରିବାଲାଗି ଆଉ କାହାରି ଫୁରସତ ହିଁ ରହିଲା ନାହିଁ । ସବୁଠିଁ ଅଗ୍ରଗତିର ଧୂଆଁ ବାଣ ମରାଗଲା, ପୁରୁଣାଗୁଡ଼ାକୁ ପରିବେଷଣ କରିବାକୁ ହିଁ ଅଗ୍ରଗତି ବୋଲି କୁହାଗଲା, ଏକ ସମଗ୍ର ସଙ୍କଟର କୋଳମଞ୍ଜିକୁ ପୋତି ଦିଆଗଲା । କୋଳି ଖାଉଥିବା ଅନୁପ୍ରାଣିତ ମହତ୍‌ଜନମାନେ ସେତେବେଳେ ସେକଥା ଆଦୌ ଠଉରାଇ ପାରିଲେ ନାହିଁ ।

ସତ୍ୟବାଦୀ ବିଦ୍ୟାଳୟର ଅନେକ ସ୍ମୃତିକୁ ବର୍ଣ୍ଣନା କରି ଲେଖା ଯାଇଥିବା ଗୋଟିଏ ପୁସ୍ତକରେ ମୁଖବନ୍ଧ ଲେଖିବାକୁ ଯାଇ ପଣ୍ଡିତ ଗୋଦାବରୀଶ ଅନ୍ୟାନ୍ୟ ପ୍ରସଙ୍ଗ ମଧ୍ୟରେ ଏ କଥାଟି ମଧ୍ୟ ଲେଖି ପକାଇଛନ୍ତି: "ମୋର ମନେହୁଏ ଜନ୍ମ କ୍ଷେତ୍ରରେ ରହି ସେବା କରିବା ନିମନ୍ତେ ବିଧାତା ମୋତେ ଶକ୍ତି ଦେଇଥିଲେ । ସେ ଶକ୍ତି ଉପରେ ଉଡ଼ିବାକୁ ବସିବା ମୋ ପକ୍ଷରେ ଭୁଲ ହୋଇଛି ।" ଆପଣା ଜୀବନରେ ପରିପକ୍ୱତମ ବୟସରେ ପଣ୍ଡିତ ଗୋଦାବରୀଶ ଏକଥା ଲେଖିଛନ୍ତି । ଅର୍ଥାତ୍ ଆପଣା କୀର୍ତ୍ତି ତଥା ଖ୍ୟାତିର ତୁଙ୍ଗତମ ଶିଖରରେ ଯାଇ ବସିସାରିବା ବେଳକୁ ସେ ସତେଅବା ଆପଣା ଭିତରକୁ ଅନାଇ ଏହି ଅବସାଦଟିକୁ ଅନୁଭବ କରିଛନ୍ତି । କୋଉ କ୍ଷେତ୍ର ନିମନ୍ତେ ଏବଂ କୋଉ କ୍ଷେତ୍ର ଉପରେ, କେବଳ ଆପଣାର ଅନୁରକ୍ତି ଅନୁସାରେ ହିଁ ବ୍ୟକ୍ତି ତାହାର ମୀମାଂସା କରିଥାଏ । ଆପଣାର

ସମର୍ପଣ ବୃତ୍ତି ଓ ତା'ର ନିର୍ଦ୍ଦେଶକୁ ମାନି ବାଟ ଚାଲିବାର ସାହସ ହିଁ ମଣିଷର ଜୀବନକ୍ଷେତ୍ରକୁ ବଡ଼ କରି ଦେଇଥାଏ । ବାହାର ଚହଲରେ ଯେତେ ସାନ ବୋଲି ଦେଖା ଯାଉଥିଲେ ମଧ୍ୟ ତଥାପି ସେତେବେଳେ ଆପଣାର ଆସ୍ଥାନଟି ହିଁ ଆପଣାର ବଳିକୁ ପ୍ରତ୍ୟକ୍ଷ କରିବାର ଧ୍ରୁବପଥ ପରି ଅନୁଭୂତ ହେଉଥାଏ । ମାତ୍ର ବାହାର ଚହଲିବାର ନାନା ସମ୍ମୋହନରେ ପଡ଼ି ଅନେକ ସରାଗୀ ହୋଇ ଏଣେତେଣେ ଭିଡ଼ିବାର ସଉକଣ୍ଠା ଆସି ଗ୍ରାସ କରିଦେବା ମାତ୍ରକେ ମଣିଷର ଆପଣା କ୍ଷେତଟା ତାକୁ ଭାରି ସାନ ହୋଇ ଦିଶେ; ଫଳରେ ଅସଲ ଚେଇଁଟି ଛୁଡ଼ିଯାଏ, ଅସଲ ମୂଳଦୁଆଟି ହଲିଯାଏ ଓ ଏକାବେଳକେ ସାତଟା ବନସୀ ଧରି ସାତଟା ଗଣ୍ଡରୁ ମାଛ ଧରିବାର ମନ ନେଇ ବୁଲିଲେ ମଧ୍ୟ ତଥାପି ଘରକୁ ଫେରିବା ବେଳକୁ ସତେ ଅବା ଏକ ଅବସାଦକୁ ହିଁ ଆପଣାର ସ୍ଥାୟୀ ଜୀବନଭାବ ରୂପେ ଗ୍ରହଣ କରିବାକୁ ହୁଏ । ଆପଣାର କୌଣସି ରଚନାରେ ପଣ୍ଡିତ ନୀଳକଣ୍ଠ ଅବଶ୍ୟ ଆପଣା ଭିତରର ଏଭଳି ଏକ ଅତୃପ୍ତିକୁ କେଉଁଠି ଭାଷା ଦେଇ ନାହାନ୍ତି ସତ, ମାତ୍ର ବନ୍ଧୁମେଳରେ କଥୋପକଥନରେ ତାଙ୍କ ଅନ୍ତର୍ମନର ଦର୍ପଣଟା ଉପରେ ବେଳେ-ବେଳେ ତାଙ୍କର ଠିକ୍ ଏହି ଭାବଟିହିଁ ଉକୁଟି ଉଠିଛି । ନିଜ ପ୍ରତାପରେ ଇଉରୋପରେ ସମଗ୍ର ଭୂଖଣ୍ଡଟାକୁ ଟଳମଳ କରିଦେବା ପରେ ଯେତେବେଳେ ବୀର ନେପୋଲିଅନ୍ ଆଫ୍ରିକା ଉପକୂଳସ୍ଥ କୌଣସି ଏକ ଦ୍ୱୀପରେ ନିର୍ବାସିତର ଜୀବନ ଯାପନ କରୁଥିଲେ, ସେତେବେଳେ ସିଏ ବି କୁଆଡ଼େ ଏହିପରି ଏକ ଅବସାଦର ସମ୍ମୁଖୀନ ହୋଇଥିଲେ ଓ ତରବାରିର ଶକ୍ତି ଯେ ସଂସାରରେ ସବୁଠାରୁ ବଡ଼ ଶକ୍ତି ନୁହେଁ ଓ ବଗ୍ମର ତଥା ବିବେକର ଶକ୍ତି ପାଖରେ ତାହାକୁ ଅବଶ୍ୟ ପରାଜୟ ସ୍ୱୀକାର କରିବାକୁ ହୁଏ ବୋଲି ଦୁଃଖୋକ୍ତି କରିଥିଲେ । ଆପଣାର ଅସଲ ମନ ଓ ଅସଲ ଅଭିଳାଷକୁ ଆପଣା ଭିତରେ ନିର୍ବାସିତ କରି ରଖି ମଣିଷ ଯେତେବେଳେ ବାହାରର ଅନ୍ୟ ସରଞ୍ଜାମ ଓ ଅନ୍ୟ ବିଜୟ ଗୁଡ଼ିକରେ ଖଣ୍ଡିଆଦଣ୍ଡିଆ ହେବାକୁ ବାହାରେ, ସେତେବେଳେ ଜୀବନର ଅସ୍ତଦିଗନ୍ତରେ ପହଞ୍ଚିଲା ବେଳକୁ ଆପଣାର ଉଦୟଦିଗନ୍ତ ଆଡ଼କୁ ଅନାଇ ତାକୁ ହୁଏତ ଏହିପରି ଏକ ଅବସାଦ ହିଁ ଭୋଗିବାକୁ ହୋଇଥାଏ । ପଣ୍ଡିତ ଗୋଦାବରୀଶ ଓ ପଣ୍ଡିତ ନୀଳକଣ୍ଠ ପ୍ରକୃତରେ ଠିକ୍ ଏହିପରି ଏକ ଅବସାଦ ଭୋଗିଥିଲେ କି ନାହିଁ, ଅନୁମାନଟି ବିଷୟରେ ହୁଏତ ଦ୍ୱିମତ ରହିପାରେ; ମାତ୍ର ଆଚାର୍ଯ୍ୟ ହରିହର ଯେ ସେହି ଅବସାଦରୁ ଅନେକ ଦୂରରେ ରହିଥିଲେ, ସେଥିରେ କାହାରି କଦାପି ଦ୍ୱିରୁକ୍ତି ରହିବନାହିଁ । ସିଏ ଆପଣାର ବାଟ ଚାଲୁଥିଲେ, ସତ୍ୟବାଦୀ ଭାଙ୍ଗିଯିବା ପରେ ମଧ୍ୟ ସେ ସେହି ଗୋପବନ୍ଧୁଙ୍କର ସ୍ୱପ୍ନକୁ ହିଁ ଆପଣାର ଆଖିଭିତରେ ଭରାଇ ରଖି ବାଟ ଚାଲୁଥିଲେ; ସେହି ଆଖିରେ ହିଁ ସଂସାରକୁ ଦେଖୁଥିଲେ, ସକଳ ଅଗ୍ରଗତି ଓ ପ୍ରଗତିକୁ ମୂଳତଃ ଏକ ଆରୋହଣ ବୋଲି ବୁଝୁଥିଲେ ।

ତେଣୁ ଆଧୁନିକ ଓଡ଼ିଶାର ପଞ୍ଚସଖା-ଯୁଗ କହ ଅଥବା ସତ୍ୟବାଦୀ ଯୁଗ କହ, ଉତ୍କଳମଣି ଗୋପବନ୍ଧୁଙ୍କର ଦୃଷ୍ଟି ଓ କୃତି ଭିତରେ ହିଁ ତାହା ବିଧୃତ ହୋଇ ରହିଥିଲା ଏବଂ ତାଙ୍କର ତିରୋଧାନ ସଙ୍ଗେସଙ୍ଗେ ସେହି ଯୁଗଟିର ମଧ୍ୟ ଇତି ଘଟିଲା । ଉତ୍କଳମଣି ପ୍ରତ୍ୟେକ ଓଡ଼ିଆକୁ ପ୍ରଥମେ ମଣିଷ ବୋଲି ଅନୁଭବ କରୁଥିଲେ, ତାପରେ ଭାରତୀୟ ବୋଲି ଅନୁଭବ କରୁଥିଲେ ଓ ସବା ଶେଷରେ ଓଡ଼ିଆ ବୋଲି ଅନୁଭବ କରୁଥିଲେ ଏବଂ ଓଡ଼ିଆ ବୋଲି ଦେଖୁଥିଲେ । ଅର୍ଥାତ୍, ସେ ପ୍ରତ୍ୟେକ ଓଡ଼ିଆକୁ ମଣିଷର ଆସ୍ଥାନରେ ମଣିଷ ରୂପେ ପ୍ରତିଷ୍ଠିତ କରିବା ଲାଗି ସ୍ୱପ୍ନ ଦେଖୁଥିଲେ । ଜଣେ ମଣିଷ ହିସାବରେ ମଣିଷର ଜୀବନଭୂମିଟି ଯେଉଁଭଳି ହେବା ଉଚିତ, ଯେଉଁଭଳି ବିଶ୍ୱାସ, ବଳିଷ୍ଠତା ତଥା ସାମର୍ଥ୍ୟ ଗୁଡ଼ିକ ଦ୍ୱାରା ତାହା ମଣ୍ଡିତ ହୋଇ ରହିବା ଉଚିତ, ଗୋପବନ୍ଧୁ ଏଠି ପ୍ରତ୍ୟେକ ମଣିଷ ଲାଗି ସେହିଭଳି ଏକ ସମ୍ପନ୍ନତା କାମନା କରୁଥିଲେ । ସେଇଥିଲାଗି କାନ୍ଦୁଥିଲେ, ସେଇଥିରେ ବିହ୍ୱଳ ହୋଇ ରହିଥିଲେ ଓ ସମ୍ଭବ କରିବାର ଏକ ଅନ୍ତର୍ଗତ ସଂକଳ୍ପରୁ ହିଁ ସେ ଆପଣାର ବଳ ପାଉଥିଲେ । ଏଠି ସେ ଅନେକ କିଛି ବଦଳାଇ ଦାକୁ କହୁଥିଲେ, ଦାରିଦ୍ର୍ୟର ଲୋପ କରିବାକୁ ହିଁ ସେ ଦରିଦ୍ରବନ୍ଧୁ ହୋଇ ବାହାରିଥିଲେ; ଏଠି ଅନେକ ପୁରୁଣାକୁ ଭାଙ୍ଗି ନୂଆର ସଂସ୍ଥାପନା ସକାଶେ ସେ ସାରା ଓଡ଼ିଶାକୁ ଆଲୋଡ଼ିତ କରିଥିଲେ । ଭାରତବର୍ଷର ସ୍ୱାଧୀନତା-ଆନ୍ଦୋଳନରେ ସେ ମୁଖ୍ୟତଃ ଏଇଥିଲାଗି ଯୋଗ ଦେଇଥିଲେ ଏବଂ ଅଖି ଆଗରେ ଏତେ ନେତା ଥାଉଥାଉ ସେ ଗାନ୍ଧିଙ୍କୁ ହିଁ ନିଜର ନେତାରୂପେ ନିର୍ବାଚିତ କରି ନେଇଥିଲେ । ଯଦି ଗୋପବନ୍ଧୁ ଆହୁରି ପଚିଶଟା ବର୍ଷ ବଞ୍ଚି ରହିଥାନ୍ତେ, ତେବେ ୧୯୪୭ ମସିହା ପରେ ତାଙ୍କର ବିପ୍ଳବ କଦାପି ସାଙ୍ଗ ହୋଇଯାଇନଥାନ୍ତା, ଓଡ଼ିଆଙ୍କ ସକାଶେ ପରମ ତ୍ୟାଗ କରିଥିବାରୁ ଓଡ଼ିଆଙ୍କ ଘରେ ସେ କଦାପି ପରମ ବ୍ୟାଘ୍ର ହୋଇ ବସିବା ଲାଗି ମନ ବଳାଇ ନଥାନ୍ତେ । ସେ ତଥାପି ବିପ୍ଳବ ଗୁହିଁଥାନ୍ତେ, ଆମ ସମସ୍ତଙ୍କୁ ତଥାପି ଆହୁରି ଅନେକ ବାଟ ଚାଲିବାର ଉଦ୍‌ବୋଧନ ଦେଇଥାନ୍ତେ, ଲବ୍ଧ ରାଜନୀତିକ ସ୍ୱାଧୀନତାକୁ ଆହୁରି ଅନେକ ସାମାଜିକ ତଥା ମାନବିକ ଉପଲବ୍ଧି ଲାଗି ଏକ ସାଧନା ରୂପେ ବ୍ୟବହାର କରି ମେରୁଦଣ୍ଡ ସିଧା କରି ଓ ଆଖି ଦୁଇଟାକୁ ଆଗକୁ ରଖି ବାଟ ଚାଲିବାର କେତେ ଦ୍ୱାରର ଉଦ୍‌ଘାଟନ କରି ଦେଇଥାନ୍ତେ । ବୁଢ଼ା ବୟସରେ ଗାଦୀ ମାଡ଼ି ନବସି ଏଠି ସେ ଆମ ସମସ୍ତଙ୍କୁ ତାରୁଣ୍ୟର ପ୍ରେରଣା ଦେଉଥାନ୍ତେ, ତାରୁଣ୍ୟର ପ୍ରତୀକ ହୋଇ ରହିଥାନ୍ତେ । ୧୯୪୭ ପରେ ବଞ୍ଚି ରହିଥିଲେ ଉତ୍କଳମଣି ଗୋପବନ୍ଧୁ ଯାହା କରିଥାନ୍ତେ ବା ଯେଉଁ ସନ୍ଦେଶର ପ୍ରତିନିଧି ହୋଇ ରହିଥାନ୍ତେ, ଆଚାର୍ଯ୍ୟ ହରିହର ଆପଣାର ଜୀବନଶେଷ ଯାଏ କେବଳ ତାହାହିଁ କଲେ । ସ୍ୱାଧୀନତାକୁ ଭୁଞ୍ଜିବାର ଆମର ଏହି ନେତୃତ୍ୱପ୍ରମତ୍ତ ଯୁଗରେ ସେ ପୂର୍ଣ୍ଣତଃ ଗୋଟାଏ ବ୍ୟତିକ୍ରମ ହୋଇ ରହିଥିଲେ, ସଂଖ୍ୟାଲଘିଷ୍ଠ ହୋଇ ରହିଲେ ।

ଆମ ଜାତୀୟତା, ଆମ ଶ୍ରେଣୀଆ ଓ ଆମ ମଣିଷ ଭୁଲାଇବାର ଦରବାର ଗୁଡ଼ାକ ଲାଗି ସେ ଏକ ପ୍ରତିବାଦ ହୋଇ ରହିଲେ । ଏହି ଦୃଷ୍ଟିରୁ ବିଚାର କରି ଦେଖିଲେ ସତ୍ୟବାଦୀର କୁସୁମିତ ହୋଇଥିବା ଏକମାତ୍ର ସେଇ ଗୋପବନ୍ଧୁଙ୍କ ପରେ ସତ୍ୟବାଦୀ-ଯୁଗକୁ ଓ ସତ୍ୟବାଦୀର ଜୀବନଗତ ଆହ୍ୱାନଟିକୁ ଉଜ୍ଜୀବିତ କରି ରଖିଲେ, ତାହାର ଦ୍ୱାରା ପ୍ରେରିତ ହୋଇ ବାଟ ଚାଲିଲେ । ଅନ୍ୟ ସଖାଏ କେତେକଆଡ଼େ ହୁଡ଼ିଗଲେ । କେତେ କୁଆଡ଼େ ମାଡ଼ିଗଲେ, ତୁଏତ କେତେ କୁଆଡ଼େ ବୁଡ଼ିଗଲେ । ସେମାନେ କେତେ ପ୍ରକାରରେ ଲେସଡ଼ି ପଡ଼ିଲେ । ମାତ୍ର ଏକମାତ୍ର ସେଇ ଶେଷଯାଏ ଗୋପବନ୍ଧୁଙ୍କୁ ଆପଣାର ସଖା କରି ରଖିଲେ । କେବଳ ଏହି ଗୋଟାଏ ଓଡ଼ିଶାର ନୁହେଁ, ଆଧୁନିକ ଭାରତର ଏକ ବ୍ୟାପକତମ ବୈପ୍ଳବିକ ବିଚାର ଦୃଷ୍ଟିରୁ ଏଠି ବଞ୍ଚାଇ ରଖିବାରେ ସେ ନିମିତ୍ତ ହୋଇ ରହିଲେ । ସେ ମଣିଷର ହୋଇ ରହିଲେ, ତରୁଣର ହୋଇ ରହିଲେ, ଆଚାର୍ଯ୍ୟ ହୋଇ ରହିଲେ ।

ଆଚାର୍ଯ୍ୟ ପଦ ପାଇ କେବଳ ହରିହର ଯେ ସାର୍ଥକ ହେଲେ ତାହା ନୁହେଁ, ହରିହରଙ୍କ ପାଇ ଆଚାର୍ଯ୍ୟ ପଦ ତାଙ୍କର ଅନେକଗୁଣ ଅଧିକ ସାର୍ଥକ ହେଲା । ଯିଏ ପାଠ ପଢ଼ାନ୍ତି, ଆମର ଚଳନ୍ତି ଭାଷାରେ ଆମେ ତାହାଙ୍କୁ ହିଁ ଆଚାର୍ଯ୍ୟ ବୋଲି କହୁ । ଯିଏ ଗୁଣ୍ଠ ଧରି ବସନ୍ତି ଓ ଗୁଣ୍ଠ ଅର୍ଥାତ୍ କ୍ଷମତା ଧରି ଅଧିକ ବାଦ୍ୟାକୁ ଧରି ରଖିଥିବାର ହାକମୀ ଦେଖାନ୍ତି, ଆମେ ତାଙ୍କୁ ଆଚାର୍ଯ୍ୟ ବୋଲି କହୁ । ଆଚାର୍ଯ୍ୟକୁଳ କହିଲେ ଏହି ଶିକ୍ଷକକୁଳ ବା ମାଷ୍ଟରକୁଳଙ୍କୁ ବୁଝୁ । ଆଚାର୍ଯ୍ୟ ଶବ୍ଦଟି ସଂସ୍କୃତ 'ଚର୍' ଧାତୁରୁ ନିଷ୍ପନ୍ନ ହୋଇ ଆସିଛି । ଚର୍' ଅର୍ଥାତ୍ ଚାଲିବା; ତେଣୁ ଆଚାର୍ଯ୍ୟ ଅର୍ଥାତ୍ ଯିଏ ବାଟ ଚାଲୁଛି, ନିଜେ ବାଟ ଚାଲି, ଚାଲିବାର ପ୍ରେରଣା ଦେଉଛି । ଖାଲି ଶାସ୍ତ୍ରୀୟ ବ୍ୟୁତ୍ପତ୍ତିଗତ ବ୍ୟାଖ୍ୟା ଅନୁସାରେ ନୁହେଁ, ଆଧୁନିକ ଶିକ୍ଷାବିଜ୍ଞାନ ଏବଂ ବିଚାରସଂକ୍ରମଣର ମନୋବିଜ୍ଞାନ ଅନୁସାରେ ମଧ୍ୟ ଶିକ୍ଷକ ବା ଆଚାର୍ଯ୍ୟ କହିଲେ ମୂଳତଃ ଆପେ ସତତ ଶିଖିବାରେ ଲାଗିଥିବା ଅର୍ଥାତ୍ ଆପେ ସତତ ବାଟ ଚାଲିବାରେ ଲାଗିଥିବା ଜଣେ ବ୍ୟକ୍ତିକୁ ହିଁ ବୁଝାଏ । ସ୍ୱଭାବତଃ ଗ୍ରହଣଶୀଳ ମଣିଷ ଅପର ଅନେକଙ୍କୁ ଗ୍ରହଣଶୀଳ ହେବାର ପ୍ରେରଣା ଦେଇଯାଏ, ଜିଜ୍ଞାସୁ ମଣିଷ ଜିଜ୍ଞାସାର ସଂକ୍ରମଣ କରାଏ । ଭକ୍ତ ହିଁ ଭକ୍ତିର ସଂକ୍ରମଣ କରାଏ, ଶ୍ରଦ୍ଧାଶୀଳ ମନୁଷ୍ୟ ହିଁ ଶ୍ରଦ୍ଧାର ଚେତନ ଓ ବପନ କରାଏ । ଯିଏ ସତତ ଶିଖିବାର ପ୍ରବୃତ୍ତି ରଖିଥାଏ, କେବଳ ସେଇ ଅପର ଅନେକଙ୍କର ମନରେ ଶିଖିବାର ପ୍ରବୃତ୍ତିକୁ ଜାଗ୍ରତ କରି ରଖିପାରେ । ଏ ଦେଶରେ ଗତ ପଚାଶବର୍ଷ ହେଲା ଯେଉଁମାନେ ଖାଲି ଉପଦେଶ ଦେବାରେ ବାଇ ହୋଇ ରହିଛନ୍ତି, ସେମାନେ ଆପେ କୌଣସି ପ୍ରକାରରେ ହଲଚଲ ହେଉନାହାନ୍ତି; ଯେଉଁଠି ଅଛନ୍ତି, ଠିକ୍ ସେହିଠାରେ ଜବର ହୋଇ ବସିଛନ୍ତି । ସେମାନେ ଆପେ କିଛିହେଲେ ହେଉନାହାନ୍ତି, ମାତ୍ର ଅନ୍ୟକୁ କେତେକ'ଣ ହେବାଲାଗି ଓ କେତେକଅଣ କରି

ଦେଖାଇ ଦେବାଲାଗି ଖାଲି ଉପଦେଶ ଦେବାରେ ଲାଗିଚନ୍ତି । ସେମାନେ ଖାଲି ଅନ୍ୟଙ୍କୁ ମଣି କରି ବା ବଶ କରି ରଖିବାର ମନ କରୁଚନ୍ତି । ଆମର ଅଧ୍ୟାପକ ନିଜେ ଅଧ୍ୟୟନ କରୁନାହିଁ; ଅଧ୍ୟୟନରପାଇଁବନ୍ତିଷ୍ଟ ଲୋକଙ୍କୁ ଖାଲି ସୁଚତୁରତାର ସହିତ ମାରିଦେଇ ସିଏ ଏକ୍ଡ଼େବକ୍ତ ଅଧ୍ୟାପକ ହୋଇ ବସିଚି, ଅଧ୍ୟାପନା କରିବାରେ ଲାଗିଚି । ସିଏ ଯୁଗଟାକୁ ଅନ୍ଧାର କରି ରଖିଚି; ମଣିଷଠାରୁ ମଣିଷକୁ ଦୂରଛଡ଼ା କରି ରଖିଚି; ସକଳ ପ୍ରକାର ଢ଼ିଣ୍ଡିମ ବଜାଇବା ସତ୍ତ୍ୱେ ସିଏ ଅସଲ ସଂକ୍ରମଣ ଓ ଅସଲ ଅଭିଳାଷ ଗୁଡ଼ାକୁ ବାରଣ କରି ରଖିଚି—ଆମ ସମ୍ଭବନଙ୍କର ଚାଲିବା ବାଟରେ ଏକ ପ୍ରତିବନ୍ଧକ ହୋଇ ଠିଆ ହୋଇଚି । ସଂସାରକୁ ବଦଳାଇବାକୁ ହେବ, ସମାଜକୁ ବଦଳାଇବାକୁ ହେବ ଓ ଜାତି ବା ଦେଶର ଭାଗ୍ୟକୁ ବଦଳାଇବାକୁ ହେବ ବୋଲି ଏବେ ଆମର ଏଠି ଅନେକେ କହୁଛନ୍ତି; ମାତ୍ର ସେମାନଙ୍କ ଭିତରୁ ପ୍ରକୃତରେ କେତେଜଣ ବଦଳିବାକୁ ଚାହୁଁଚନ୍ତି ? ନିମ୍ନପଦ ଭାବରେ ଏହି ସଂସାରରେ ଚାହିଁ ସଫଳ ହେବାଲାଗି ଭଗବାନଙ୍କ ପାଖରେବର ମାଗୁଥିବା ବ୍ୟକ୍ତି ଏହି ସଂସାରକୁ କେଉଁଦିନ କିପରି ବଦଳାଇ ପାରିବ ? ଏହିସବୁ ଚଳନ୍ତି ରୀତି ଅର୍ଥାତ୍ ଜୀବନବିରୋଧୀ ଅଭ୍ୟାସଗୁଡ଼ାକୁ ସିଧା ଆହ୍ୱାନ କଲାପରି ଆମର ଭିତରେ ଗୋଟାଏ ବୈଭବମୟ ଉଜ୍ଜ୍ୱଳ ବ୍ୟତିକ୍ରମ ହୋଇ ରହିଥିଲେ ଆଶ୍ଚର୍ଯ୍ୟ ହରିହର । ସିଏ ଅନ୍ୟମାନଙ୍କୁ ଚାଲିବାଲାଗି ଉପଦେଶ ଦେଉନଥିଲେ, ନିଜେ ବାଟ ଚାଲୁଥିଲେ । ଏବଂ ତାହାଦ୍ୱାରା ହିଁ ଆହୁରି ଅନେକଙ୍କୁ ବାଟ ଚାଲିବାକୁ ପ୍ରେରଣା ଦେଉଥିଲେ । ସେ ଆପଣା ଭିତରେ ଭଲକୁ ଚାହୁଁଥିଲେ, ଭଲକୁ ଅନୁଭବ କରୁଥିଲେ ଓ ଭଲଉପରେ ନିର୍ଭର କରି ପାରୁଥିଲେ । ତେଣୁ ଅନ୍ୟ ଅନେକଙ୍କ ଭିତରେ ମଧ୍ୟ ସେ ଭଲର ଆହ୍ୱାନ ଦେଇ ପାରୁଥିଲେ, ଭଲର ଉଦ୍ରେକ କରାଉଥିଲେ । ଆମକୁ ଆମ ଭିତରର ଭଲଟାକୁ ହିଁ ଛୁଆଁଇ ଦେଇ ଯାଉଥିଲେ । ଏହିଭଳି ଏକ ବ୍ୟତିକ୍ରମ ହୋଇ ପାରିଲେ ହିଁ ଯୁଗନ୍ଧର ବା ଯୁଗପ୍ରବର୍ତ୍ତକ ହେବାର ଅଧିକାର ମିଳିଥାଏ । ଏହିଭଳି ଏକ ବ୍ୟତିକ୍ରମ ହୋଇ ପାରିଥିବା ବ୍ୟକ୍ତିହିଁ ଅସଲ ପରିବର୍ତ୍ତନ କରାଏ । କିନ୍ତୁ ଏଭଳି ଏକ ବ୍ୟତିକ୍ରମ ହୋଇ ପାରିବାକୁ ହେଲେ ମଣିଷ ଲାଗି ଅର୍ଥାତ୍ ମଣିଷ ମାତ୍ରଙ୍କ ପ୍ରତ୍ୟେକଲାଗି ଭିତରେ ଅନେକ ଅନୁରାଗ, ଅନେକ ବିଶ୍ୱାସ ଓ ଅନେକ ସଂବେଦନଶୀଳତା ରହିଥିବା ଦରକାର । ମଣିଷର ଦୁଃଖ, ମଣିଷର ଆଶାଦୁରାଶା ଓ ମଣିଷର ସ୍ୱପ୍ନାକାଙ୍କ୍ଷାକୁ ନିଜର ବୋଲି ଅନୁଭବ କରିପାରିବା ଦରକାର; ଏପରିକି ଆପଣା ଶରୀରରେ ମଧ୍ୟ ସେଗୁଡ଼ାକୁ ଅନୁଭବ କରି ପାରିବା ଦରକାର । ଓଡ଼ିଶାର ଆଧୁନିକ ଇତିହାସରେ ଏହି ସଂବେଦନଶୀଳତାର ଏକ ପ୍ରତୀକ ଖୋଜି ବାହାରିଲେ ଉତ୍କଳମଣିଙ୍କ ଜୀବନ ବାଟଟି ସବା ଆଗ ବଡ଼ ଜଳଜଳ ହୋଇ ଦିଶିଯାଏ । ଏବଂ ଉତ୍କଳମଣିଙ୍କ ପରେ ଆମେ କେବଳ ଆଶ୍ଚର୍ଯ୍ୟ ହରିହରଙ୍କୁ ହିଁ ବୋଧହୁଏ ଆମ ଏ ଯୁଗରେ ସଂବେଦନଶୀଳତାର ସର୍ବଶ୍ରେଷ୍ଠ ପ୍ରତୀକ ବୋଲି

ଅବଶ୍ୟ କହିପାରିବା । ସେଇଥିଲାଗି ଆଗୃହୀ ମହାଶୟଙ୍କ ପାଖରେ ବସିଲେ ସତେ ଅବା ଆପଣାର ଅତି ଅନୁରାଗୀ କାହାପାଖରେ ରହିଥିଲା ପରି ସର୍ବଦା ଅନୁଭୂତ ହେଉଥିଲା । ତାଙ୍କୁ ଅନାଇଦେଲେ ଭିତରଟା ସତେ ଯେପରି କେତେ ଉଲ୍ଲାସ ଲଭୁଥିଲା, ସଂସାରର କେତେ ସନ୍ତାପ ସତେଅବା ଖୁସିରେ ରୂପାନ୍ତରିତ ହୋଇ ଯାଉଥିଲା, ସମ୍ପତ୍ତି ବୋଲି ଗଣି କରି ଧରିଥିବା ଅନେକ କାର୍ପଣ୍ୟ ଓ କାଠିନ୍ୟ ସତେଅବା କୁଆଡ଼େ ମିଳାଇ ଯାଉଥିଲା, ଆପଣାକୁ କେଉଁ ପରମ କାମ୍ୟର ଉଦ୍ଦେଶ୍ୟରେ ସମର୍ପି ଦେବାକୁ ମନ ହେଉଥିଲା । ଗୋଟାଏ ପାଖରେ ଯାହାକୁ ଆମେ ସମର୍ପଣ ବୋଲି କହିବା, ଅନ୍ୟପାଖରୁ ବିଚାର କରି ଠିକ୍ ତାହାକୁ ଉପନୟନ ବୋଲି କୁହାଯାଇ ପାରିବ । ଅଗୃହୀ ମହାଶୟ ତାଙ୍କର ଜୀବନ-କାଳରେ ଏବଂ ତାଙ୍କର ଅତି ଅଜାଣତରେ କେତେକେତେ କ୍ଷେତ୍ରରେ କେତେକେତେ ବ୍ୟକ୍ତିଙ୍କର ଉପନୟନରେ ପୁରୋଧା ହୋଇଥିବେ; ଏବଂ ସେହି କାରଣରୁ ସେ କେତେକେତେ ବ୍ୟକ୍ତିଙ୍କର ଜୀବନରେ ଅଗୃହୀ ହୋଇ ରହିଥିବେ ।

ସମାଜକୁ ବଦଳାଇବାର ବାଟ ଅନେକ ରହିଛି । ଏବଂ ସେହିସବୁ ବାଟକୁ ଅବଲମ୍ବନ କରି ଧରି ଆମ ସଂସାରରେ ନାନା ଆଦର୍ଶବାଦର ସୃଷ୍ଟି ହୋଇଛି । ସେହି ଆଦର୍ଶବାଦକୁ ବାନା କରି ଉଡ଼ାଇ ଆମର ଏଠି କେତେକେତେ ପ୍ରକାରର ବିପ୍ଲବ ହୋଇଛି । କିନ୍ତୁ ସେହି ସଚରାଚର ବିଚାରକୁ ନେଇ ବିପ୍ଳବ ଆରମ୍ଭ ହେଉଛି ଏବଂ ଏବେ ମଧ୍ୟ କ୍ଷମତା ଭିତରେ ହିଁ ସେହି ବିପ୍ଳବର ସମାଧି ହୋଇ-ଯାଉଛି । ନୂଆ ବିଚାରରୁ ବିପ୍ଲବ ଆରମ୍ଭ ହେଉଛି, ମାତ୍ର କ୍ଷମତାର ଯନ୍ତ୍ରାଭିତରେ ପଶି ତାହା ପ୍ରାପ୍ତ ସବୁଠାରେ ସେହି ପୁରୁଣା ନାନା ଭେକ୍ତା ଉତ୍ପୀଡ଼ନ ଓ ବଳାତ୍କାର ମଧ୍ୟରେ ହିଁ କୁଆଡ଼େ ଧର୍ଷିତ ହୋଇ ରହିଯାଉଛି । ଯିଏ ବିପ୍ଲବ ଦୃଢ଼ିଁବ, ଯିଏ ସବୁ ମଣିଷର ଉଦୟ ହେଲଭଳି ଗୋଟାଏ ସମାଜର ସ୍ଥାପନା ଚାହୁଁଥିବ, ସିଏ କାହିଁକି କ୍ଷମତା ଉପରେ ଏତେବେଶୀ ନିର୍ଭର କରିବ ? କେବଳ କ୍ଷମତା ଆତ୍ମସାତ କରିପାରିଲେ ଯେ ବିପ୍ଲବ ହେବ, ଏପରି ଗୋଟାଏ ବୁଦ୍ଧିଗତ ଭ୍ରମ ଭିତରେ ସିଏ କାହିଁକି ବାଟ ହୁଡ଼ି ବସିବ ? ଏହିଭଳି ଏକ ସଂଶୟ ଅର୍ଥାତ୍ ମୌଳିକ ଜିଜ୍ଞାସାରୁ ଭାରତବର୍ଷରେ ଗାନ୍ଧିବିଚାରକୁ ନେଇ ଯେଉଁ ଅଭିନବ ପରୀକ୍ଷା ଏବେ ମଧ୍ୟ ଚାଲିଛି, ଆଗୃହୀ ହରିହର ସାମାଜିକ ବିପ୍ଳବ ଅର୍ଥାତ୍ ମଣିଷପରି ମଣିଷ ହୋଇ ବଞ୍ଚିବାଲାଗି ଏକ ସୁନ୍ଦର ସମାଜର ସ୍ଥାପନା କହିଲେ ପ୍ରଧାନତଃ ସେହି ପରୀକ୍ଷାକୁ ହିଁ ବୁଝୁଥିଲେ ଓ ଆପଣଙ୍କୁ ଶେଷଯାଏ ସେହି ପରୀକ୍ଷାରେ ସମର୍ପିତ କରି ରଖିଥିଲେ । ସଂସାର ଭିତରେ ଆଜି କେଉଁଠି ଯେତେବେଳେ ବିପ୍ଲବ ହୋଇଛି, ବା ହେଉଛି, ସେଠାରେ ବିପ୍ଳବ ସଫଳ ହେବା ସଙ୍ଗେସଙ୍ଗେ ଖୋଦ୍ ବିପ୍ଲବକାରୀ ମାନେ ହିଁ କ୍ଷମତା ଗୁଡ଼ାକୁ ମାଡ଼ି ବସିଛନ୍ତି ଓ ବିପ୍ଲବ-ଦ୍ୱାରା ଯାହାକିଛି ହାସଲ କରିବାର ଥିଲା, ତାହା ହାସଲ ହୋଇଗଲା ବୋଲି ଘୋଷଣା

କରିଛନ୍ତି ଏବଂ ଶାସନବଳର ଭୀଷଣ ଦେଖାଇ ସମସ୍ତଙ୍କର ତୁଣ୍ଡରୁ ତାହାହିଁ କୁହାଇବାର ଦୌରାତ୍ମ୍ୟ ଦେଖାଇଛନ୍ତି । ଆମର ଏଠି ଆଚାର୍ଯ୍ୟ ହରିହର ଆପଣାକୁ ଯେଉଁ ବିପ୍ଳବବହ୍ନିର ମଧ୍ୟରେ ସମ୍ମିଳିତ କରି ରଖିଥିଲେ, ସେଥିରେ କ୍ଷମତା ହସ୍ତଗତ କରିବାର କୌଣସି କାର୍ଯ୍ୟକ୍ରମ ନଥିଲା କି ଏବେ ମଧ୍ୟ ନାହିଁ; ମାତ୍ର ଯେତେଦୂର ନିର୍ଭୟ ଓ ବିଶ୍ୱାସ ବଳିଷ୍ଠ ହୋଇ ପାରିଲେ ବିପ୍ଳବରେ ସମ୍ମିଳିତ ହେବା ସଙ୍ଗେସଙ୍ଗେ ତଥାପି କ୍ଷମତାଜନିତ ଯାବତୀୟ ମୂର୍ଖତାରୁ ଆପଣାକୁ ମୁକ୍ତ କରି ରଖିବା ସମ୍ଭବ ହୋଇ ପାରିବ, ଆମ ଅନେକଙ୍କ ଭିତରେ ହୁଏତ ସେହି ନିର୍ଭୟତା ନଥିଲା କିମ୍ବା ସେହି ବିଶ୍ୱାସ ମଧ୍ୟ ନଥିଲା । ତେଣୁ ଆମେ ଆଚାର୍ଯ୍ୟ ମହାଶୟଙ୍କୁ ଭକ୍ତି କରୁଥିଲୁ, ତାଙ୍କୁ ବଡ଼ ବୋଲି କହୁଥିଲୁ, ତାଙ୍କୁ ପୀଢ଼ାଉପରେ ବସାଇ ସଭାକୁ ପବିତ୍ର କରୁଥିଲୁ ; ମାତ୍ର ତାଙ୍କର ବିପ୍ଳବକୁ ଡରୁଥିଲୁ । ସେହି ବିପ୍ଳବଲାଗି ଅର୍ଥାତ୍ ସେହି ଭୟମୁକ୍ତ ବିଶ୍ୱାସଲାଗି ଆମେ ପ୍ରସ୍ତୁତ ନଥିଲୁ । ଆମେ ତାଙ୍କୁ ଓଡ଼ିଶାର ଋଷିଦେବ ବୋଲି କହୁଥିଲୁ, ଅଥଚ ଏଣେ କୌରବଗଣରେ ଅନ୍ତର୍ଭୁକ୍ତ ରହି ତାଙ୍କୁ ଆମର ନାନାବିଧ ଧନ୍ଦାରେ ଲଗାଇବାର ଫନ୍ଦି କରୁଥିଲୁ । ତାଙ୍କୁ ଆମ ଜାତିର ଗୌରବ ବୋଲି କହୁଥିଲୁ । ଅଥଚ ତାଙ୍କ ନିହିତ ଅନ୍ତରଙ୍ଗ ହୋଇ ବସି ପାରୁନଥିଲୁ ଅର୍ଥାତ୍; ତାଙ୍କୁ ଆମ ମେଳରୁ ଅଜାଢଆ କରି ରଖିଥିଲୁ, ଆମର ବୃତ୍ତର ଭିତରୁ ତାଙ୍କୁ ବହିଷ୍କୃତ କରି ରଖିଥିଲୁ । ବର୍ତ୍ତମାନ ସେ ଆମଭିତରୁ ଚାଲିଯିବା ପରେ ଆମେ ଡରୁଆମାନେ ଦୂରରୁ ଥାଇ ସାବଧାନ ସାଧୁ ପରି ତାଙ୍କର ପୂଜା କରିବୁ ସତ, ମାତ୍ର ଆପଣା ଜୀବନର ମଣ୍ଡଳ ଉପରକୁ ତାଙ୍କୁ ଆବାହନ କରି ଆଣିବାକୁ ହୁଏତ ନିତି ଭୟ କରୁଥିବୁ, ତାଙ୍କୁ 'ଅତ୍ରାଗଚ୍ଛ' ଓ 'ଇହତିଷ୍ଠ' ବୋଲି କହିବାର ନୈକଟ୍ୟକୁ ହୁଏତ କେବେହେଲେ ଅର୍ଜନ କରି ପାରିବୁନାହିଁ । କିନ୍ତୁ ତା' ବୋଲି ଯେ ଆଚାର୍ଯ୍ୟ ମହାଶୟ ଅଲୋଡ଼ା ହୋଇ ରହିଯିବେ, ତାହା କଦାପି ନୁହେଁ । ହୁଏତ ଆମେ ଅଯୋଗ୍ୟମାନେ ହିଁ ଅଲୋଡା ହୋଇ ରହିଯିବୁ । ଯୁଗ ଆଗକୁ ଚାଲିଯିବ ଏବଂ ଆମେ ହିଁ ତିରସ୍କୃତ ହୋଇ ପଛରେ ପଡ଼ିଯିବୁ, ଆମର ଆଡ଼ମ୍ବର ଗୁଡ଼ାକ ଖପରା ହୋଇ ପଡ଼ିରହିବ । ମଣିଷ ତାଙ୍କୁ ଚିହ୍ନିବ, ତରୁଣ ତାଙ୍କୁ ଚିହ୍ନିବ, କାଲିର ସ୍ୱପ୍ନ ଦେଖୁଥିବା ଆଖିଗୁଡ଼ାକ ତାଙ୍କୁ ନିଶ୍ଚୟ ଆବିଷ୍କାର କରିନେବ । ଆଚାର୍ଯ୍ୟ ହରିହରଙ୍କୁ ସେଇ ଆପଣାର ସଖା କରି ପାଇବ ।

ଆଚାର୍ଯ୍ୟ ହରିହର କାହାର ସମ୍ପତ୍ତି ନଥିଲେ । କୌଣସି ପ୍ରକାରେ କେବେହେଲେ ଧରା ଦେଉ ନଥିଲେ । ସେ କୌଣସି ଜାତିର ନଥିଲେ କିମ୍ବା କୌଣସି ଦେଶର ନଥିଲେ, କୌଣସି ରାଷ୍ଟ୍ରର ମଧ୍ୟ ସେ ସମ୍ପତ୍ତି ନଥିଲେ, ରାଷ୍ଟ୍ରୀୟତାର କୌଣସି ରଜ୍ଜୁ ତାଙ୍କୁ କେବେହେଲେ ବାନ୍ଧି ପାରିନଥିଲା ଅଥବା ସଂସାରର କୌଣସି ଲକ୍ଷଣକୁ ସତେଅବା ଏକ ସ୍ୱରାଷ୍ଟ୍ରବତ୍ ମଣି ସେ ତାହାର ଭିତରେ କାହାରକୁ ବାନ୍ଧି ରଖିବା-

ଲାଗି କେବେହେଲେ କୌଣସି ପ୍ରୟାସ କରିନଥିଲେ । ସେ ଜଣେ ଭକ୍ତ ଥିଲେ, ତେଣୁ ଭକ୍ତର ଭାଜନ ହୋଇ ରହିଥିଲେ । ଭକ୍ତି ଆମଭିତରେ ଅନେକ ସଯତ୍ନ କଳ୍ପିତ କେତେକେତେ ବାଡ଼କୁ ଭାଙ୍ଗିଦେଇ ଯାଏ, ଅନେକ ସତର୍କତାକୁ ଭାଙ୍ଗିଦେଇ ଯାଏ ; ଭକ୍ତି ମୁକ୍ତ କରିଦିଏ, ସମ୍ମିଳିତ କରେ । ଭକ୍ତିରୁ ପରମ ଅନୁରକ୍ତି ଜନ୍ମେ ଏବଂ ତାହାହିଁ ଜୀବନକ୍ଷେତ୍ରରେ ଏକ ସ୍ୱାଭାବିକ ସକଳ-ଅନୁରକ୍ତି ରୂପେ ଆପଣାକୁ ପ୍ରତିଫଳିତ କରି ରଖେ, ଆପଣାକୁ ସବୁଠି ଭିତରେ ବିଚ୍ଛୁରିତ କରି ରଖେ । ପରମ ଅନୁରକ୍ତି ସମଗ୍ର ଓ ସକଳ ଜୀବନପ୍ରତି ଏକ ପ୍ରଗାଢ଼ ଅନୁରକ୍ତି ରୂପେ ଆତ୍ମପ୍ରକାଶ କରେ । ପରମ ଅନୁରକ୍ତ ମଣିଷ ମଣିଷ ମାନଙ୍କ ସବୁରିପ୍ରତି ଅନୁରକ୍ତ ହୋଇ ରହେ, ସମସ୍ତଙ୍କର ସଖା ହୋଇ ପାରିବାର ଭାଜନ ହୋଇ ରହେ । ଠିକ୍ ସେହି କାରଣରୁ ହିଁ ଆଚାର୍ଯ୍ୟ ହରିହର ଆମ ଅନେକଙ୍କ ଲାଗି ସଖାର ଭାଜନ ହୋଇ ରହିଥିଲେ । ସେ ଏଡ଼େବଡ଼ ଥିଲେ ମଧ୍ୟ ତଥାପି ଆମର ଏତେ ପାଖରେ ଆସି ଧରା ଦେଇ ପାରୁଥିଲେ, କେଡ଼େ ସହଜରେ ଆମକୁ ଆପଣାର ଅତି ପାଖରେ ସ୍ଥାନ ଦେଇ ପାରୁଥିଲେ । କେଡ଼େ ବଡ ହୋଇ ମଧ୍ୟ ସେ ଆମ ସମସ୍ତଙ୍କୁ ଏପରି ଆପଣାର ବୋଲି ଲାଗୁଥିଲେ । ସତ୍ୟବାଦୀ ବନ-ବିଦ୍ୟାଳୟର ଛାତ୍ରାବାସରେ ସେ ଯେଉଁ ପିଲାର କାଛୁକୁ ନିଜହାତରେ ଧୋଇ ସଫା କରୁଥିଲେ ବା ଜରବେଳେ ଯାହାପାଖରେ ରାତିଉଜାଗର ହୋଇ ବସୁଥିଲେ, ସିଏ କେଡ଼େ ସହଜରେ ତାଙ୍କୁ ଆପଣାର ଏକାନ୍ତ ନିଜର ବୋଲି ଅନୁଭବ କରି ନଥିବ ! ସତ୍ୟବାଦୀର ବିଦ୍ୟାଳୟ ଭାଙ୍ଗିଗଲା, ଦେଶର କେତେକେତେ ସତ୍ୟବାଦୀ ପ୍ରୟୋଜନରେ ପଡ଼ି ବା କାଳର ଅନୁରୋଧକୁ ଏଡ଼ି ନପାରି ମିଥ୍ୟାବାଦୀ ହେଲେ ; ତଥାପି ଆଚାର୍ଯ୍ୟ ହରିହର ଆପଣାର ଧର୍ମ ଛାଡ଼ିଲେ ନାହିଁ । ଆମ ପାଖରେ ବସି ସେ ଆମ କେତେକେତେ ମଣିଷଙ୍କର ହୃଦୟରୁ କେତେ ମଇଳା ଧୋଇନେଲେ ଓ ଆମର ବିଶ୍ୱାସ ଭାଙ୍ଗି ପଡ଼ିଲାବେଳେ କେତେ ବଳ ଭରି ଦେଇଗଲେ !

ମଣିଷର ଭିତରେ କୁଆଡ଼େ ଭଲ ଅଛି, ମନ୍ଦ ବି ଅଛି । ଦୈତ୍ୟ ଅଛି, ଦେବତା ବି ଅଛି । ସେଥିଲାଗି ଉପଦେଶ ଦେଲାବାଲା ମାନେ ଆମକୁ ଏହି ସଂସାରରେ ଅତ୍ୟନ୍ତ ସାବଧାନ ହୋଇ ବାଟଚାଲିବାର ପରାମର୍ଶ ଦେଇ ଥାଆନ୍ତି । ମନ୍ଦର ଜାଲଭିତରେ ପଡ଼ି ନଯିବାର ହିତବାଣୀ ଶୁଣାଇଥାନ୍ତି । ଏମାନେ ବିଶ୍ୱାସ ନକରିବାକୁ କହନ୍ତି, ଭଲ ନପିବାକୁ କହନ୍ତି । ଆପଣାର ଦୁଆର ଖୋଲିକରି ରଖିବାକୁ ସେମାନେ ସଂସାରରେ ଭାରି ଚିଜା ବୋଲି ଭାଷ୍ୟ କରନ୍ତି । ଏମାନେ ଆଉଯାହା କରନ୍ତୁ ବା ନକରନ୍ତୁ ପଛକେ, ଆପଣାଭିତରେ ଥିବା ମନ୍ଦଟା ବିଷୟରେ ହିଁ ମଣିଷକୁ ସବୁବେଳେ ଭାରି ସଚେତ କରି ରଖିଥାନ୍ତି । ସଂସାରରେ ଦୈତ୍ୟମାନଙ୍କର

ସମ୍ମୁଖୀନ ହେବାଲାଗି ସଦାସତର୍କ ହୋଇ ରହିବାକୁ କହି କହି ସେମାନେ ଆମକୁ ଆପଣା ଭିତରେ ଗୋଟାଏ ଗୋଟାଏ ଦୁର୍ଗମ୍ୟ ଦୈତ୍ୟ ହୋଇ ବସିବାଲାଗି ସତେଅବା ସତତ ପ୍ରରୋଚନା ଦେବାରେ ଲାଗିଥାନ୍ତି । ଏହି ପରାମର୍ଶ ବା ପ୍ରରୋଚନା ଦେବାଟା ହେଉଛି ତୁଚ୍ଛା ଅଭକ୍ତର ଲକ୍ଷଣ । ପ୍ରକୃତ ଭକ୍ତ ଆମକୁ କେବଳ ନିରସ୍ତ୍ର କରିଦେଇ ଯାଏ, ଆମର ସବୁ କୁଆରକୁ ଖୋଲିଦେଇ ଯାଏ । ଏବଂ ସତର୍କତାର ସବୁ ଅସ୍ତ୍ର ହାତରୁ ଖସିପଡ଼ିଲା ପରେ ସଂସାରରେ ଆଉ ଡର ମାଡ଼େନାହିଁ । ଆପଣାକୁ ଡର ମାଡ଼େନାହିଁ କି ସଂସାରକୁ ଡର ମାଡ଼େନାହିଁ; ପରିବର୍ତ୍ତନକୁ ଡର ମାଡ଼େନାହିଁ କିମ୍ବା ବିପ୍ଳବକୁ ବି ଡର ମାଡ଼େନାହିଁ । ଆପଣାର ଭିତରଟା ସତେଅବା ଶୁଦ୍ଧ ଓ ସ୍ପଷ୍ଟ ହୋଇ ଦେଖାଦିବାକୁ ଆରମ୍ଭ କରେ, ଆପଣାଭିତରେ ସତେଅବା କେଉଁ ସାହସୀ ପ୍ରସ୍ତୁତ ହୋଇ ବସିଥିଲା ପରି ମନେହୁଏ ।

ଆଚାର୍ଯ୍ୟ ହରିହର ଠିକ୍ ଏହିପରି ଜଣେ ଭକ୍ତ ଥିଲେ । ସେଥିଲାଗି ଦେଖୁ ଦେଖୁ ହିଁ ଆପଣାଭିତରେ ପ୍ରଚ୍ଛନ୍ନ ହୋଇ ରହିଥିବା ଭଲଗୁଡ଼ାକ ସତେଅବା ବଡ଼ ଜଳଜଳ ହୋଇ ଦିଶି ଯାଉଥିଲା । ତାଙ୍କୁ ଦେଖୁଥିଲା ବେଳେ ଆଖିଉପରୁ କେଉଁ ବନ୍ଧ ସଂସ୍କାରଗୁଡ଼ାକ ତଳକୁ ଖସି ପଡ଼ୁଥିଲା କେଜାଣି, ତା'ପରେ ଆପଣାକୁ ଅନାଇବା ବେଳକୁ ଅନୁଭବ କରିବା ବେଳକୁ ଆପଣା-ଭିତରେ ସତେ ଅବା କେତେକେତେ ଶୁଭର ସନ୍ଧାନ ମିଳି ଯାଉଥିଲା । ସେହି ଶୁଭକୁ ହିଁ ଆପଣାର କାନ୍ଧ ଉପରକୁ ଟେକି ନେଇ ବାଟ ଚାଲିବାକୁ ଇଚ୍ଛା ହେଉଥିଲା । ସଂସାରରେ ଆଉ କେହି ଶତ୍ରୁ ବୋଲି ମନେ ହେଉନଥିଲେ, କେହି ପର ବୋଲି ମନେ ହେଉନଥିଲେ କି କେହି ଦୂର ମନେ ହେଉନଥିଲେ । ସମସ୍ତେ ସାଥୀବାଟୋଇ ପରି ମନେ ହେଉଥିଲେ । ଆଚାର୍ଯ୍ୟ ହରିହର ସେ କଥା କରି ପାରୁଥିଲେ । ସେ ଭକ୍ତଥିଲେ । ସେ ତାଙ୍କରି ଭକ୍ତଥିଲେ । ତାଙ୍କର ପ୍ରିୟ ଥିଲେ । ତେଣୁ ଏଠି ଆମ ସମସ୍ତଙ୍କର ବି ପ୍ରିୟ ଥିଲେ ।

# ସତ୍ୟବାଦୀ ବିଦ୍ୟାଳୟରେ ଆଚାର୍ଯ୍ୟ ହରିହର

## ଅଧ୍ୟାପକ ଶ୍ରୀ ଚିନ୍ତାମଣି ଦାସ ଏମ୍. ଏ.

( ସତ୍ୟବାଦୀ ବନବିଦ୍ୟାଳୟର ପୁରାତନ ଛାତ୍ର )

ଯେଉଁ ଦିନ ନିର୍ମଳ ଶୁଭ୍ର ବାସନ୍ତୀ ରଜନୀରେ ଗୋପବନ୍ଧୁଙ୍କ ଗ୍ରାମ ନଈବନ୍ଧ ଉପରେ ବିଶଜଣ ଯୁବା ପୁରୁଷ ଏକତ୍ରିତ ହୋଇ ଭାବାବେଶରେ କଠୋର ସଙ୍କଳ୍ପ କରିଥିଲେ, "ସରକାରୀ ଚାକିରୀ କରିବା ନାହିଁ; ନିଜର ଭରଣ ପୋଷଣ ବିଳାସରେ ମନଦେବା ନାହିଁ, ଜନ୍ମ ହୋଇ ଦେଶକୁ ଯାହା ଦେଖି ଥାଇ, ମଲାବେଳେ ତାଠାରୁ ଉନ୍ନତତର ଅବସ୍ଥାରେ ଛାଡ଼ିଯିବା ଓ ସେଥିପାଇଁ ବରାବର ପ୍ରଯତ୍ନରେ ରହିବା" ସେହି ଚିରସ୍ମରଣୀୟ ଦିବସଠାରୁ ଆମରଣ ଦେଶକୁ ଉନ୍ନତତର ଅବସ୍ଥାରେ ଦେଖିବା ପାଇଁ ନିରନ୍ତର ପ୍ରଯତ୍ନଶୀଳ ଆଚାର୍ଯ୍ୟ ହରିହରଙ୍କର ଜୀବନ ଅତ୍ୟନ୍ତ ସାଧନାଶୀଳ ଏବଂ କୃଚ୍ଛ୍ର ବ୍ରହ୍ମଚର୍ଯ୍ୟର ଅସିଧାର ବ୍ରତ ଉପରେ ପ୍ରତିଷ୍ଠିତ ହୋଇଥିଲା । ସଂସାରର ସୁଖ କଣ ସେ ମୋଟେ ଉପଲବ୍ଧି କରି ନାହାନ୍ତି । ନିଜର ପରିବାର ଅବଶ୍ୟ ଥିଲା । କିନ୍ତୁ ସେ ପାରି-ବାରିକ ଜଞ୍ଜାଳରେ ସେ କଦାପି ଆବଦ୍ଧ ହୋଇ ନାହାନ୍ତି । ତାଙ୍କର ପିତା ଜୀବିତ ଥିବା ସମୟରେ ଏବଂ ତାଙ୍କ ମୃତ୍ୟୁର ଅଳ୍ପ କେତେଦିନ ଭିତରେ ସେ ଘରର ବିବାହ ଓ ବ୍ରତ ଇତ୍ୟାଦି ଉତ୍ସବରେ ଯୋଗ ଦେଇଛନ୍ତି ସତ, କିନ୍ତୁ ତାହା 'ପଦ୍ମପତ୍ରମିବାମ୍ଭସା' –ଅତ୍ୟନ୍ତ ନିର୍ଲିପ୍ତ ଓ ନିରାସକ୍ତଭାବରେ ଅଥଚ ସମ୍ପୂର୍ଣ୍ଣ ମନ ଓ ହୃଦୟ ସେହି ଉତ୍ସବରେ ପ୍ରତ୍ୟର୍ପଣ ନ କରି । ଏହି ଉପଲକ୍ଷରେ ବଡ଼ ବଡ଼ ଭୋଜି ହୁଏ । ପାଞ୍ଚଶହରୁ ଅଧିକ ଲୋକଙ୍କୁ ଖାଇବାକୁ ଡିଆଯାଏ । କିନ୍ତୁ ହରିହର କିଛି ନଖାଇ ନପିଇ ଏହି ଅତିଥିମାନଙ୍କର ଯଥୋଚିତ ସେବା ସତ୍କାରଠାରୁ ଆରମ୍ଭ କରି ସେମାନଙ୍କର ଖାଇବା ପିଇବା ପର୍ଯ୍ୟନ୍ତ ସବୁ କାର୍ଯ୍ୟ ଅତ୍ୟନ୍ତ ତତ୍ପରତାର ସହିତ ସମ୍ପାଦନ କରୁଥିଲେ । ଏହି କାର୍ଯ୍ୟ ଶେଷହେବା ମାତ୍ରେ ସେ ନିଜେ ଅଳ୍ପ କିଂଚିତ୍ ନିରାମିଷ ଭୋଜନ ସମାପନ କରି ଧାଇଁ

ଆଗେ ଯାଇ ସତ୍ୟବାଦୀ ବିଦ୍ୟାଳୟର ଛାତ୍ରାବାସରେ ଉପସ୍ଥିତ । କାରଣ ସେ ସେତେବେଳେ ବୁଝିଥିଲେ ଏହି ପାଠବାଚକ ଶ୍ରେଣୀ ଓ ଉପଦେଶଠାରୁ ବିଶେଷ ଦାୟିତ୍ୱପୂର୍ଣ୍ଣ କର୍ମ ହେଉଛି ଛାତ୍ରାବାସର ଅନ୍ତେବାସୀମାନଙ୍କର ସ୍ୱାସ୍ଥ୍ୟ ଓ ସୁଖ ସମ୍ପଦ ବିଧାନ । କେଜାଣି ଏତେ ବଡ଼ ଗୃହରେ କାହାର ଯଦି କଷ୍ଟବୋଧ କିମ୍ବା ଅନ୍ୟାନ୍ୟ ଅସୁବିଧା ଘଟେ ସେଥିପାଇଁ ଦାୟୀ କିଏ ? ଛାତ୍ରାବାସର ଅନ୍ତେବାସୀ-ମାନଙ୍କର ସୁଖ ଓ ସୁବିଧା ଦେଖିବା ନିମନ୍ତେ ଅନ୍ୟ ସାଧୁ ଓ ସଚ୍ଚରିତ୍ର ଶିକ୍ଷକମାନେ ଯେ ନ ଥିଲେ ତାହା ନୁହେଁ । କିନ୍ତୁ ଆଚାର୍ଯ୍ୟ ହରିହରଙ୍କ ଉପରେ ଏ ସମସ୍ତ ଦାୟିତ୍ୱ ଅର୍ପଣ କରାଯାଇ ଥିଲା । କିଏ ଅର୍ପଣ କରୁ ବା ନ କରୁ ଆଚାର୍ଯ୍ୟ ଏହି ଅନ୍ତେବାସୀ ମାନଙ୍କର ସୁଖ ସୁବିଧା ସମ୍ପାଦନା କରିବାକୁ ଅତ୍ୟନ୍ତ ଆଗ୍ରହଶୀଳ ଥିଲେ । ଏହାର କାରଣ—ଏହି ଛାତ୍ରମାନେ ହେଲେ ଦେଶ ଏ ଜାତିର ବଂଶଧର । ଏମାନେ ହେବେ ଦେଶର ଚିନ୍ତାନାୟକ-ରାଷ୍ଟ୍ରନେତା । ଏମାନେ ହେବେ ସ୍ୱାଧୀନତା ଆନ୍ଦୋଳନର ନେତା ଓ ଅଗ୍ରଦୂତ । ଏମାନେ ଜାତିକୁ ବଳିଷ୍ଠ ଆଦର୍ଶରେ ଅନୁପ୍ରାଣିତ କରିବେ । ଏମାନେ ଉତ୍କଳ ଓ ଭାରତର ଚତୁର୍ଦ୍ଦିଗରେ ଜାଳିବେ କାଳର ଆଲୋକ । ଏହି ମାନଙ୍କଠାରେ ସଦା ସର୍ବଦା ସତର୍କ ଦୃଷ୍ଟି ରଖି ସତ ପଥରେ ଚାଳିତ କରି ପାରିଲେ ହେବ ତାଙ୍କର ଗୋପବନ୍ଧୁଙ୍କ ଗାଁ ନିକଟ ଭାର୍ଗବୀ ନଦୀ କୂଳରେ କରିଥିବା କଠୋର ସଙ୍କଳ୍ପବାଣୀର ସାର୍ଥକତା ସାଧନ । ଦେଶକୁ କ୍ରମେ କ୍ରମେ ଉନ୍ନତତର କରି ଗଢ଼ିବାର ପ୍ରୟାସ ଏହିପରି ଭାବରେ ସଫଳ କରିବାକୁ ହେବ । ନିଜର ଭରଣପୋଷଣ ବିଳାସରେ ମନ ନାହିଁ, ଏପରିକି ନିଜର ପରିବାର ପ୍ରତି ଭ୍ରୂକ୍ଷେପ ନାହିଁ । ହରିହର ସଦାସର୍ବଦା ସେହି ଛାତ୍ରାବାସର ଆଚାର୍ଯ୍ୟ, ଛାତ୍ରମାନଙ୍କର ସେହି ପୂଜନୀୟ, ବରେଣ୍ୟ ଓ ଅଭିନନ୍ଦନୀୟ 'ହରିବାବୁ' ଛାତ୍ରାବାସରେ ଯେ କିଛି ଫୁଟିଲେ ଯାଇ ବାଜେ ଆଚାର୍ଯ୍ୟଙ୍କ କାନରେ । ଏତେ ବଡ଼ ଛାତ୍ରାବାସ ଶହେରୁ ଅଧିକ ଛାତ୍ର ଯେଉଁଠାରେ ବାସ କରୁଥିଲେ, ଯାହାର ଅନ୍ୟ ନାମ ଥିଲା 'ଗୁରୁକୁଳାଶ୍ରମ' ଏବଂ ସୁଦୂର ପଲ୍ଲୀରୁ ଅଭିଭାବକମାନେ ସେମାନଙ୍କ ଅବାଧ ପୁତ୍ରମାନଙ୍କୁ କେବଳ ହରିବାବୁଙ୍କ ତତ୍ତ୍ୱାବଧାନରେ ଯେଉଁଠାରେ ରହିବାକୁ ଅକୁଣ୍ଠିତ ଚିତ୍ତରେ ଛାଡ଼ି ଦେଉଥିଲେ, ଯେଉଁଠାରେ ଛାତ୍ର ଓ ଶିକ୍ଷକଙ୍କର ଦୋଷ ଦୁର୍ବଳତାର ଅଭ୍ୟାସ ଆଚାର୍ଯ୍ୟ ଘାଇଛନ୍ତି ବୋଲି ଜାଣିଲେ ସମ୍ପୃକ୍ତ ବ୍ୟକ୍ତିମାନଙ୍କ ପ୍ରାଣରେ ଘୋର ଆତଙ୍କ, ସେହି ଛାତ୍ରାବାସକୁ ଛାଡ଼ି ଆଚାର୍ଯ୍ୟ ହରିହର କଦାପି ଅନ୍ୟତ୍ର ରହି ନ ପାରନ୍ତି । ସେହି ଛାତ୍ରାବାସ ବର୍ତ୍ତମାନ ତାଙ୍କର ବିଶାଳ ପରିବାର । ଏହି ପରିବାରର ପାଳକ ଓ ପୋଷକ ହୋଇଛନ୍ତି ଆଚାର୍ଯ୍ୟ ହରିହର ଦାସ । ସତ୍ୟବାଦୀ ବିଦ୍ୟାଳୟ ଉଠିଗଲା, ତଥାପି ଏହିଠାରେ ସେ ଯେଉଁ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ରହିଥିଲେ, ଦେଶକୁ ଉନ୍ନତତର କରି ଦେଖିବାର ଯେଉଁ ଆକାଂକ୍ଷା ହୃଦୟରେ ପ୍ରଜ୍ୱଳିତ ଥିଲା, ସେହି ଅଭୀପ୍ସାକୁ ପୂର୍ଣ୍ଣ ପ୍ରାଣରେ କାର୍ଯ୍ୟକାରୀ କରିବାକୁ ଜୀବନରେ ତାଙ୍କର ଲବେମାତ୍ର ହେଳା ନ ଥିଲା । ସତ୍ୟବାଦୀ ବିଦ୍ୟାଳୟ ଛାଡ଼ି ସେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଲେ ।

ଭାଗରେ ସେ ସର୍ବୋଦୟ ସେବାମଣ୍ଡଳରେ ନିଜକୁ ଉତ୍ସର୍ଗ କଲେ । ସବୁ ଠାରେ ଦେଖିବାକୁ ମିଳିବ ସେହି ମହାପ୍ରାଣ୍ ସଙ୍କଳ୍ପର ଉଦାରବାଣୀ "ସରକାରୀ ଚାକିରି କରିବା ନାହିଁ; ନିଜର ଭରଣପୋଷଣରେ ମନ ଦେବା ନାହିଁ । ଜନ୍ମ ହୋଇ ଦେଶକୁ ଯାହା ଦେଖିଥାଉଁ ମଲାବେଳେ ତା'ଠାରୁ ଉନ୍ନତତର ଅବସ୍ଥାରେ ଛାଡ଼ିଯିବା ଓ ସେଥିପାଇଁ ବଳିବର ପ୍ରଯତ୍ନରେ ରହିବା ।"

ସେ ଯେତେବେଳେ ପ୍ୟାରୀମୋହନ ଏକାଡେମୀ ଛାଡ଼ି ସାମାନ୍ୟ ମାସିକ ଟ୩୦୯ ବେତନରେ ସତ୍ୟବାଦୀ ବିଦ୍ୟାଳୟରେ ଶିକ୍ଷକତା କରିବାକୁ ଆସିଲେ, ସେତେବେଳେ ଏହି ବିଦ୍ୟାଳୟ ଘୋର ଦୁର୍ଦ୍ଦିନର ସମ୍ମୁଖୀନ । ପ୍ରାୟ ୧୯୧୩ ମସିହାରୁ ଆରମ୍ଭ ହେବ । ନୀଳକଣ୍ଠ ୧୯୧୧ରୁ ଯାଇ ସେଠାରେ ଆସ୍ଥାନ ଜମାଇ ବସିଲେଣି । ସତ୍ୟବାଦୀ ବିଦ୍ୟାଳୟର ସୁପରିଣ୍ଟେଣ୍ଡେଣ୍ଟ ଏମ୍. ଏ. ପାସ୍ । ଜାତି ଶୂନ୍ୟ । ନିଶଧାସ୍ତ । ସ୍କୁଲ ଶାସନରେ ବିଶୃଙ୍ଖଳ ବ୍ୟାପାର । ସେତେବେଳର 'ଉତ୍କଳ ସାହିତ୍ୟ' ଓ 'ମୁକୁର'ରେ ଲେଖା ହୁଏ 'ମୋ ଜାତି' ପ୍ରଭୃତି ବ୍ୟଙ୍ଗାତ୍ମକ ଦୀର୍ଘ ପ୍ରବନ୍ଧାବଳୀ ଯାହାକୁ ସବୁ କେନ୍ଦ୍ର କରି ଗଢ଼ି ଉଠିଥିଲା 'ଜାତି ଆନ୍ଦୋଳନ' । ତାହା ସହିତ ଏହି ସଂସ୍କାର ନିଷ୍କାର ବାସ୍ତବ ପରିପ୍ରେକ୍ଷୀ ରୂପେ ବିକଶିତ ହେଲା ସତ୍ୟବାଦୀ ବିଦ୍ୟାଳୟର ନବ ନବ କର୍ମରାଜି—ଯଥା ବ୍ରାହ୍ମଣେତର ଜାତିର ଛାତ୍ରମାନଙ୍କ ସହିତ ଏକତ୍ର ସଂକ୍ରଭୋଜନ ଇତ୍ୟାଦି ।

ସତ୍ୟବାଦୀର ଚାରିପାଖେ ଥିବା ରକ୍ଷଣଶୀଳ ବ୍ରାହ୍ମଣ୍ୟର ନେତୃବୃନ୍ଦ ଏହି ସବୁ 'ଅଘଟନ' ଦେଖି କ୍ରୋଧରେ ଉତ୍ତେଜିତ ହୋଇ ଉଠିଲେ । ଫଳରେ ବିରାଟ ସ୍କୁଲଘର ଅଗ୍ନିଦେବତାଙ୍କ ସଂସ୍ପର୍ଶ ଲାଭ କରି ପୋଡ଼ି ଛାରଖାର ହୋଇଗଲା । ପାଠାଗାର ବି ପୋଡ଼ି ପାଉଁଶ ହୋଇଗଲା । ବାକି ଠିଆ ହୋଇ ରହିଥିଲା ଯେଉଁ ଅର୍ଦ୍ଧଦଗ୍ଧ ଇଟାକାନ୍ଥ ତାହା ମଧ୍ୟ ଗୋଟିଏ ଭୟଙ୍କର ଝଡ଼ତୋଫାନରେ ଧୂଳିସାତ୍ ହୋଇଗଲା । ଯେଉଁ ଉନ୍ମୁକ୍ତ ସ୍କୁଲଘର ତିଆରି ହେଉଥିଲା ଛାତ୍ରାବାସ ନିମନ୍ତେ ସେହିଠାରେ ପାଠପଢ଼ା କାମ ଚାଲିଥାଏ । ସତ୍ୟବାଦୀ ବିଦ୍ୟାଳୟ ସେତେବେଳେ ଦର୍ଶକମାନଙ୍କ ଚକ୍ଷୁକୁ ଅଶ୍ରୁସିକ୍ତ କରୁଥିଲା । ଏହି ଅଶ୍ରୁସିକ୍ତ ବେଦନା ଏ ନୈରାଶ୍ୟ ମଧ୍ୟରେ ମୁଣ୍ଡ ଟେକି ଆସ୍ତେ ଆସ୍ତେ ଠିଆ ହେଉଥିଲା ସତ୍ୟବାଦୀ ବନବିଦ୍ୟାଳୟର ବିରୋଧୀ ଏକମହଲା କୋଠା । ଏତିକିବେଳେ ନୀଳକଣ୍ଠ ଦାସ ଓ ଚରିତ୍ରବାନ ରାମଚନ୍ଦ୍ରଙ୍କ ସହିତ ଆବିର୍ଭାବ ହେଲା ହରିହରଙ୍କର । ରାମଚନ୍ଦ୍ର ରଥଙ୍କୁ 'ଚରିତ୍ରବାନ' ନ କହି ଆଉ କୌଣସି ବିଶେଷ ବିଶେଷଣରେ ନାମିତ କରିଥିଲେ ଅଧିକ ସୁନ୍ଦର ଓ ମୂଲ୍ୟଯୁକ୍ତ ହୋଇ ନ ଥାନ୍ତା । କାରଣ ସେ ବୋର୍ଡ଼ କଚେରୀରେ ଉତ୍କୋଚ ଗ୍ରହଣ କରି ନିଜ ଆତ୍ମାକୁ କଳୁଷିତ କରିବା ଅପେକ୍ଷା ମାସିକୁ ଟ ୬ ବେତନରେ ସତ୍ୟବାଦୀ ବିଦ୍ୟାଳୟରେ ଅଯାଚିତ ଭାବରେ ଶିକ୍ଷକତା କରିବାକୁ ଶ୍ରେୟ ମନେ କରିଥିଲେ ।

ଆଗ୍ରହୀଙ୍କ ସମ୍ବନ୍ଧରେ ସତ୍ୟବାଦୀ ସ୍କୁଲର ରିପୋର୍ଟରେ ଲେଖା ଯାଇଛି, Another worker Babu Harihar Das so well known in Cuttack for his ability and success as a teacher in the P. M. Academy, resigned his post there and entered our staff. ଅର୍ଥାତ୍ ଅନ୍ୟତମ କର୍ମୀ ବାବୁ ହରିହର ଦାସ, ଯେ କି ପ୍ୟାରୀମୋହନ ଏକାଡେମିର ଶିକ୍ଷକ ହିସାବରେ କୃତିତ୍ୱ ଓ ସଫଳତା ଅର୍ଜନ କରି କଟକରେ ପ୍ରସିଦ୍ଧି ଲାଭ କରିଥିଲେ, ସେ ଆସି ଆମ୍ଭମାନଙ୍କ ଶିକ୍ଷକବର୍ଗଙ୍କ ସଙ୍ଗେ ମିଶିଲେ ।

ଶୁଆଣ୍ଡ ନଈକୂଳ ସେ ଦିନ ଚନ୍ଦ୍ରସ୍ନାତ ରଜନୀରେ ଯେଉଁ ସାଧୁ ସଙ୍କଳ୍ପ ଉଦ୍ଭାସି ଫଳରେ ସତ୍ୟବାଦୀ ବିଦ୍ୟାଳୟ ପ୍ରତିଷ୍ଠିତ ନ ହୋଇଥିଲେ ହରିହର ଗୋପବନ୍ଧୁ ଓ ନୀଳକଣ୍ଠଙ୍କ ସଙ୍ଗରେ ସେହି ପରିକଳ୍ପିତ ବିହାରର କର୍ମୀ ହୋଇ ସାରିଥିଲେ । ବର୍ତ୍ତମାନ କେବଳ ସେହି କର୍ମର ଆବାହନ । ଏହା ପୂର୍ବରୁ ଅଳ୍ପ କେତେ ଦିନ ପାଇଁ ଗୋପବନ୍ଧୁଙ୍କ ସହକର୍ମୀ ହୋଇ ସେ ନୀଳଗିରି ହାଇସ୍କୁଲରେ ଶିକ୍ଷକତା କରିଥିଲେ । ଗୋପବନ୍ଧୁ ଥିଲେ ସେହି ସ୍କୁଲର ପ୍ରଧାନ ଶିକ୍ଷକ । ଏହି ଠାରେ ହରିହରଙ୍କର ବିଶ୍ୱଜନୀନ ସେବା ଭାବର ପ୍ରଥମେ ନିଦର୍ଶନ ଦେଖିବାକୁ ମିଳେ । ଏହି ଠାରେ ସେ ଜଣେ ଅପରିଚିତ ଓ ଅଜ୍ଞାତ ବ୍ୟକ୍ତିର ଶବକୁ ନିଜ କାନ୍ଧରେ ବୋହି ନେଇ କିପରି ଶ୍ମଶାନରେ ତାହାର ଶେଷକ୍ରିୟା ସମ୍ପାଦନ କରିଥିଲେ ତାହାର ବିଶେଷ ବିବରଣୀ ଉଲ୍ଲେଖ କରିବା ନିଷ୍ପ୍ରୟୋଜନ । ଗୋପବନ୍ଧୁ ସତ୍ୟବାଦୀ ବିଦ୍ୟାଳୟ ପରି ଗୋଟିଏ ବିଦ୍ୟାଳୟ ଠାରେ ସ୍ଥାପନ କରିବାର ଅଭିଳାଷ ପୋଷଣ କରି ନାନା ଆୟୋଜନରେ ଲାଗି ଗଲେ । କିନ୍ତୁ ସେତେବେଳର ଗଡ଼ଜାତ ରଜା ତଥା ପଲିଟିକାଲ ଏଜେଣ୍ଟଙ୍କର ଏହିପରି ଉଦାର ଓ ଉନ୍ନତ ଶିକ୍ଷାଲକ୍ଷ୍ୟ ପ୍ରତି ବା କାହିଁକି ସହାନୁଭୂତି ଜାଗି ଉଠିବ ? ଫଳରେ ଗୋପବନ୍ଧୁ ଓ ହରିହରଙ୍କୁ ସେହି ବିଦ୍ୟାଳୟରୁ ଚିରବିଦାୟ ନେବାକୁ ପଡ଼ିଥିଲା ।

ସତ୍ୟବାଦୀ ବିଦ୍ୟାଳୟରେ ସେ ଆସି ଯୋଗଦେବା ପରଠାରୁ ବିଦ୍ୟାଳୟ ରୂପାନ୍ତର ଲାଭକଲା । ମାଟ୍ରିକ କ୍ଲାସ ଖୋଲିବା ନିମନ୍ତେ କଲିକତା ବିଶ୍ୱ-ବିଦ୍ୟାଳୟକୁ ଦରଖାସ୍ତ କରାଗଲା । ନୂତନ ବୋର୍ଡ଼ିଂର ବ୍ଲକ ସବୁ ତିଆରି କରା ଗଲା । କ୍ରମେ ଛାତ୍ରସଂଖ୍ୟା ଦ୍ରୁତଗତିରେ ବୃଦ୍ଧିଲାଭକଲା । ସତ୍ୟବାଦୀ ବିଦ୍ୟା-ଳୟର ବିଶେଷତ୍ୱ ହେଲା ଏହାର ଛାତ୍ରବାସ । ରିପୋର୍ଟରେ ଏହି ଛାତ୍ରାବାସ ସମ୍ପର୍କରେ ପ୍ରଥମ କଥା ହେଲା residential School is our goal ଗୋଟିଏ ଆବାସିକ ବିଦ୍ୟାଳୟ ପ୍ରତିଷ୍ଠା କରିବା ହେଲା ଆମ୍ଭମାନଙ୍କର ଲକ୍ଷ୍ୟ । ଏହି ଛାତ୍ରାବାସର ତତ୍ତ୍ୱାବଧାରକ ହେବା ନିମନ୍ତେ ସେହିପରି ଜଣେ କୃତୀ ପୁରୁଷ ଆବଶ୍ୟକ—ଯାହାଙ୍କର ମାନସିକ ଶାରୀରିକ ଓ ଆଧ୍ୟାତ୍ମିକ ସଂଯମ ସନ୍ଦେହା

ଗତ ହୋଇଥିବ, ଯେ ଚରିତନିଷ୍ଠାରେ ହୋଇଥିବେ ସମସ୍ତଙ୍କର ପୂଜାର୍ହ ଏବଂ ଯାହାଙ୍କର ଶାସନକ୍ଷମତା ବିଶୁଦ୍ଧତାର ଚତୁଃସୀମା ଅତିକ୍ରମ କରି ଆକାଶଚୁମ୍ବୀ ହୋଇଥିବ, ଏବଂ ଯେ କୌଣସି ପ୍ରକାର ଦଣ୍ଡବିଧାନ ନକରି କେବଳ କେତୋଟି ସାଧୁ ଭର୍ତ୍ସନାବାଣୀ ଦ୍ୱାରା (ଯଥା ଅସତ୍ୟ ଓ ଦୁଷ୍ଟଛେଳ) ଅପରାଧୀ ବାଳକ ଉପରେ ଅତ୍ୟନ୍ତ ପ୍ରଭାବ ବିସ୍ତାର କରି ତା ଜୀବନର ପାପକଳୁଷ ବିଧୌତ କରି ପାରିବେ । ଏପରି ଜଣେ ଆଦର୍ଶ ତତ୍ତ୍ୱାବଧାରକ ଗୋପବନ୍ଧୁ ଓ ନୀଳକଣ୍ଠଙ୍କ ବନ୍ଧୁବର୍ଗରେ ହେଲେ ହରିହର ଦାସ । ନୀଳକଣ୍ଠ ସ୍କୁଲର ହେଡ୍‌ମାଷ୍ଟ୍ରେ ସୁପରିଣ୍ଟେଣ୍ଡେଣ୍ଟ ହୋଇ ରହିଲେ । ଅଥଚ ସ୍କୁଲ ତଥା ବୋର୍ଡ଼ିଂରେ ସର୍ବମୟ କର୍ତ୍ତା । କିନ୍ତୁ ହରିହର ଦାସ ହେବେ ଛାତ୍ରାବାସର ଆଗ୍ଭର୍ଯ୍ୟ । ସ୍ୱର୍ଗତ ଚନ୍ଦ୍ର-ଶେଖର ମିଶ୍ର ତାଙ୍କର ସତ୍ୟବାଦୀରେ ସାତବର୍ଷ ନାମକ ଅତି ଉପାଦେୟ ଗ୍ରନ୍ଥରେ ଏ ସମ୍ବନ୍ଧରେ ଉଲ୍ଲେଖ କରି ଅଛନ୍ତି, "ସେ ବର୍ଷ ନୀଳକଣ୍ଠବାବୁଙ୍କର ନାମ ହେଡ୍-ମାଷ୍ଟର ଏବଂ ବୋର୍ଡ଼ିଂ ସୁପରିଣ୍ଟେଣ୍ଡେଣ୍ଟ ଘୋଷିତ ହେଲା । ହରିହରଙ୍କୁ ଆଗ୍ଭର୍ଯ୍ୟ ଉପାଧି ଦିଆଗଲା । ସେ ଛାତ୍ରାବାସର ସମସ୍ତ ଭଲ ମନ୍ଦର ଭାର ନେଇଥିଲେ । ତାଙ୍କର ସ୍ୱଭାବ ସୁଲଭ ସେବା ପରାୟଣତା ଯୋଗୁଁ ସେ ଛାତ୍ରାବାସକୁ ଗୃହପରି କରି ପକାଇଥିଲେ ।"

ଆଗ୍ଭର୍ଯ୍ୟଙ୍କ କାର୍ଯ୍ୟକଳାପର ସୀମା ନାହିଁ । ତାଙ୍କର ରହିବା ଘରଟି ଗୋପବନ୍ଧୁଙ୍କ ମୃତ୍ୟୁଶଯ୍ୟା ପ୍ରକୋଷ୍ଠରେ । ସେହି ଘରଟି ଅବଶ୍ୟ ଆଜି ସେହି ପରି ଅବସ୍ଥାରେ ନାହିଁ । ତାର ରୂପାନ୍ତର ଘଟିଛି । କିନ୍ତୁ ସେହି ଚେନାଏ ଜାଗା ଆଜି ହରିବାବୁଙ୍କ ଅବସ୍ଥାନ ଓ ଗୋପବନ୍ଧୁବାବୁଙ୍କ ମୃତ୍ୟୁ ଯୋଗୁ ଅମର ଓ ଅକ୍ଷୟ ହୋଇ ରହିଅଛି । ଏହି ପ୍ରକୋଷ୍ଠର ବାରଣ୍ଡାଟି ଗୋଟିଏ ତ୍ରିଭୁଜାକାର କ୍ଷେତ୍ର ପରି । ପ୍ରକୋଷ୍ଠ ମଧ୍ୟରେ ଆଗ୍ଭର୍ଯ୍ୟଙ୍କର ଖଣ୍ଡେ ଦିଖଣ୍ଡ ଅତି ସାଧାରଣ ଆସବାବ୍‌ପତ୍ର ଖଣ୍ଡେ ଭଙ୍ଗା ଦଦରା ଟ୍ରଙ୍କ ଏବଂ ଆଉ ଖଣ୍ଡେ ଅଲଣ୍ଠି । ସେଥିରେ ଏଭଳିଥାଏ ଅତି ଶୁଭ୍ର ଓ ପରିଷ୍କାର ପରିଚ୍ଛନ୍ନ ଲୁଗା ଓ କମିଜ୍ । କିନ୍ତୁ ବର୍ଷକ ବାରମାସ କଟିଯାଏ ସେହି ବାରଣ୍ଡାରେ । ପ୍ରଖରତ ଓ ସୂକ୍ଷ୍ମାଗ୍ର ଦୃଷ୍ଟି ହେଉଥାଏ ଚତୁର୍ଦ୍ଦିଗରେ ଅଛନ୍ନ ହୋଇ ରହିଥିବା ଛାତ୍ରାବାସର ବ୍ଲକ୍ ମାନଙ୍କରେ । A. B. C. D. D' Block ଟା ଅବଶ୍ୟ ସିଦ୍ଧବଉଳଙ୍କ ପାଖରେ । ହରିବାବୁଙ୍କ ବାସାଠାରୁ ପ୍ରାୟ ଦୁଇ ଫର୍ଲଙ୍ଗ ଦୂର । ତଥାପି କିଏ କେତେବେଳେ ଆସି ଡାକିବ । ସେଥିପାଇଁ ପ୍ରସ୍ତୁତ ଥିବା ଦରକାର । ତା ପରେ ନିକଟବର୍ତ୍ତୀ ଛାତ୍ରାବାସରୁ କେତେବେଳେ କେଉଁ ବାଳକରୁ ଆକସ୍ମିକ ଡକରା ଆସିବ, ତା ବା କିଏ କହି ପାରିବ ? ସମସ୍ତଙ୍କ ଉପରେ ଆଗ୍ଭର୍ଯ୍ୟଙ୍କର ସଜାଗ ଦୃଷ୍ଟି । ଶିଷ୍ୟମାନଙ୍କର ସେବା କରିବା ନିମନ୍ତେ ସର୍ବଦା ତତ୍ପର ଆଗ୍ଭର୍ଯ୍ୟ ମହାଶୟ

ପିଲମାନଙ୍କର ପାଠପଢ଼ା ଦେଖିବାଠାରୁ ·ଶ୍ରେଣୀପ୍ରକୋଷ୍ଠରେ ( Sick-Room) ସେମାନଙ୍କର କାଛୁକୁଣ୍ଡିଆ ଧୋଇବା ପର୍ଯ୍ୟନ୍ତ ସବୁ କାମ ନିପୁଣତାର ସହିତ କରିଥାନ୍ତି । ଶାରୀରିକ ପ୍ରବଳ ଜର ଓ ଶୋଷ ହେଲେବି, ଆଚାର୍ଯ୍ୟଙ୍କ ଆଖିକି ନିଦ ନାହିଁ । କଳାହାଣ୍ଡିରୁ ନୂଆହୋଇ ଆସିଥିବା ବଶୀର ହଇଜା ହେଲାତ, ହରିବାକୁ ହୋମିଓପାଥିକ ଔଷଧ ବାକ୍ସ ଧରି ହାଜର । ପିଲାଙ୍କ ସଙ୍ଗେ ସ୍ନାନ ପ୍ରାକାର ସବୁ । ଯେପରି ପିତୃ ପ୍ରଥମ । ପିଲାମାନଙ୍କର ସୁଖ ସମ୍ପର୍କରେ ନିଜର ଆତ୍ମାକୁ ମିଶାଇ ଦେଇ ହରିବାକୁ ଆପଣାର ନିଜର ସୁଖ ଦୁଃଖ ଟିକିକ ମଧ୍ୟ ବିସ୍ମୃତ ହୋଇ ଯାଇଥିଲେ । ପିଲାଙ୍କ ଛଡ଼ା ତାଙ୍କର ଅନ୍ୟ ଚିନ୍ତା କିମ୍ବା ଉଦ୍‌ବେଗ କିଛି ନଥିଲା ।

ଆଚାର୍ଯ୍ୟଙ୍କ କର୍ତ୍ତବ୍ୟର ପରିଧି ନିର୍ଦ୍ଦିଷ୍ଟ ହୋଇରହିଥିଲା ଏହିପରି ଭାବରେ ସ୍କୁଲ ରିପୋର୍ଟରେ.—

(କ) ଛାତ୍ରମାନଙ୍କୁ ଘଣ୍ଟାକରୁ ଅଧିକ ସମୟ ପର୍ଯ୍ୟନ୍ତ ଛୁଟିଦେବ ।

(ଖ) ଛାତ୍ରାବାସରେ କିଏ କେଉଁ ବଖରାରେ ଏବଂ ନିର୍ଦ୍ଦିଷ୍ଟ ଭାବରେ କେଉଁ ସ୍ଥାନରେ ରହିବ ତାହା ସ୍ଥିର କରିବା । ମନିଟର ନିର୍ବାଚନରେ ମୁଖ୍ୟ ଅଂଶ ଗ୍ରହଣ କରିବା । କିଏ କେଉଁ ବଖରାରେ ମନିଟର ହେବ ତାହା ବୁଝିବା **and see to the proper tending nursing and treatment of patients in the hostel** ଅର୍ଥାତ୍ ଛାତ୍ରାବାସରେ କେହି ଛାତ୍ର ରୋଗାକ୍ରାନ୍ତ ହେଲେ ସେମାନଙ୍କର ସେବା ସୁଶ୍ରୂଷାର ବ୍ୟବସ୍ଥା କରିବା

(ଗ) ବ୍ଲକ ଶିକ୍ଷକ ଏବଂ ମନିଟରମାନଙ୍କ କାର୍ଯ୍ୟକଳାପ ତତ୍ତ୍ୱାବଧାନ କରିବା । ଅତ୍ୟନ୍ତ ଜଟିଳ ବିଷୟମାନଙ୍କ ସମ୍ବନ୍ଧରେ ଏମାନଙ୍କ ସହିତ ପରାମର୍ଶ କରିବା ।

ସତ୍ୟବାଦୀ ବିଦ୍ୟାଳୟର ଅନନ୍ୟ ବୈଶିଷ୍ଟ୍ୟ ଥିଲା ଏହାର ଜନସେବା କାର୍ଯ୍ୟ । ଏହାର ପୁରୋଧା ଗୋପବନ୍ଧୁ ଥିଲେ ଜନ-ସେବାର ମୂର୍ତ୍ତି ପ୍ରତୀକ । ଏହାର ପ୍ରଧାନ ଶିକ୍ଷକ ନୀଳକଣ୍ଠ ଦାସ ଥିଲେ ନିକଟବର୍ତ୍ତୀ ଗ୍ରାମମାନଙ୍କର ହଇଜାରେ ଆକ୍ରାନ୍ତ ହୋଇ ପଡ଼ିଥିବା ଲୋକମାନଙ୍କର ପରମ ଆଶ୍ରୟ ସ୍ଥଳ । ଲୋକେ ତାହାଙ୍କୁ ଜନ୍ତୁଦେଖି କାଳେ ଫେରିଯିବେ ବୋଲି ଯେଉଁ ନୀଳକଣ୍ଠ ସର୍ବସ୍ୱ-ତ୍ୟାଗୀ ଶିକ୍ଷକ ରାମଚନ୍ଦ୍ରଙ୍କ ସହିତ ଲଣ୍ଠନ ଜାଳି ଘୋର ବୃଷ୍ଟି ମଧ୍ୟରେ ବାହାରେ ଶୋଉଥିଲେ ଏହି ହେଉଛନ୍ତି ସେହି ସେବାପରାୟଣ ନୀଳକଣ୍ଠ । ଏହି

ନୀଳକଣ୍ଠଦାସଙ୍କ ପ୍ରବେଚନାରେ ହରିହର ଯାଇଥିଲେ ରଥଯାତ୍ରା ସମୟରେ ଯାତ୍ରୀମାନଙ୍କ ସେବା କରିବା ନିମନ୍ତେ । ୧୯୧୩ ମସିହାର ରଥଯାତ୍ରା କାଳୀନ ଏହି ସ୍ୱେଚ୍ଛାସେବକତା କାର୍ଯ୍ୟରେ ଅତ୍ୟନ୍ତ ପ୍ରୀତ ହୋଇ ସେ ସମୟର ଜିଲ୍ଲା କଲେକ୍ଟର ରମାବଲ୍ଲଭ ମିଶ୍ର ଉଲ୍ଲେଖ କରିଥିଲେ 'your volunteers did splendid work yester-day for which I am very thankful "ତୁମ୍ଭର ସ୍ୱେଚ୍ଛାସେବକ ମାନେ କାଲି ଯେଉଁ ଚମତ୍କାର କାମ କଲେ ସେଥିପାଇଁ ମୁଁ କୃତଜ୍ଞ" । ଏହି କୃତଜ୍ଞତା ପାଇଁ ଏକମାତ୍ରଭାବରେ ଦାୟୀ ସତ୍ୟବାଦୀ ବିଦ୍ୟାଳୟରୁ ପଠା ହୋଇଥିବା ସ୍ୱେଚ୍ଛାସେବକ ଦଳର ନେତା ଆଗ୍ରୁଫି ଶ୍ରୀ ହରିହର ଦାସ ।

ଜନସେବାକୁ ଛାତ୍ରମାନଙ୍କର ଦୈନନ୍ଦିନ ଜୀବନରେ ଏକ ଅପରିହାର୍ଯ୍ୟ ଅଙ୍ଗ ରୂପେ ଅନ୍ତର୍ଭୁକ୍ତ କରିବା ନିମନ୍ତେ ଉଦ୍ୟୋକ୍ତାମାନଙ୍କର ପ୍ରାଣରେ ଗଭୀର ଆକୁଳତା ଥିଲା । ସେଥିପାଇଁ ବ୍ୟବସ୍ଥା କରାଯାଇଥିଲା—ଛାତ୍ରାବାସରେ ଛାତ୍ରମାନେ ରୋଗରେ ଆକ୍ରାନ୍ତ ହେଲେ ତାଙ୍କର ସାଥି ଭାଇ ଛାତ୍ରମାନେ ପାଳିକରି ସେମାନଙ୍କର ସେବା ସୁଶ୍ରୁଷା କରିବେ—ସେମାନଙ୍କୁ କେବଳ ଔଷଧ ଦେବେ ନାହିଁ—ସେମାନଙ୍କ ପାଇଁ ପଥ୍ୟ ନିଜ ହାତରେ ପ୍ରସ୍ତୁତ କରି ଦେବେ ଏବଂ କେଉଁ ରୋଗୀର ଅବସ୍ଥା ଉପରେ ତାହା ପରଦିନ ପାଳିକରୁଥିବା ଛାତ୍ରମାନଙ୍କ ସୁବିଧା ସକାଶେ ଗୋଟିଏ ନିର୍ଦ୍ଦିଷ୍ଟ ଖାତାରେ ଲେଖି ରଖୁଥିଲେ । କିନ୍ତୁ ଏ ସବୁ କାହାର ନିର୍ଦ୍ଦେଶରେ ଛାତ୍ରାବାସରେ ସମ୍ପନ୍ନ ହେଉଥିଲା ? କିଏ ପ୍ରକୃତ ରୋଗୀଛାତ୍ରମାନଙ୍କର ହାହାକାର ନିଜ ଅନ୍ତର ମଧ୍ୟରେ ପ୍ରତିଧ୍ୱନିତ ହେବାର ଶୁଣି ପାରୁଥିଲେ ? କାହା ଯୋଗୁ ଛାତ୍ରମାନେ ଏତେ ବଡ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ଅତି ଆନନ୍ଦର ସହିତ କରୁଥିଲେ ? କାହା ଯୋଗୁଁ ଦୁଇ ଜଣ ଛାତ୍ର ହୋମିଓପାଥି ଏବଂ କବିରାଜି ଚିକିତ୍ସାରେ ଅତ୍ୟନ୍ତ ନୈପୁଣ୍ୟ ଲାଭ କରିଥିଲେ ? ଏ କୃତିତ୍ୱ କେବଳ ସେବାନୁରତ ଓ ଅନୁକମ୍ପା ପ୍ରବଣ ଆଗ୍ରୁଫି ହରିହର ଦାସଙ୍କ ସାଧୁ ପ୍ରବେଚନା ବ୍ୟତୀତ ଆଉ କାହାର ହୋଇ ପାରେ ? ସତ୍ୟବାଦୀ ବିଦ୍ୟାଳୟର ଶିକ୍ଷାର ଅନ୍ୟତମ ଲକ୍ଷ୍ୟଥିଲା ଲୋକସେବା । କେବଳ ବହିରୁ ପାଠ ମୁଖସ୍ଥ କରି କିଛି ଲାଭ ନାହିଁ । ଲୋକଙ୍କର ସୁଖ ଦୁଃଖକୁ ନିଜର ଅନୁଭୂତିର ପରିଧିକୁ ନେବାକୁ ହେବ । ସେମାନଙ୍କ ସୁଖ ଦୁଃଖ ଉପରେ ଦୃଷ୍ଟି କରିବାକୁ ହେବ ତାହାର ଯଥାଶକ୍ତି ଚେଷ୍ଟା କରିବାକୁ ହେବ । ଏହାହିଁ ବିଦ୍ୟାଲାଭର ସର୍ବଶ୍ରେଷ୍ଠ ସୋପାନ ଏବଂ ଏହାକୁହିଁ କୁହାଯାଏ ଲୋକସେବା । ଆଗ୍ରୁଫି ଭାବରେ ସେ କେବଳ ଶିଷ୍ୟମାନଙ୍କର ଯତ୍ନ ନେଉନଥିଲେ, କେତେକ ଗୁରୁଙ୍କର ମଧ୍ୟ ପ୍ରତି-ପୋଷଣର ଦାୟିତ୍ୱ ନେଇଥିଲେ । ସେ ଆସିବାର ଛଅ ସାତମାସ ପରେ ଆସି ଏହି ବିଦ୍ୟାଳୟରେ ଯୋଗ ଦେଲେ ଶ୍ରୀ ଗୋଦାବରୀଶ ମିଶ୍ର । ଶୁଆଣ୍ଡ ନଇକୁଳ ସିଂହପୁର ସଂସ୍ପର୍ଶରେ ସେ ପରେ ଆସିଲେ ମଧ୍ୟ ସତ୍ୟବାଦୀ ବିଦ୍ୟାଳୟର ସେ

ପୂର୍ବରୁ ଜଣେ ପରିକଳ୍ପିତ ଓ ପରପ୍ରସ୍ତୁତ ଆଜୀବନ ସଭ୍ୟ ଥିଲେ । ସେ ଆସୁ ଆସୁ ସତ୍ୟବାଦୀ ବନବିଦ୍ୟାଳୟର ବୃକ୍ଷ, ଲତା, ଗୁରୁ ଓ ଶିଷ୍ୟ ମାନଙ୍କୁ ଆପଣାର କରିନେଲେ । କବିତା ଜୀବନର ହେଲେ ମଧୁସ୍ରାବୀ କୋକିଳ । ତାଙ୍କ ସହିତ ହରିହରଙ୍କର ସମ୍ପର୍କ ଘନିଷ୍ଠ ହୋଇ ଉଠିଲା । ତାଙ୍କର ପିଲାମାନେ ହରିହରଙ୍କୁ ଡାକିଲେ 'ମାମୁଁ' । ଗୋଦାବରୀଶ ଅସ୍ତବ୍ୟସ୍ତରେ ଥିଲେ ଜଣେ ଅବହେଳାପ୍ରିୟ ଯୁବକ । ତାଙ୍କୁ ସମସ୍ତେ ବସି ଠିକ୍ କଲେ ଯେ 'ଗୋଦାବରୀଶଙ୍କ ପରିବାରର ଆୟବ୍ୟୟ ନିୟନ୍ତ୍ରଣ କରିବେ ହରିବାବୁ' । ହରିବାବୁ ତାଙ୍କ ପରିବାରର ଯେତିକି ମାସିକ ଖର୍ଚ୍ଚ ହେବ ବୋଲି ଲେଖି ଜଣାଇବେ ଗୋଦାବରୀଶଙ୍କୁ ସେତିକିମାତ୍ର ଦିଆଯିବ । ଏଥିରୁ ସ୍ପଷ୍ଟରୂପେ ସୂଚିତ ହେବ ସତ୍ୟବାଦୀ ସ୍କୁଲର ଅର୍ଥନୈତିକ ସଂସ୍ଥାକୁ ସେ କିପରି ପ୍ରଭାବିତ କରି ରଖିଥିଲେ । ବିଦେଶରୁ ଆସୁଥିବା ଛାତ୍ରମାନଙ୍କର ଅଭିଭାବକମାନେ ତାଙ୍କଠାରେ ପିଲାମାନଙ୍କୁ ସମର୍ପଣ କରିଦେଇ ବିଦାୟ ନେଉଥିବେଳେ କହିଯାନ୍ତି, ଆଜ୍ଞା ଆମେ ଆସୁଛୁ । ଏହି ପିଲାଙ୍କର କେବଳ ଚରିତ୍ର କିମ୍ବା ପାଠପଢ଼ା ନୁହେଁ ଏହାଙ୍କର ଆର୍ଥିକ ସ୍ୱଚ୍ଛଳତା ମଧ୍ୟ ଆପଣଙ୍କୁ ଦେଇଗଲୁ । ଆପଣ ଏମାନଙ୍କୁ ଯେପରି ଭାବରେ ଚଳାଇବେ, ଏମାନେ ସେହିପରି ଭାବରେ ଚଳିବେ ।" ମାତ୍ର ଏତିକି କହି ସେମାନଙ୍କ ପିଲାମାନଙ୍କ ଯାବତୀୟ ମାସିକଖର୍ଚ୍ଚ ୫ ୧୦ ପର୍ଯ୍ୟନ୍ତ ଆଚାର୍ଯ୍ୟଙ୍କୁ ଦେଇଯାନ୍ତି । ସେ ମଧ୍ୟ ଏହି ଟଙ୍କାର ଦୈନନ୍ଦିନ ଖର୍ଚ୍ଚ ତାଙ୍କ ଟିପାଖାତାରେ ଲେଖି ରଖନ୍ତି ।

ସେ ନୀଳକଣ୍ଠ, ଗୋଦାବରୀଶ କିମ୍ବା କୃପାସିନ୍ଧୁଙ୍କ ପରି ମନୀଷୀ, କବି କି ଐତିହାସିକ ନଥିଲେ । କିନ୍ତୁ ସାହିତ୍ୟ ମାଧୁରୀ ତାଙ୍କ ମର୍ମକୁ ସ୍ପର୍ଶ କରୁଥିଲା- ତାଙ୍କର ପ୍ରାଣକୁ ଝଙ୍କାରିତ କରୁଥିଲା, ତାହା ନହେଲେ ସେ କାହିଁକି ଗୀତା ଉପରେ ନିଜର ଲେଖନୀ ଚାଳନ କରିଥାନ୍ତେ । ଉପନିଷଦର ଓଡ଼ିଆ ଅନୁବାଦ ବା କାହିଁକି କରିଥାନ୍ତେ ? କାହିଁକି ବା ସେଦିନ ସେ ଏକାଧାରରେ ଡାଇନିଂହଲ୍‌ର ( Dining Hall ) ଶିକ୍ଷକମାନେ ବସିଥିବା ଆସନରେ ବସି ନୀଳକଣ୍ଠଙ୍କ 'ଶିକ୍ଷା କଣ' ବକ୍ତୃତାର ଉକ୍ତ ଅଂଶଟି ଶୁଣି ଆନନ୍ଦରେ ଗଦ୍ ଗଦ୍ ଓ ଚମତ୍କୃତ ହୋଇ ସମଗ୍ର ଛାତ୍ରମଣ୍ଡଳ ଉପରେ ସସ୍ନେହ ଦୃଷ୍ଟିପାତ କରିଥାନ୍ତେ ।

"ତୁମ୍ଭେ ଭାରତର ଋଷିକୁଳର ଅବତଂସ । ତୁମ୍ଭର ପୂର୍ବ ପୁରୁଷେ ପୃଥିବୀକୁ ଜ୍ଞାନାଲୋକ ଦେଇଥିଲେ । ସତ୍‌ଶିକ୍ଷା, ସରଳ ସତ୍ୟତା, ସାଧୁ ମନୁଷ୍ୟତା କଅଣ ତାହା ଜଗତକୁ ଦେଖାଇଥିଲେ । ମନେ ରଖ ସେହି ସତ୍‌ଶିକ୍ଷା ସରଳ ସତ୍ୟତା ଏବଂ ସାଧୁ ମନୁଷ୍ୟତା ପୃଥିବୀରେ ପ୍ରତିଷ୍ଠିତ କରିବା ତୁମ୍ଭ ପକ୍ଷରେ ବଡ଼ ସହଜ କଥା ନୁହେଁ । ଏହା ତୁମ୍ଭର ପୈତୃକ ସମ୍ପତ୍ତି । ଏଥିପାଇଁ ତୁମ୍ଭେ

ଅନ୍ୟଦେଶକୁ ଖୋଜିବାକୁ ଯିବାକୁ ହେବ ନାହିଁ । ପରଦ୍ୱାରରେ ଭିକ୍ଷା କରିବାକୁ ହେବ ନାହିଁ । ଏହା ତୁମ୍ଭ ରକ୍ତମାଂସରେ ରହିଅଛି । ସେ କଥା ମନେ ରଖି ଜୀବନରେ ପ୍ରସ୍ତୁତ ହୁଅ । କାମ ପାଇଁ ବିଦ୍ୟାର୍ଥୀ ହୁଅ । ଅନୁତାପ ପାଇଁ ଗୁରୁଙ୍କଠାରେ ଆତ୍ମସମର୍ପଣ କର । ବାବୁ, ଦିନ ଆସିବ ଯେଉଁ ଦିନ ତୁମେ ପ୍ରକୃତରେ ଜ୍ଞାନମାତା ଭାରତ ଦେଶର ଋଷି କୁଳ ସନ୍ତତିବୋଲି ଗର୍ବର ସହିତ ଅନୁଭବ କରିବାକୁ ସମର୍ଥ ହେବ ।"

ଏହିପରି ଆତ୍ମଶୁଦ୍ଧି ଓ ମାଳିନ୍ୟରହିତ ଚରିତ୍ରନେଇ ଆଚାର୍ଯ୍ୟ ହରିହର କର୍ମଭୂମିରେ ଅବତୀର୍ଣ୍ଣ ହୋଇଥିଲେ । ସେ ବଡ଼ ବାଗ୍ମୀ ନଥିଲେ । ବାହ୍ୟାଡମ୍ବରର ଆବଶ୍ୟକତା ତାଙ୍କର ନଥିଲା । ବିରକ୍ତି ପ୍ରକାଶ କରି କାହାକୁ ଧମକ ଦେଇ ବଶୀଭୂତ କରିବାର ଶକ୍ତି ବି ତାଙ୍କର ନ ଥିଲା । ସେ ଯୁଗ ପୁରୁଷ ଜନ୍ମରୁ ମରଣ ପର୍ଯ୍ୟନ୍ତ ଜଣେ ପ୍ରଥମ ଶ୍ରେଣୀର ସିଦ୍ଧସାଧକ ଥିଲେ ।

ତାଙ୍କର ଅଧ୍ୟାପନାର ପ୍ରଣାଳୀ ଥିଲା ବଡ଼ ମନୋମୁଗ୍ଧକର ଏବଂ ଆକର୍ଷଣୀୟ । କ୍ଲାସକୁ ସେ ଆସିଲେ ଆସ୍ତେ ଆସ୍ତେ ପଢ଼ାଇ ବସନ୍ତି ଅଙ୍କ କିମ୍ବା ଜ୍ୟାମିତି । ଯଦି କିଏ ପିଲା ଅଙ୍କ କଷି ଆସିନାହିଁ କି ଦୁଇ ଗୃହଖଣ୍ଡ କମ୍ କରି କଷି ଆସିଛି, ସେ ଯଦି ଛାତ୍ରାବାସର ଛାତ୍ର ହୋଇଥାଏ, ତାଙ୍କୁ ହରିବାବୁ ଧୀର ଗମ୍ଭୀର ଅନୁତ୍ତେଜିତ କଣ୍ଠରେ କହନ୍ତି, "ଆରେ ତୋତେ ଅଙ୍କ କଷିବାକୁ ବେଳ ନାହିଁ. ତୁ ଆଜି ସକାଳୁ କେତେଥର ଡ଼ାଇନିଂ ହଲଠାରୁ ତୋ ରୁମକୁ ଯାଇଛୁ । ଜାଣିକରି ମୋତେ କହି ପାରିବୁ, ?" ବେଶ ସେତିକି । ଆଉ କୌଣସି ଭର୍ତ୍ସନା କିମ୍ବା କର୍କଶ ବାଣୀର ପ୍ରୟୋଜନୀୟତା ନାହିଁ । ତହିଁ ପରଦିନଠାରୁ ସେ ଛାତ୍ର ଅଙ୍କତକ ଠିକ୍ କଷି ଆସିଥିବ । ସେ ଥରେ ୭ମ ଶ୍ରେଣୀକୁ ସ୍ୱାସ୍ଥ୍ୟରକ୍ଷା ପଢ଼ାଇବା ପାଇଁ ଆସି ବସିଛନ୍ତି । ଦେଖିଲେ ଜଣକ ହାତରେ ନଖସବୁ କୋଡ଼ିପରି ହୋଇଛି । ବହିଟି ବନ୍ଦକରି ଦେଇ କ୍ଲାସର ସବୁ ପିଲାଙ୍କ ନଖସବୁ ଦେଖି ଆସିଲେ । କହିଲେ ଯେ ନଖସବୁ ସରୁ ଓ ପାତଳ କରି କାଟିନଥିବ, ତାର ସ୍ୱାସ୍ଥ୍ୟରକ୍ଷା କ୍ଲାସକୁ ଆସିବାର କି ଅଧିକାର ଅଛି ? ଜ୍ୟାମିତି ପଢ଼ାଇବାରେ ତାଙ୍କପରି କେତେ ଜଣ ଶିକ୍ଷକ ବା ସେତେବେଳେ ଓଡ଼ିଶାରେ ଥିଲେ ? ସମ୍ପାଦ୍ୟକୁ ଉପପାଦ୍ୟ କହି ଏବଂ ଉପପାଦ୍ୟକୁ ସମ୍ପାଦ୍ୟ କହି ଫକୀରମୋହନ ତାଙ୍କ ଉପନ୍ୟାସରେ ପାଠକମାନଙ୍କୁ ରଙ୍ଗ ଓ ରହସ୍ୟରେ ଖେଳାଇଲାପରି ହରିହର ଖେଳାଇ ଖେଳାଇ ପିଲାମାନଙ୍କୁ ଜ୍ୟାମିତି ପଢ଼ାନ୍ତି ।

ଆଜି ଏତିକି । ଆଜି ବିଶେଷ କହିବା ଲୋଡ଼ା ନାହିଁ । ମୁଁ ଜନ୍ମଜନ୍ମାନ୍ତରେ ସେହିପରି ଜଣେ ସ୍ଥିତପ୍ରଜ୍ଞ ବ୍ୟକ୍ତିଙ୍କୁ ଶିକ୍ଷକ ରୂପେ ପାଏ, କିନ୍ତୁ ସେ ମୋ ପରି ଅଧମ ଅକ୍ଷମ ଲୋକକୁ କଦାପି ଶିଷ୍ୟରୂପେ ନ ପାନ୍ତୁ ।

# ଆଚାର୍ଯ୍ୟ ମହାଶୟଙ୍କ ଗହଣରେ

## ଅଧ୍ୟାପକ ଶ୍ରୀ ବିନୋଦ ରାଉତରାୟ

ଦୁଇଟି ମହାସମରର ନଖ ଓ ଦାନ୍ତର ଦାଗ ବହନ କରିଚି ଏହି ଜୀର୍ଣ୍ଣ ଓ ବିକ୍ଷତ ଶତାବ୍ଦୀ । ସମକାଳୀନ ମଣିଷ ମନରେ ଦ୍ୱନ୍ଦ୍ୱ ବେଦନା କମ୍ପା ଆତୁର ଆଚରଣକୁ ବିଶ୍ଳେଷଣ କରି ଦେଖିଲେ ତାର ଭୟଙ୍କର ରୂପ ସବୁରି ଆଖି ଆଗରେ ଝଲସି ଉଠୁଛି । ବିଶ୍ୱାସ ଓ ମାନବିକ ଉପାଦାନଗୁଡ଼ିକର ସର୍ବଶେଷ ଆଶ୍ରୟ ଘୃଣା, ଲୋଭ, ଅବିଶ୍ୱାସ, ହତାଶା, ଅସୂୟା, ବଞ୍ଚନା, ନୈରାଶ୍ୟ ଓ ଅବିବେକିତାର ଗଭୀର ଗହ୍ୱର ନିକଟରେ ଝୁଲୁଚି । କେଉଁ ଅଶୁଭ ମୁହୂର୍ତ୍ତରେ ତାହା ଉକ୍ତ ଗହ୍ୱରର ଅନ୍ଧକାର ଭିତରକୁ ଖସି ପଡ଼ିବ, ସେହି ଆଶଙ୍କାରେ ପ୍ରତ୍ୟେକ ଚିନ୍ତା-ପୁରୁଷ ମ୍ରିୟମାଣ । ଏହି ଭଳି ପରିପ୍ରେକ୍ଷୀରେ ଓଡ଼ିଶାର ଭୌଗୋଳିକ ସୀମାରେଖା ମଧ୍ୟରେ ଆମେ ଜଣେ ମହାନ ମଣିଷ ଦେଖୁଁ । ସୂର୍ଯ୍ୟଭଳି ତାଙ୍କର ମହତ ଜୀବନର ଆଲୋକଧାରା ଦୂର କରିଦିଏ ସମସ୍ତ ଅନ୍ଧକାର । ଦେଶ କାଳ ଓ ବ୍ୟକ୍ତି ଉପରେ ତାଙ୍କର ପକ୍ଷପାତହୀନ ଅସୀମ ପ୍ରଭାବ ପ୍ରାଣରେ ଭରିଦିଏ ଶାନ୍ତି । ସେ କାଳୋତ୍ତୀର୍ଣ୍ଣ ଚିନ୍ତାଧାରାର ଅସାମାନ୍ୟ ଆଲୋକ ବିଚ୍ଛୁରିତ କରି ଆମ ଜୀବନର ଅନ୍ଧକାରାଚ୍ଛନ୍ନ ବାସ୍ତବ ଦିଗଟି ଅବଲୀଳାକ୍ରମେ ଅତିକ୍ରମ କରନ୍ତି ।

ଦୁର୍ବାର ପ୍ରାଣଶକ୍ତିରେ ପରିପୂର୍ଣ୍ଣ ସେହି ମଣିଷର ପରିଚୟ ପ୍ରତ୍ୟେକଙ୍କ ତୁଣ୍ଡରେ ହିଁ ଅଟକି ଯାଏ—ଆଚାର୍ଯ୍ୟ ମହାଶୟ ! ସତ୍ୟବାଦୀ ବକୁଳବନର ପଞ୍ଚସଖା ମଧ୍ୟରୁ ଏକତମ ସଖା ଆଚାର୍ଯ୍ୟ ହରିହର ଦାସ । ୧୯୬୦ ମସିହା ଫେବୃୟାରୀ ମାସର ଦୁଇ ତାରିଖ ଦିନ ସେ ଆସି ପହଞ୍ଚିଲେ ଅନୁଗୋଳଠାରେ । ବେଳ-ହୋଇଥାଏ ସକାଳ ସାଢ଼େ ଆଠଟାରୁ କିଛି ଅଧିକ । ସଙ୍ଗରେ ଆସିଥିଲେ ଶ୍ରୀଯୁକ୍ତ ଗୁଣନିଧି ବାବୁ ଓ ଆଉ କେତେଜଣ କର୍ମୀ । ନଗ୍ନ ପାଦରେ ଚାଲି ଚାଲି ଏହି ଅଶୀବର୍ଷର ଋଷିପ୍ରାଣ ପୁରୁଷ ଦ୍ୱାରେ ଦ୍ୱାରେ ଭୂଦାନର ବାର୍ତ୍ତା ପ୍ରଚାର କରୁଥାନ୍ତି । ମୌଳିକ ଟ୍ରେନିଂ କଲେଜର ଫାଟକ ନିକଟରୁ ଆମେ ସମସ୍ତେ ତାଙ୍କୁ

ପାଗ୍ଲେଟି ନେଲୁ ଭିତରକୁ । ଛାତ୍ରମାନେ ପ୍ରତ୍ୟେକେ ଗୁଣ୍ଡିଏ ଲେଖାଁ ସୂତାର ମାଳା ଗଳାରେ ଲମ୍ବାଇ ଦେଇ ଭୂମିଷ୍ଠ ପ୍ରଣାମ ଜଣାଇଲେ ।

ଫେବୃଆରୀ ମାସର କଠୋର କଠିନ ଶୀତ, ସେଥିରେ ସେମାନେ ରାତିରୁ ଉଠି ନିତ୍ୟକର୍ମ ଶେଷକରି ଯାତ୍ରା ଆରମ୍ଭ କରିଥାନ୍ତି । ତଥାପି ଆଗ୍ରହୀର ଓ ଆଚରଣରେ କ୍ଲାନ୍ତିର ଚିହ୍ନ ନଥାଏ କିମ୍ବା ବାର୍ଦ୍ଧକ୍ୟର ଲୋଳିତଚର୍ମ ଓ ପକ୍ୱ ଶ୍ମଶ୍ରୁ ବିଜଡ଼ିତ ମୁଖମଣ୍ଡଳରେ ହତାଶାର ସ୍ପର୍ଶ ନ ଥାଏ । ଚକ୍ଷୁ ଦୁଇଟି ଜ୍ୟୋତିଷ୍ମାନ ! ଗୁଣନିଧି–ବାବୁଙ୍କ ପରିଚୟ ବୁଝିଲେ, ଗଳାରେ କେଉଁ ଫୁଲର ମାଳା ଲମ୍ବାଇ ଦିଆଗଲା । ଯେତେବେଳେ ପ୍ରକୃତ ସତ୍ୟର ଗୂଢ଼ ଓ ଗମ୍ଭୀର ତାତ୍ପର୍ଯ୍ୟ ଜାଣିପାରିଥିଲେ, ସେତେବେଳେ ତାଙ୍କର ମୁଖମଣ୍ଡଳ ଅପୂର୍ବ ଜ୍ୟୋତିସାଗରରେ ଉଦ୍ଭାସିତ ହୋଇଉଠିଲା ।

ପ୍ରାର୍ଥନା ଗୃହର ସୁବିସ୍ତୃତ ସତରଞ୍ଜି ଉପରେ ଆଗ୍ରହୀ ମହାଶୟ ଓ ତାଙ୍କ ସହିତ ଆସିଥିବା ଅନ୍ୟମାନେ ଆସନ ଗ୍ରହଣ କଲେ । ଏହିଠାରେ ଆଜିକାର ରହଣି । କେତେକ ଛାତ୍ରଙ୍କ ସହିତ ଆମ ମଧ୍ୟରୁ କେତେଜଣ ଶିକ୍ଷକ ମଧ୍ୟ ସେଠାରେ ସତରଞ୍ଜି ମଣ୍ଡାଇ ବସିଲୁ । ନାନା ପ୍ରକାର ଗଳ୍ପ ଓ ଆଲୋଚନାରେ କ୍ରମେ ପରିବେଶ ସରସ ହୋଇ ଉଠିଲା । ଆଗ୍ରହୀଙ୍କର ଅନଭିଯୋଗ୍ୟ ବଚନ ପରିପାଟୀ ହିଁ ସବୁଠାରୁ ଆକର୍ଷଣୀୟ । ସେ କଥା ପ୍ରସଙ୍ଗରେ ପ୍ରଶ୍ନ କଲେ, ''ଏଠାରେ ଯେଉଁ ପଞ୍ଚାବନ ଜଣ ଯୁବ ଛାତ୍ର ତାଲିମ ନେଉଛନ୍ତି, ସେମାନଙ୍କର ଭବିଷ୍ୟତ କର୍ମପନ୍ଥା କଣ ?''

ଛାତ୍ରମାନଙ୍କ ମଧ୍ୟରୁ କେହିଜଣେ ଉତ୍ତର ଦେଲେ— 'ମୋହଗ୍ରସ୍ତ ବିଭ୍ରାନ୍ତ ସାଧାରଣ ସଂସାରର ମୂଲ୍ୟ-ମାନ କ୍ରମଶଃ ଆଦର୍ଶଭ୍ରଷ୍ଟ ହୋଇ ପଡ଼ୁଚି । ଏଣୁ ଆମେ ଅନେକ ସମୟରେ ହତୋତ୍ସାହ ହୋଇ ଯାଉଚୁ । ସମାଜରେ ଆମକୁ ଯେପରି ସ୍ଥାନ ଦିଆଯାଇଚି, ସେଥିରେ ନୂତନ ଦୃଷ୍ଟି, ସୃଷ୍ଟିର ପରଖ କରିବାକୁ ସାହାସ କୁଳୁନାହିଁ ।''

''ଏବେ ମୁଁ ତମମାନଙ୍କ କଥାର ମର୍ମ ବୁଝି ପାରୁଛି । ଏଣିକି ତମେମାନେ ଧୀରେ ଧୀରେ ବେତନ ପ୍ରଭୃତିର କଥା ଉଠାଇବ । ନିଜକୁ ଶାସନ କୁଶଳୀ କର୍ମଚାରୀ ମାନଙ୍କ ସହିତ ତୁଳନା କରିବ ; କିନ୍ତୁ ମନେରଖ, ଶାସନ କ୍ଷେତ୍ରରେ ଦୁର୍ଦ୍ଦାମ ପ୍ରାଣବନ୍ତ ଆକାଂକ୍ଷା ଗୁଡ଼ିକ ରୂପାୟିତ କରିବାର ଅବସର ନ ଥାଏ । ସେମାନେ ନିୟମ ଓ ଶୃଙ୍ଖଳାର ଦାସ । କିନ୍ତୁ ଶିକ୍ଷକତାହିଁ ଏକ ଆଦର୍ଶ ଜୀବିକା । ଅପାପବିଦ୍ଧ ତରୁଣର ଅନ୍ଧକାରମୟ ଦେହ-ଦେବାଳୟ ମଧ୍ୟରେ ତମେମାନେହିଁ ଜ୍ଞାନର ପ୍ରଦୀପଶିଖା ପ୍ରଜ୍ୱଳିତ କରିବ । ଏହାହିଁ ଶିକ୍ଷକ

ଜୀବନର ଚରମ ସାର୍ଥକତା । କେତେ ଶାସନ କୁଶଳୀ କର୍ମସ୍ପୃହୀ ସେମାନଙ୍କର ବୟଃସନ୍ଧିକାଳରେ ନିଜର ସ୍ୱେଦଦେଇ ଗଢ଼ିବ"—ଆଚାର୍ଯ୍ୟ ମହାଶୟ ଏତକ କହି ମଉନ ହେଲେ ।

ଏହା ପରେ ନୀରବତା ଭଙ୍ଗକରି ଛାତ୍ରମାନେ ଅନୁରୋଧ କଲେ, ସତ୍ୟବାଦୀ ବିଦ୍ୟାଳୟର ଅଭିଜ୍ଞତା କିଛି ଶୁଣିବାପାଇଁ । ସେ କହିଲେ—"ସେ ଅଭିଜ୍ଞତା ବଡ ମଧୁର ଓ ରୋମାଞ୍ଚକର । ମୁଁ ସେଠାକାର ଛାତ୍ରାବାସର ଦାୟିତ୍ୱରେ ଥିଲି । ଛାତ୍ରାବାସରେ ରହିବାକୁ ଛାତ୍ରମାନେ ଏତେ ଭଲ ପାଆନ୍ତି ଯେ, ଛୁଟିରେ ଘରକୁ ଫିବାକୁ ଆଦୌ ମନାନ୍ତି ନାହିଁ । କୌଣସି ପ୍ରକାରର ବିଦ୍ୱେଷ ପୋଷଣ ନ କରି ସମସ୍ତେ ମିଳାମିଶି ଚଳନ୍ତି । ସଂପୂର୍ଣ୍ଣ ହୃଦୟଭରି ଭଲ ପାଇବାର ଚିହ୍ନ ପ୍ରତି କ୍ଷେତ୍ରରେ ଫୁଟିଉଠେ । ଥରେ ବୈକୁଣ୍ଠକୁ ଜ୍ୱର ହେଲା--ଡମରା ବୈକୁଣ୍ଠ ପଟ୍ଟନାୟକଙ୍କୁ । ତାର ଘରୁ ଲୋକ ଆସିଲେ ନେଇଯିବା ପାଇଁ । କିନ୍ତୁ ସେ ଜିଦ୍ କରି ଘରକୁ ଗଲାନାହିଁ । ଆଉ ଥରେ ଗୋଟିଏ ଛାତ୍ର ଘରକୁ ଯାଇଥିଲା । ସେଠାରେ ତାହାକୁ ଜ୍ୱର ହେବାରୁ, କେତେଟିଏ ଦିନ ମାତ୍ର ଘରେ ରହି ସେହି ଜ୍ୱର ଜର୍ଜରିତ ଦେହରେ ଛାତ୍ରାବାସକୁ ବାହୁଡ଼ି ଆସିଲା । ସତ୍ୟବାଦୀ କଥା ଚିନ୍ତା କଲେ ଏହିପରି କେତେକେତେ ଭୟଙ୍କର ସୁନ୍ଦର ଅଭିଜ୍ଞତା ମନ ମଧ୍ୟରେ ଉଙ୍କିମାରେ ।"

"ଆଚ୍ଛା ଆପଣଙ୍କୁ ଯଦି ବର୍ତ୍ତମାନ କୌଣସି ଏକ ହାଇସ୍କୁଲର ପ୍ରଧାନ ଶିକ୍ଷକ ପଦ ଦିଆଯାଏ, ତା ହେଲେ ଆପଣ କିପରି ଚଳାଇବେ ?"—କେହି ଜଣେ ଯୁବଛାତ୍ର ପ୍ରଶ୍ନ କଲେ । ଏହି ପ୍ରଶ୍ନର ପଛେ ପଛେ ପ୍ରଚୁର ହାସ୍ୟ ରୋଳ ସୃଷ୍ଟି ହୋଇଗଲା । ହସ ହସ ମୁହଁରେ ଆଚାର୍ଯ୍ୟ ମହାଶୟ ଉତ୍ତର ଦେଲେ— "ମୁଁ କ'ଣ ଏହି ବୟସରେ ଚଳାଇ ପାରିବି ? ତାଛଡ଼ା ମୁଁ ତ ତୁମମାନଙ୍କ ପରି ଟ୍ରେନିଂ କଲେଜରେ ତାଲିମ୍ ପାଇନାହିଁ ?"

ଆଚାର୍ଯ୍ୟଙ୍କର ଏହି ଶ୍ଳେଷଯୁକ୍ତ ଉକ୍ତି ପଛେ ପଛେ ଯେଉଁ ହାସ୍ୟରୋଳ ସୃଷ୍ଟି ହେଲା, ତାହା ଅବିସ୍ମରଣୀୟ । କିଛିର ଅନୁକମ୍ପନରେ ସମସ୍ତ ପ୍ରାର୍ଥନା ଗୃହଟି ଚହଟି ଉଠିଲା । ସେ ପୁଣି କହିଲେ, 'ମୁଁ ନୂଆକରି କଟକର ପ୍ୟାରୀ-ମୋହନ ଏକାଡେମୀରେ ଶିକ୍ଷକତା କରୁଥାଏ । ସେତେବେଳେ ବିଦ୍ୟାଳୟର ଘଣ୍ଟାଟିଏ ଦରକାର ହେଉଥାଏ । ସ୍କୁଲର କର୍ତ୍ତୃପକ୍ଷ ଏଥି ନିମନ୍ତେ ପିଲାମାନଙ୍କ ମଧ୍ୟରେ ଦୁଇଅଣା ଲେଖାଁ ପଇସାରେ ଲଟେରୀ କରି ଘଣ୍ଟାଟିଏ କିଣିବାକୁ କଳ୍ପନା କରୁଥାନ୍ତି । ଏହି ସଂପର୍କରେ ଯେତେବେଳେ ଶିକ୍ଷକ ମାନଙ୍କ ମଧ୍ୟରେ ଆଲୋଚନା ହୁଏ, ସେତେବେଳେ ମୁଁ ନୀରବ ରହେ । ଥରେ ପ୍ରଧାନ ଶିକ୍ଷକ ମୋତେ ଏ

ବିଷୟରେ ମତାମତ ବ୍ୟକ୍ତ କରିବାକୁ କହିଲେ । ମୁଁ ପରିଷ୍କାର ଭାବରେ ମନା କରି ଦେଲି । ଅପାପବିଦ୍ଧ-ତରୁଣ ଛାତ୍ରମାନଙ୍କ ମଧ୍ୟରେ ବିଦ୍ୟାଳୟର କର୍ତ୍ତୃପକ୍ଷଙ୍କ ତରଫରୁ ଲଟେରୀ କିମ୍ବା ଜୁଆଖେଳକୁ ପ୍ରଚଳନ କରାଇବା ସଂପୂର୍ଣ୍ଣ ରୂପେ ଅନୀତି ବୋଲି ମୋର ଧାରଣା । ଆଉ ଗୋଟିଏ କୌତୂହଳ ପୂର୍ଣ୍ଣ ଘଟଣା ମନେ ପଡ଼େ । ମୋତେ ଦଶମ ଶ୍ରେଣୀରେ ପଢ଼ାଇବାକୁ ଦିଆ ଯାଇଥାଏ । ଶୁଣିଲି, ସେହି ଶ୍ରେଣୀରେ କେତେଜଣ ଦୁଷ୍ଟଛାତ୍ର ଅଛନ୍ତି । ସେମାନେ କେବଳ ଫୁଟବଲ୍ ଖେଳିବାପାଇଁ ନାମ ଲେଖାଇଥାନ୍ତି । ମୁଁ ମଧ୍ୟ ସେହିକଥା ଦେଖିଲି । ପଛ ବେଞ୍ଚରେ ଯେଉଁମାନେ ବସିଛନ୍ତି, ସେମାନଙ୍କର ଖାତା ପେନ୍ସିଲ ଓ ବହି ପ୍ରଭୃତି କିଛି ନାହିଁ । ସେମାନଙ୍କଠାରୁ ବୁଝିଲି ଯେ, ସେମାନେ କିଛି ବୁଝିପାରୁ ନାହାନ୍ତି । ପାଠପଢ଼ାରେ ମନ ମଧ୍ୟ ଲାଗୁନାହିଁ । ଏହାପରେ ମୋର ସର୍ବନିମ୍ନ କର୍ତ୍ତବ୍ୟ ସ୍ଥିର କରିନେଲି । ସେମାନଙ୍କର ଘର କେଉଁ କେଉଁ ସାହିରେ ତାହା ବୁଝିନେଲି । ପ୍ରତ୍ୟେକ ଦିନ ସକାଳୁ ନିଜର ନିତ୍ୟକର୍ମ ଶେଷକରି ସେମାନଙ୍କ ମଧ୍ୟରୁ କେତେକଙ୍କୁ ଭେଟିବାକୁ ଗଲି । ବ୍ୟକ୍ତିଗତ ଭାବରେ ସେମାନଙ୍କର ଅସୁବିଧା ଦୂର କରିବାକୁ ଚେଷ୍ଟା କଲି । କିଛିଦିନ ଗଲାପରେ ସେମାନଙ୍କର ବୈଚିତ୍ର୍ୟହୀନ ଓ ନିରୁଜ୍ଜ୍ୱଳ ପଠନପ୍ରଣାଳୀ କ୍ରମଶଃ ବୈଚିତ୍ର୍ୟମୟ ହୋଇ ଉଠିଲା । ସେମାନେ ଶ୍ରେଣୀରେ ପୂର୍ବ ଅପେକ୍ଷା ଭଲ କଲେ । ସେମାନଙ୍କର ମୋ ଉପରେ ଅଗାଧ ବିଶ୍ୱାସ ଜନ୍ମିଗଲା । ନିସଂକୋଚରେ ସେମାନଙ୍କ ହୃଦୟର ଗୁପ୍ତ ଅନୁଭୂତିଗୁଡ଼ିକ ମୋ ନିକଟରେ ବ୍ୟକ୍ତ କଲେ । ଏଣୁ ମୋ ମତରେ ଶିକ୍ଷକ ଓ ଛାତ୍ର ମଧ୍ୟରେ ଏକ ପ୍ରକାର ସ୍ନେହାସିକ୍ତ ମଧୁର ସଂପର୍କ ପ୍ରତିଷ୍ଠିତ ହେବା ଉଚିତ । ଏହାହିଁ ସବୁଠାରୁ ବଡ଼ କଥା । ମୁଁ ହେଡମାଷ୍ଟର ହେଲେ ପ୍ରଥମେ ଏହି ସଂପର୍କଟି ପ୍ରତିଷ୍ଠା ପାଇଁ ଯତ୍ନବାନ ହେବି । ମୋର ସହକର୍ମୀମାନଙ୍କୁ ଏହି ଅମୂଲ୍ୟ ମନ୍ତ୍ରରେ ଦୀକ୍ଷିତ କରିବି ।"

କହୁଁ କହୁଁ ଅଶୀ ବର୍ଷର ବୃଦ୍ଧ ଲୋଳିତଚର୍ମ, ଗଳିତ ଦନ୍ତ, ପଳିତ କେଶ ଆଗ୍ରଣୀଙ୍କ କଥାବାର୍ତ୍ତା ଓ ଭାବ ଭଙ୍ଗୀରେ ଯୌବନର ଚାପଲ୍ୟ ଦେଖାଦେଲା । ସେ ହୃଦୟର ପ୍ରବଳ ଭାବାବେଗକୁ ହୁଏତ ଚାପିରଖି ନ ପାରି ଝାଡ଼-ଝଣ୍ଡ ହୋଇ ବସିଲେ । ଏହାପରେ ପ୍ରଶ୍ନ ହେଲା—"ବର୍ତ୍ତମାନର ପ୍ରଚଳିତ ପାଠ୍ୟ ପୁସ୍ତକ ବିଷୟରେ ଆପଣଙ୍କ ମତ କଣ ?" ଆଗ୍ରଣୀମହାଶୟ ଏ ସମ୍ପର୍କରେ ସଂକ୍ଷିପ୍ତ ଉତ୍ତର ଦେଲେ—"ମୁଁ ଦେଖିପାରୁଛି, ପାଠ୍ୟ ପୁସ୍ତକରେ ଲେଖକମାନେ ସେମାନଙ୍କର ପୁସ୍ତକ ଛାତ୍ର ସମାଜ ଉପରେ କି ଭଳି ପ୍ରଭାବ ପକାଇବ ସେକଥା ଚିନ୍ତା କରନ୍ତି ନାହିଁ । କେବଳ ଗଣିତ ପାଠ ବିଷୟରେ କହୁଛି । ସୁଧକଷାରେ ଆମେ ଦେଖିଛୁ ଚକ୍ରବୃଦ୍ଧି ସୁଧ ସଂପର୍କରେ ମଧ୍ୟ ଶିକ୍ଷା ଦିଆଯାଉଛି । ଏହାର ମୂଳ ଗଭୀର ତାତ୍ପର୍ଯ୍ୟପୂର୍ଣ୍ଣ ଅର୍ଥ ଗ୍ରହଣକଲେ ପିଲାମାନେ କା ଭଳି ଭଲ ବୁଝି

ଶିକ୍ଷାକରିବେ ବୋଲି ଆଶା କରିବା ? ସେଇପରି ଲଭ ଷଷ୍ଠ ଅଙ୍କରେ ବେପାରୀ କ୍ଷୀର ସହିତ ପାଣି ମିଶାଇବା ବିଷୟ ପଢ଼ା ଯାଉଛି—ଏଥିରୁ ଆମର ପିଲାମାନେ କଉଁଲ ସାଧୁତା ସଂପର୍କରେ ଧାରଣା ଅର୍ଜନ କରିବେ ? ସାହିତ୍ୟ କିମ୍ବା ଇତିହାସ ବହିରେ ପୂର୍ବ ଉତ୍କଳର ଗୌରବମୟ କାହାଣୀ ରୂପେ କାଞ୍ଚି ବିଜୟ ଓ ପଦ୍ମା-ବତୀ ହରଣ କାହାଣୀ ଯୋଡ଼ିଦିଆ ଯାଉଛି । ଏଥିରେ ଛାତ୍ର ମାନଙ୍କୁ କେଉଁ ନୈତିକ ଗୁଣ ସଂପର୍କରେ ଶିକ୍ଷା ଦିଆ ଯାଉଛି ?"

ଏହାପରେ ମଧ୍ୟାହ୍ନ ଭୋଜନ ସମୟରେ ମୋତେ ଉଠି ଆସିବାକୁ ହେଲା । ସମସ୍ତେ ମଧ୍ୟ ଉଠି ଆସିଲେ ଧୀରେ ଧୀରେ । କିନ୍ତୁ ଯନ୍ତ୍ରଣା ମୟ ଧୂସର ନିର୍ଜ୍ଜନ ପଥରେ ଆଗନ୍ତୁକଙ୍କ ସହିତ ଏହି କେତେ କୋଟି ମୁହୂର୍ତ୍ତ ଚିରଦିନ ପାଇଁ ପାଥେୟ ହୋଇ ରହିବ । ସମସ୍ତ ପ୍ରକାର ତ୍ୟାଗଦ୍ୱାରା ମହନୀୟ ଜୀବନକୁ କିପରି ଉପଭୋଗ କରାଯାଇଥାଏ, କିପରି ମହତ୍ତର ଓ କାଳୋତ୍ତୀର୍ଣ୍ଣ ସୁଖଲାଭ କରା-ଯାଇଥାଏ, ତାହାର ଉଦାହରଣ ସେ ନିଜେ ।



# "ମୋ ଦଦେଇ"

## ଡାକ୍ତର ବିକ୍ରମ ଦାସ

ହିନ୍ଦୁ ଜଗତ ପାଇଁ ପୁରୀର ଜଗନ୍ନାଥ ଅନ୍ୟ ଧର୍ମ ମାନଂକର ଦେବତା ମାନଙ୍କ ପରି ଗୋଟିଏ ମାତ୍ର ଦେବ ବିଗ୍ରହ । ଜଗନ୍ନାଥଙ୍କ ସଙ୍ଗେ ପୁରୀବାସୀ ଓ ଓଡ଼ିଶା ବାସୀଙ୍କର ଯୁଗ ଯୁଗ ଧରି କି ନିବିଡ଼ ସମ୍ପର୍କ, ଓଡ଼ିଆ ହୃଦୟରେ ଜଗନ୍ନାଥଙ୍କର କି ସ୍ଥାନ ତାହା ଅନ୍ୟ ପ୍ରଦେଶ ବା ଦେଶ ବାସୀ ବୁଝିବା କଠିନ । ଓଡ଼ିଶାର ସୁନାମଧନ୍ୟ ଲେଖକ ଶ୍ରୀ ସୁରେନ୍ଦ୍ର ମହାନ୍ତି ଓ ଅନ୍ୟାନ୍ୟ ଲେଖକ ମାନେ ଏ ବିଷୟରେ ପ୍ରାଞ୍ଜଳ ଭାବରେ ବୁଝାଇ ଯାଇଛନ୍ତି । ଜଗନ୍ନାଥ ଆମର ଗୋଟିଏ କେବଳ ଦେବ ବିଗ୍ରହ ନୁହନ୍ତି ସେ ଓଡ଼ିଆ ଜାତିର ମୁରବୀ । ଆମ ଜଗନ୍ନାଥ ଆମ ଆଖିରେ ଜଣେ ଉତ୍ତମ ପୁରୁଷ ବା ପୁରୁଷୋତ୍ତମ । ତାଙ୍କର ମଣିଷ ପରି ବାହାଘର, ମଣିଷ ପରି ଜର, ତାଂକ ସ୍ତ୍ରୀ ପୁଣି ରୁଷି କରି ମାଉସୀମା ଘରକୁ ପଳାନ୍ତି, ସ୍ୱାମୀକୁ ଗାଳିଦିଅନ୍ତି । ଆମର ପ୍ରତିନିଧି ପୁରୀର ଠାକୁର ରଜା, ଧର୍ମ ଯୁଦ୍ଧ କରିବାକୁ ଗଲେ ସେ ସୈନ୍ୟ ବେଶ ଧରି କଳାଘୋଡା ଚଢ଼ି ମାଣିକ ଗଉଡୁଣୀ ଠାରୁ ଦହିଖାଇ, ରତ୍ନମୁଦି ଯନ୍ତ୍ରକ ଦେଇ ରଜାକୁ ଅଭୟ ଦେବାକୁ ଆଗେ, ଆଗେ, ଯୁଦ୍ଧକୁ ଯାଆନ୍ତି । ଦେବ ଦେବୀଙ୍କୁ ମଣିଷ ଡରେ, ଦେବତା ମଣିଷ ଠାରୁ ବହୁତ ଦୂରରେ ଥାଆନ୍ତି, କହିବାକୁ ଗଲେ ଦେବତା ଗୋଟିଏ ଆଦର୍ଶ ମାତ୍ର, କିନ୍ତୁ ଜଗନ୍ନାଥ ଆମ ଘର ଲୋକ, ସେ ଆମରି ଅତି ନିଜର, ଆମର ସବୁ ହାସ ଲୁହାର ତାଙ୍କରିଠାରେ, ତାଙ୍କୁ ଆମେ ଦୂରରେ ରଖି ପୂଜାକରି ପାରୁନାହୁଁ । ଆମେ ତାଙ୍କୁ କାଖରୁ, କୁଣ୍ଢାଉ ତାଂକ ରଥ ଦଉଡ଼ି ଟାଣୁ । ବିପଦ ପଡ଼ିଲେ ଅଭିମାନ କରି "ଆରେ କାଳିଆ ତୁନି ହୋଇ କାହିଁକି ରହିଛୁ ବୋଲି ଗାଳି ଗୁଲଜ କରୁ" ପିଲା ଅଳି କଲାପରି ଆମେ ତାଂଙ୍କ ଶରଧା ବାଲିରେ ଅଳି କରି ଗଡୁ ।

ସେଇପରି ସତ୍ୟବାଦୀର ପଞ୍ଚସଖା ଏ ଦେଶ ଲୋକଙ୍କ ପକ୍ଷରେ ପଥରଥୀ ଆଦର୍ଶ ପୁରୁଷ ଓ ପୂଜ୍ୟଦେବତା । ସେମାନଙ୍କ ଆଦର୍ଶରେ ଅନେକ ଅନୁପ୍ରାଣୀତ । କିନ୍ତୁ ସେମାନଙ୍କ ସଂଗେ ଓତଃପ୍ରୋତ ଭାବେ ଚଳିଆସିଥିବା ମୋ ଭଳି ବଂଶଧର ମାନେ

ସେମାନଙ୍କୁ ଅନ୍ୟ ଭଳି ନ ଦେଖିବା ସ୍ୱାଭାବିକ । ଏ ଦେଶବାସୀର ଜଗନ୍ନାଥ ବଳଭଦ୍ର ପରି ସେମାନେ ଆମର ଗୃହଦେବତା; ଆମେ ଜାଣୁଚୁ ସେ ଆମ ଘର ଲୋକ, ସେ ମଣିଷ, ସେ ଆମ ମୁରବି । ତାଙ୍କୁ ଦୂରେଇ ଦେଖିବା ମୋ ପକ୍ଷରେ ଭାରି କଷ୍ଟର ବିଷୟ ।

ହରିହର ଏ ଦେଶର ଆଚାର୍ଯ୍ୟ, ଗୁରୁ ବା ଦେବତା, ସେମାନେ ତାଙ୍କ ଦେବୋପମ ଶାନ୍ତ ମୂର୍ତ୍ତି ଦେଖି ମୁଗ୍ଧ, ତାଙ୍କ ନାମ ଉଚ୍ଚାରଣ କଲେ ଅନେକ ଭକ୍ତିରେ ଗଦ୍‌ଗଦ୍ ହୋଇ ଉଠନ୍ତି, ସେ ଯେବେ ରାଗୁଥିବେ, ରୁଷୁଥିବେ, ସାଧାରଣ ମଣିଷ ପରି ଅଭିମାନ କରୁଥିବେ ଏ କଥା ଅନ୍ୟମାନେ ହୃଦୟଙ୍ଗମ କରି ପାରିବେ ନାହିଁ । ସମସ୍ତଙ୍କ ଧାରଣା ସେ କେବେ ରାଗନ୍ତି ନାହିଁ, କିନ୍ତୁ ସେ ଯେ ମୋର ଦଦେଇ । ମୁଁ ଜାଣେ ସେ ରାଗନ୍ତି, ରୁଷନ୍ତି ! ଅବଶ୍ୟ ତାଙ୍କ ରାଗ ବା ବିରକ୍ତି ଅନ୍ୟ କାହା ଉପରେ ନପଡ଼ି ପଡେ ନିଜ ଉପରେ । ମୁଁ ଶୁଣିଛି ପିଲାଦିନୁ ସେ ଅଭିମାନୀ । ପିଲାଦିନୁ ପୁରୀ ଜିଲ୍ଲା ସ୍କୁଲରେ ପାଠ ପଢ଼ିଲାବେଳୁ ନନା (ପଣ୍ଡିତ ନୀଳକଣ୍ଠ) ଓ ସେ ଦୁଇଜଣ ବରାବର ଏକାଠି ରହୁଥିଲେ, ଏକାଭଳି ଚଳୁଥିଲେ । ସବୁଦିନେ କେଉଁଠି ଦୁହେଁ ଯାକ ସିଂହଦ୍ୱାରକୁ ଆସି ପଇସାକର ଚୂଡ଼ା ଖାଇ କରି ପୁରୁଣା ରଥ ଚକ ପାଖରେ ବସି ରହିବାଇ ରହିବାଇ ପାଠ କଥା ଓ ଅନ୍ୟାନ୍ୟ କଥାବାର୍ତ୍ତା କରୁଥିଲେ । ଦିନେ ନନା ଆଗରୁ ଆସି ଡେରି ହେବାରୁ ତାଙ୍କୁ ଅପେକ୍ଷା ନକରି ଚୂଡ଼ାଭଜା ଖାଇ ଦେଇଥିଲେ, ସେଥିରେ ଦୁଇଦିନ ଅଭିମାନ କରି ଦଦେଇ ନିଜ ଖାଇବା ବନ୍ଦ କରି ଦେଇଥିଲେ, ପରେ ସାନଭାଇ ଭୁଲମାନି ଦୁହିଙ୍କର ମିଳାମିଶା ହେଲା ।

ତାଙ୍କର ଉତ୍ତର ବୟସରେ ସେ ରାଗ ମଧ୍ୟ ଉଣା ପଡ଼ିନ ଥିଲା । ସେ ଗ୍ରାମ ବାସୀଙ୍କ ଉପରେ କପରି ରାଗିଥିଲେ ତାର ଗୋଟିଏ ଉଦାହରଣ ଦିଏ । ତାଙ୍କ ଗ୍ରାମ ଶ୍ରୀରାମଚନ୍ଦ୍ରପୁର ଶାସନର ନୂତନ ଓଡ଼ିଶା ଗଠନରେ ଯଥେଷ୍ଟ ଅବଦାନ ରହିଛି । ଓଡ଼ିଶାର ପ୍ରଥମ ସଂସ୍କାରକ ଓ ଶିକ୍ଷାବିତ୍ ପଣ୍ଡିତ ହରିହର ଦାସ ଏହି ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଏହି ଗ୍ରାମରୁ ଆଚାର୍ଯ୍ୟ ହରିହର, ପଣ୍ଡିତ ନୀଳକଣ୍ଠ ଓ ସ୍ୱର୍ଗତ ଅନନ୍ତ ଛାତ୍ରାବସ୍ଥାରେ ଗୋପବନ୍ଧୁଙ୍କ ନିକଟକୁ ଯାଇ ଭାର୍ଗବୀ କୂଳରେ ଦେଶ ସେବାରେ ଶପଥ ନେଇଥିଲେ । ପଣ୍ଡିତ ମଧୁସୂଦନ ମିଶ୍ର ଐତିହାସିକ ଚିନ୍ତାମଣି ଦାଶଙ୍କ ପିତା ପଣ୍ଡିତ ଆର୍ତ୍ତତ୍ରାଣ ଦାସ ପ୍ରଭୃତି ଏହି ଗାଁର । ଅପ୍ରପ୍ରାଇମେରୀ ସ୍କୁଲର ଆସବାବ ପତ୍ର ଉଠାଇନେଇ ଗୋପବନ୍ଧୁଙ୍କ ନେତୃତ୍ୱରେ ସତ୍ୟବାଦୀ ସ୍କୁଲର ମୂଳଦୂଆ ଦେଇଥିଲେ । ପଣ୍ଡିତ ଲିଙ୍ଗରାଜ ମିଶ୍ର ପଣ୍ଡିତ ବାସୁଦେବ ମହାପାତ୍ର, ସନ୍ଥ ଗୋପୀନାଥ ଦାସ କାଉନସିଲର ଆଡଭୋକେଟ୍ ହରିହର ଦାସ ପ୍ରଭୃତି ଏହି ଗାଁର ଲୋକ । ଏମାନେ ସତ୍ୟବାଦୀ ସ୍କୁଲର ନାନା ସଂଗଠନ ସହିତ ସଂପୃକ୍ତ ଥିଲେ ।

ରୋଗୀ ସେବା ଓ ନୀଳକଣ୍ଠଙ୍କ ମୋହନଶ 'ଆନ୍ଦୋଳନ' ଭଳି ସାମାଜିକ ସଂସ୍କାର ଆନ୍ଦୋଳନରେ ଏହି ଗ୍ରାମର ବହୁଲୋକ ଭାଗ ନେଇଥିଲେ ! ଶେଷରେ ସ୍ୱଦେଶୀ ଆନ୍ଦୋଳନରେ ମହାତ୍ମା ଗାନ୍ଧିଙ୍କ ନିର୍ଦ୍ଦେଶରେ ବହୁ ଯୁବକ ଯୁବତୀ ମୁକ୍ତି ସଂଗ୍ରାମରେ ଆତ୍ମୋତ୍ସର୍ଗ କରିଥିଲେ । ଅଗ୍ରଣୀ ହରିହରର ପିତୃବ୍ୟ ପଣ୍ଡିତ ନରହରଙ୍କ ଆଦର୍ଶରୁ ପ୍ରଥମ ପ୍ରେରଣା ପାଇଥିଲେ, ଏହି ଗାଁଟି ତାଙ୍କର ଅତି ପ୍ରିୟ ଥିଲା । ସମୟ ପାଇଲେ ମଝିରେ ମଝିରେ ଆସି ଗାଁରେ ରହୁଥିଲେ । କିନ୍ତୁ ଗୋଟିଏ ଘଟଣାରେ ସେ ଗ୍ରାମର ସମସ୍ତ ଶ୍ରଦ୍ଧା ଓ ଅନୁରାଗ ଛିଣ୍ଡାଇ ଦୂରରେ ରହିଲେ । ୧୯୩୧ ଗଣ-ଆନ୍ଦୋଳନ ଓ ୧୯୩୬ ଭୋଟ ଗ୍ରହଣ ପରେ ସମସ୍ତ ଦେଶ ନିରୁତ୍ସାହିତ ହୋଇ ପଡ଼ିଲା । ଏହି ଗ୍ରାମରୁ ଅଧିକାଂଶ ଯୁବକ ଯୁବତୀ ଅନ୍ନ ସଂସ୍ଥାନ ପାଇଁ ବିଦେଶ ଗମନ କଲେ । ପାଠ ପଢ଼ୁଆମାନେ ବିଦେଶରେ ରହିବାରୁ କେତେକ ଦରପାଠୁଆ ଗ୍ରାମରେ ଓ ଗୁରପଟି କଳି ତକରାଳ ଓ ମାଲିମକଦ୍ଦମା ଲଗାଇ ଗୋଳିଆ ପାଣିରୁ ଶେଉଳ ମାରିବା କାର୍ଯ୍ୟରେ ଲାଗିଗଲେ । ଏ ଗାଁରେ ଆଉ ଅରଟ ବୁଲିଲା ନାହିଁ । ଗାନ୍ଧି ଗୋପବନ୍ଧୁଙ୍କ ଆଦର୍ଶରୁ ଲୋକେ ଦୂରେଇ ଗଲେ । ଆଗ୍ରଣୀ ଗ୍ରାମର ଏ ଅବସ୍ଥା ଦେଖି ମର୍ମାହତ ହେଲେ, ଗ୍ରାମ ବାସୀଙ୍କୁ ବହୁତ ବୁଝାଇ ନିରାଶ ହେଲେ, ଶେଷରେ ସେ ରାଗିଗଲେ । ଆଉ ଗାଁକୁ ପାଦ ପକାଇଲେ ନାହିଁ । ବହୁତ ଲୋକ କାକୁତି ମିନତି କଲେ ମଧ୍ୟ ସେ ପୁଣି ନିଜ ଘରେ ଆସି ରହିବା କେହି ଦେଖିନାହିଁ । ସେ ଗାଁଲୋକ ଶିକ୍ଷିତଲୋକ, ଓ ପୁରାତନ ଗ୍ରାମବାସୀମାନଙ୍କୁ ଦେଖିଲେ କେତେ ଭଲ ନ ପାଆନ୍ତି । ସେ କୌଣସି ସ୍ଥାନକୁ ଗଲେ ସେଠାରେ କିଏ ଶିକ୍ଷିତ ପରିଚିତ ଲୋକ ଅଛନ୍ତି ଆଗ ସେମାନଙ୍କ ଠିକଣା ବୁଝିନେଇ ସମସ୍ତଂକ ଘରେ ଥରେ ଥରେ ମୁହଁମାରି ଦେଇ ଆସନ୍ତି । ଏପରି ଲୋକକୁ ବର୍ଷବର୍ଷ ଧରି ଆଉ ଆଦୌ ଗାଁକୁ ନ ଆସିବା ନିଜଲୋକଙ୍କୁ ନ ଦେଖିବା କେତେ ବାଧି ନଥିବ, କିନ୍ତୁ ସେଥିରୁ ସେ ଅକୁଣ୍ଠ ଚିତ୍ତରେ ସହିନେଲେ ।

ତାଙ୍କ ମୁଖରୁ ଅଳ୍ପ କେତେକ ବର୍ଷ ପୂର୍ବରୁ ହଠାତ୍ ଶୁଣିଲି ସେ ଅନ୍ଧ । ମୁଁ ଯାଇ ଦେଖିଲି ସେ ଜୁଳୁଜୁଳୁ କରି ଚାହୁଁଛନ୍ତି କିନ୍ତୁ କାହାକୁ ଦେଖୁ ନାହାନ୍ତି । ମୋର ମନେ ହେଲା ସେ ଅନ୍ଧ ହୋଇ ନାହାନ୍ତି କିନ୍ତୁ ପ୍ରକୃତରେ ସମସ୍ତଙ୍କ ଉପରେ ରାଗିଛନ୍ତି । ଗାଁକୁ ଆଉ ନ ଦେଖିଲା ପରି ଆଉ କାହାକୁ ଦେଖୁ ନାହାନ୍ତି । ସେ ରାଗିଲେ, କିନ୍ତୁ ରାଗିଲେ କାହା ଉପରେ ? ନିଶ୍ଚୟ ଅତି ପ୍ରିୟଜନ ଉପରେ ରାଗିଥିବେ । ଏହାର ପ୍ରମାଣ ମିଳିଲା ଯେତେବେଳେ ସେ ଭୂଦାନ ଅଫିସରୁ ବାଡ଼ି ଠୁକୁ ଠୁକୁ କରି ତାଙ୍କର ଅତି ପ୍ରିୟ ଗ୍ରାମ ସମାଜ ସଙ୍ଗେ ମିଶିବାକୁ ସେମାନଙ୍କ କଳିରେ ମଧ୍ୟସ୍ଥି କରିବାକୁ ମାଷ୍ଟରକୋମ ଛାଡ଼ିବାର ଦୀର୍ଘ ୫୦ ବର୍ଷ ପରେ ପୁଣି ବାହାରି ପଡ଼ିଲେ । ଏ ଦେଶର ବିଶୃଙ୍ଖଳ ଗ୍ରାମ ସମାଜର ଦୁର୍ଦ୍ଦଶା ତାଙ୍କର ପ୍ରାଣକୁ ଦୋହଲାଇ ଦେଲା । ସେ ହରିବାବୁଙ୍କ କାନ୍ଧରେ ହାତ ପକାଇ ଗ୍ରାମମାନଙ୍କର ସଭା ସମିତିମାନଙ୍କରେ ଯାଇ

ଉପସ୍ଥିତ ହେଲେ, ଯୁବକମାନଙ୍କୁ ଦବଣ୍ଡି ଦରାଣ୍ଡି କହିଲେ "ମଣିଷ ହୁଅ"। ଯେପରି ଏ ଦେଶର ଲୋକ ମଣିଷ ନ ହେବା ପର୍ଯ୍ୟନ୍ତ ଆମ ଭଳି ପଶୁ ଭାବାପନ୍ନ ଲୋକମାନଙ୍କୁ ସେ ଆଉ ତାଙ୍କ ଚକ୍ଷୁରେ ଦେଖିବେ ନାହିଁ ବୋଲି ସ୍ଥିର କରି ସାରିଥିଲେ ।

ମୋ ଉପରେ କପଟ ରାଗିଲେ ତାର ଗୋଟିଏ ନମୁନା ଦେଉଛି । ସମସ୍ତେ ଜାଣନ୍ତି ସେ କୌଣସି ସ୍ଥାନରେ ସ୍ଥିର ହୋଇ ରହିବାକୁ ଚାହାନ୍ତି ନାହିଁ । ତାଙ୍କୁ ସବୁଠୁ ଭଲ ଲାଗେ ବୁଲିବା । ପଦ ଯାତ୍ରାରେ ଓଡ଼ିଶାର ଏମୁଣ୍ଡ ସେମୁଣ୍ଡ ସେ ବୁଲି ବୁଲି ସମସ୍ତଙ୍କ ଦୁଃଖ ସୁଖ ବୁଝିଛନ୍ତି, ସତ୍ୟ, ସେବା ଓ ଅହିଂସାର ବାଣୀ ସମସ୍ତଙ୍କ ପାଖରେ ପହଞ୍ଚାଇବାକୁ ଚେଷ୍ଟା କରିଚନ୍ତି । ସେ ଉପଦେଶ ଦିଅନ୍ତି ନାହିଁ, ବେଶୀ ଲୁଗା ଏ ଗପି ବକ୍ତୃତା କରନ୍ତି ନାହିଁ, ଖାଲି ଥରେ ପିଠି ଆଉଁସି ଦିଅନ୍ତି, ସେଇଥିରେ ସବୁ ହୋଇଯାଏ । କଟକ ଆସିଲେ ଆମମାନଙ୍କ ଘରେ ଥରେ ହେଲେ ବୁଲି ନ ଗଲେ ତାଙ୍କୁ ଭଲ ଲାଗେ ନାହିଁ । ଘରକୁ ଆସିଲେ ଗ୍ରେଷ୍ଟ ପିଲାଙ୍କ ସଙ୍ଗେ ଖେଳିବା ସେମାନଙ୍କ ମୁହଁ ଆଉଁସି ନିଜ ଦାଢ଼ି ଘସିବାର ଦୃଶ୍ୟ ମୋ ଆଖି ଆଗରେ ଏବେବି ନାଚି ଯାଉଚି । ମୋତେ ଦେଖିଲେ ଆଗ ପଚାରନ୍ତି "କିରେ, କଣ କିମିତି ଅଛୁ ?" ନନା କଟକରେ ଥିବାର ଶୁଣିଲେ ସଙ୍ଗେ ସଙ୍ଗେ ଯାଇ ସେଠାରେ ହାଜର ହୁଅନ୍ତି । ସେ କଟକ ଆସିଥିବାର ଶୁଣିଲେ ନନା ରୋଗ ଶଯ୍ୟାରୁ ମଧ୍ୟ ତାଙ୍କୁ ଦେଖିବାକୁ ବ୍ୟାକୁଳ ହୋଇ ପଡ଼ନ୍ତି । ତାଙ୍କୁ ଖବର ଦେଇ ଆସିବାରେ ବିଳମ୍ବ ଘଟିଲେ ଅଧୈର୍ଯ୍ୟ ହୋଇ କହନ୍ତି, ମୋତେ ତାଙ୍କ ପାଖକୁ ଭୂଦାନ ଅଫିସଘରକୁ ନେଇଯାଅ ।" ଶେଷ ଅବସ୍ଥାରେ ମଧ୍ୟ ଦୁହେଁ ଘଣ୍ଟା ଘଣ୍ଟା ଧରି ଅସ୍ପଷ୍ଟ ଭାଷାରେ ପିଲାଦିନେ ପଣସ ଖାଇବାଠାରୁ ବୁଢ଼ା ଗୋପବନ୍ଧୁଙ୍କ ଉପଦେଶ ପର୍ଯ୍ୟନ୍ତ କେତେ କଅଣ କଥାବାର୍ତ୍ତା ହୋଇ ଯାଆନ୍ତି । ଜଣେ ଶଯ୍ୟାଗତ, ଅନ୍ୟ ଜଣେ ଅନ୍ଧ-ଏ ଦୁଇ ଭାଇ ଓ ଆବାଲ୍ୟ ବନ୍ଧୁଙ୍କର ହୃଦୟ ମିଳନର ସେ ଦୃଶ୍ୟ ଯେ ଦେଖିଚି ସେ କେବେ ଭୁଲି ପାରିବ ନାହିଁ । ୭୦ ବର୍ଷ ତଳର କେତେ ସ୍ମୃତି ଓ ଅନୁଭୂତିର ଜୁଆରଭଟ୍ଟା ସେ ଦୁହିଙ୍କ ମନରେ ଖେଳି ଯାଉଥିବ ତାହା କିଏ କହିବ । ନନା ଅନେକ ଦିନ ମୁମୂର୍ଷୁ ଅବସ୍ଥାରେ ଶଯ୍ୟାଗତ ହୋଇ ରହିଲେ, ଶେଷଥର ଦଦେଇ ତାଙ୍କ ଉପରେ ହାତ ବୁଲାଇ ଯାହା ପଚାରିଲେ ତାର ଆଉ ଉତ୍ତର ପାଇଲେ ନାହିଁ । ଆମେ କହିଲୁ ସେ ଆଉ କଥା କହି ପାରୁ ନାହାନ୍ତି । ଏତିକିବେଳେ ନନାଙ୍କର ଟିକିଏ କ୍ଷୀଣ ଅସ୍ପଷ୍ଟ ଶବ୍ଦ ଶୁଣି, ଦଦେଇ ଆବେଗରେ କହି ଉଠିଲେ "ହେଇଟିଡ କଣ କଥା କହୁଚି" ଏତିକିରେ କିନ୍ତୁ ସେ ସବୁ ବୁଝିଗଲେ, ତାପରେ କଟକ ଛାଡ଼ି ପୁରୀ ଚାଲିଗଲେ । ପୁରୀ ଯାଇ ସେଠାରେ ପ୍ରାୟ ଚିନ୍ତିତ ରହିଲେ । ଆଉ କାହା ସଙ୍ଗେ ପ୍ରାୟ କଥାବାର୍ତ୍ତା କଲେ ନାହିଁ । ମୁଁ ଯାଇ ତାଙ୍କ ପାଖରେ ନିଜସ୍ୱ ପରିଚୟ ଦେଲି, କିନ୍ତୁ ସେ ପୂର୍ବପରି "ଆରେ କଣ କିମିତି ଅଛୁ" ବୋଲି ଆଉ ପଚାରିଲେ ନାହିଁ । ତଥାପି ମୁଁ ମୋ

ଆଉ କହିଲି ଦଦେଇ, ନନା ଭଲ ଅଛନ୍ତି । ସେ ହଠାତ୍ ଅଟ୍ଟହାସ କରି ରାଗିଲା ଭଳି କହି ପକାଇଲେ "ଆରେ, ସେ ମୋତେ କହୁଛ, କରି ପୁଣି ଭଲଅଛୁ ; ଏଇଲେ ସବେ ହରି ଭାଇନା, ହରି ଭାଇନା ତାକ ମୋତେ ଦେଖିବାକୁ ଦଉଡ଼ି ଆସିବ" । ମୁଁ ବୁଝିଲି ସେ ରାଗିଲେ, କେବଳ ମୋ ଉପରେ ନୁହେଁ ଦୁନିଆ ଉପରେ । ଦୁନିଆ ଆଉ ତାଙ୍କୁ ଭଲ ଲାଗିବ ନାହିଁ । ଅଳ୍ପଦିନ ପରେ ନନା ଚାଲିଗଲେ ତାଙ୍କ ରାଗ ଆଉ କମିଲା ନାହିଁ । ସେ ଦୁନିଆ ଛାଡ଼ି ତାଙ୍କ ପାଖକୁ ଶୀଘ୍ର ଚାଲି ଯିବାକୁ ସଂକଳ୍ପ କଲେ । ଖବର କାଗଜରୁ ଦେଖିଲି ସେ ଖାଇବା ଛାଡ଼ି ଦେଇଛନ୍ତି । ସଚ୍ଚି ବାବୁଙ୍କଠାରୁ ବୁଝିଲି ସେ ଆଉ ଖାଉ ନାହାନ୍ତି ।

ଏପରି ଶିକ୍ଷଣୀୟ ରାଗ ସଙ୍ଗେ ସଙ୍ଗେ ତାଙ୍କଠାରେ ଅଦମ୍ୟ ଧୈର୍ଯ୍ୟ ସହନଶୀଳତା ମଧ୍ୟ ପୂର୍ଣ୍ଣ ହୋଇ ରହିଥିଲା । ତାଙ୍କର ଯୁବକ ଅବସ୍ଥାରେ ସନ୍ତାନ ପାଇବା ପୂର୍ବରୁ ସେ ବିପତ୍ନୀକ ହୋଇଥିଲେ । ବୃଦ୍ଧ ଅବସ୍ଥାରେ ପୁଅ ପ୍ରଥମ ସାନ ଭାଇ ଶଙ୍କର ଦାସଙ୍କୁ ହରାଇଥିଲେ । ସେ ଏପରି ବହୁ ପାରିବାରିକ ଦୁଃଖ ଓ ବିପଦର ସମ୍ମୁଖୀନ ହୋଇଛନ୍ତି କିନ୍ତୁ କାହା ଆଗରେ ପଦେହେଲେ ନିଜ ଦୁଃଖ କହିବା କେହି ଶୁଣି ନାହିଁ । ପରର ଦୁଃଖ ପାଇଁ ସବୁବେଳେ ତାଙ୍କର ପ୍ରାଣ ବ୍ୟାକୁଳ ହୋଇ ଉଠେ । ନିଜକଥା ଭାବିବାକୁ ସମୟ ନ ଥାଏ । କୌଣସି କଥାରେ ଅନ୍ୟକୁ ଦୋଷ ଦେବା ବା ଅନ୍ୟ ପାଇଁ କାର୍ଯ୍ୟଟିଏ ଛାଡ଼ିଯିବା ତାଙ୍କ ଜାତକରେ ନଥିଲା । କାହା ଘରୁ କେତେଜଣଙ୍କ ସଙ୍ଗେ ରାସ୍ତାକୁ ଚାଲି ଆସିଲାବେଳେ ସେ ସବୁବେଳେ ପଛୁଆ ରହି ଯାଇ ଫାଟକଟି ବନ୍ଦକରି ଦିଅନ୍ତି ।

ନିଜର କୌଣସି ପଦାର୍ଥ ନିତାନ୍ତ ଦରକାର ବୋଲି ସେ କେବେ ମନେ କରୁ ନ ଥିଲେ । ନିଜର ସମସ୍ତ ଜମିବାଡ଼ି ଅନ୍ୟମାନଙ୍କୁ ଦେଇ ଦେଇଥିଲେ । ସଚ୍ଚି ବାବୁଙ୍କଠାରୁ ଶୁଣିଛି ସେ ଜଳଖିଆ ବୋଲି ଗଣ୍ଡିଏ ଚୂଡ଼ାଭଜା ପାଟିରେ ପକାଇ ପାଣି ପିଇ ଦିଅନ୍ତି, ଦୁଧ ଟିକିଏ ବି ଦରକାର କରନ୍ତି ନାହିଁ । ସେ ଚାହିଁଥିଲେ ଏ ସାମାନ୍ୟ ଜିନିଷ ଗୁଡ଼ିଏ ତାଙ୍କର ଅଭାବ ରହି ନ ଥାନ୍ତା, କିନ୍ତୁ ତାହା ତାଙ୍କର ଦରକାର ନଥିଲା । ସେବା ଓ ଦେବା ତାଙ୍କର ଜୀବନର ବ୍ରତ ଥିଲା । ଯୁବ ଅବସ୍ଥାରୁ କଲେରା ରୋଗୀର ସେବା କରିବାଠାରୁ ସତ୍ୟବାଦୀ ସ୍କୁଲରେ ପିଲାଙ୍କ କାଛୁ ପରିଷ୍କାର କରିବା ପର୍ଯ୍ୟନ୍ତ ଏ ସବୁଥିରେ ସେ ଆନନ୍ଦ ପାଉଥିଲେ । ନିଜର ରୋଗରେ ବ୍ୟଥିତ ନ ହୋଇ ରୋଗ ଜର୍ଜରିତ ଦେହକୁ ମଧ୍ୟ ଅନ୍ୟ ରୋଗୀର ସେବାରେ ଲଗାଇବାକୁ ସେ କିପରି ବ୍ୟାକୁଳ ହୋଇ ଉଠୁଥିଲେ ତାହା ଏଇ ଗୋଟିଏ କଥାରୁ ଜଣା ପଡ଼ିବ । ଥରେ କଟକ ହସପିଟାଲର ଚକ୍ଷୁ ବିଭାଗରେ ତାଙ୍କ ସହିତ ମୋର ଦେଖା ହେଲା । ସେତେବେଳକୁ ତାଙ୍କୁ ଆଉ ଦିଶୁ ନ ଥିଲା । ଅନ୍ୟ ରୋଗୀମାନେ ସେମାନଙ୍କ ଚକ୍ଷୁର ଆଶୁ ଆରୋଗ୍ୟ ହେବା ସମ୍ବନ୍ଧରେ ବୁଝେଇ

ଉଦ୍ରେକ ନାନା ପ୍ରଶ୍ନ ପଚାରି ଚକ୍ଷୁ ଡ଼ାକ୍ତରଙ୍କୁ ବ୍ୟତିବ୍ୟସ୍ତ କରି ପକାଉ ଥାଆନ୍ତି । ଦିନେଦିନ ସେ ଡାକ୍ତରଙ୍କୁ ପାଖକୁ ଡ଼ାକିଲେ । ମୁଁ ଭାବୁଥିଲି ନିଜ ଆଖି ସମ୍ବନ୍ଧରେ ସେ କିଛି ପଚାରିବେ, କିନ୍ତୁ ସେ ଡ଼ାକ୍ତରଙ୍କୁ କହିଲେ ବାବୁ ଏବେ ଚକ୍ଷୁର ଅଂଶ ସବୁ ଚକ୍ଷୁ ରୋଗର ନିରାକରଣରେ ପରା ବ୍ୟବହାର କରାଯାଉଛି; ମୋର ତ ଏ ଆଖି ଦୁଇଟି ଆଉ କିଛି କାମରେ ଲାଗୁନାହିଁ, ଏଥିରେ ଅନ୍ୟର ଉପକାରରେ ଲାଗିଲା ଭଳି ଯଦି କିଛି ଅଂଶ ଥାଏ ତେବେ ତାହା ବାହାର କରିନେଇ ଅନ୍ୟ ରୋଗୀର ଆଖିରେ ବ୍ୟବହାର କର ।'' ଏହାଶୁଣି ସେ ଡ଼ାକ୍ତର ଓ ଆମେ ସମସ୍ତେ ସ୍ତମ୍ଭିତ ହୋଇଗଲୁ ।

ତାଙ୍କର ଘର ସଂସାର ନଥିଲା, କିନ୍ତୁ ସେ ଅସଂସାରୀ ନଥିଲେ । ସେ ଥିଲେ ଜଣେ ପରମ ସାଧକ । ଦୁନିଆଠାରୁ ସେ ନିଜକୁ ଦୂରରେ ରଖୁନଥିଲେ ଦୁନିଆ ଥିଲା ତାଙ୍କର ଅତି ଆପଣାର ସଂସାର । ତାଙ୍କ ଭିତରେ ଅଯଥା ଗାମ୍ଭୀର୍ଯ୍ୟ ନଥିଲା, ବରଂ ସରସତା ପୂରି ରହିଥିଲା । ତାଙ୍କର ହସ ହସ ମୁହଁ ଓ ଥଟ୍ଟାଳିଆ କଥା କେହି ଭୁଲି ପାରିବ ନାହିଁ । ସେ ଦିନେ ମୋ ଘରକୁ ଆସିଥିଲେ । ଗୋଟିଏ ପିଲା ତାଙ୍କୁ ପଚାରିଲା "ସେସେବାପା ତମେ ଏତକ ଗ୍ରେଟିଆ ଗୀତାଟିଏ କାହିଁକି ଲେଖିଲ, ଏବେତ ଅମୁକ ବାବୁଙ୍କପରି ଲୋକ ସ୍କୁଲରୁ ଅବକାଶ ନେବା ପରେ ମଧ୍ୟ ବଡ଼ ଗୀତାଟିଏ ଲେଖୁଛନ୍ତି ; ତୁମକୁ ବଡ ଗୀତା କଅଣ ଲେଖି ଆସୁ ନାହିଁ'' । ସେ କହିଲେ ତାଙ୍କପରି ମୁଁ କେଉଁଠୁ ଲେଖିପାରିବି, ସେ ଯେଉଁ ସୋମରସ ପାନକରନ୍ତି, ସେଥିରୁ ଟିକିଏ ନହେଲେ କଣ ବଡ଼ ଗୀତା ବାହାରିବ । ଆଉଥରେ ଅନେକ ଦିନ ତଳେ ସେ ଟ୍ରେନରେ ଯାଉଥିଲେ । ଖୋର୍ଦ୍ଧା ଷ୍ଟେସନରେ କିଛି ଚନା ବାଦାମ କିଣି ନିଜେ ଖାଇଲେ ଓ ତାଙ୍କର ସହଯାତ୍ରୀ ମେଡ଼ିକାଲ ଛାତ୍ର ଲକ୍ଷ୍ମୀକାନ୍ତ ( ଲଖୁ ) ଙ୍କୁ ଦେଲେ । କିଛି ସମୟପରେ ଲକ୍ଷ୍ମୀକାନ୍ତ ୨ଟି ସପେଟା ଫଳ କିଣି ତାଙ୍କୁ ଗୋଟିଏ ଦେଲେ । ସେ ଖାଇସାରି ହସି ହସି କହିଲେ "ତୋ ଫଳ ତ ମୋ ଫଳଠାରୁ ବେଶୀ ସୁଆଦ ଓ ଭଲ, ନେ ଯଇସାନେ ଆଉ କେତୋଟି ଆଣ'' । କେତେଟାଣ୍ଡିଏ ସପେଟା ଖାଇଲା ପରେ ତାଙ୍କ ନିଶ ଦାଢ଼ିରେ ଅଠା ଲାଗିଗଲା, ମୁହଁ ଧୋଇଲେ, ଗାମୁଛାରେ ପୋଛିଲେ, ଆଉ ଛାଡ଼ିଲା ନାହିଁ, ସେଥିରୁ ଅଟ୍ଟାକରି କହିଲେ " ହଇରେ ଲଖୁ, ମୋ ଫଳ ଭଲ, ତୋ ଫଳ ମତେ ବଡ ହଟ ହଟା କଲା, ଏବେ ଦେଖୁଚ ଅଠା ଛଡ଼େଇବାକୁ ନିଶ ଦାଢ଼ି କାଟିବାକୁ ପଡ଼ିବ, ହଇରେ ଦାଢ଼ି କାଟିଦେଲେ ଏ ଦେଶରେ ତ ମୋତେ କେହି ଚିହ୍ନିବେ ନାହିଁ । ମୋତେତ କେହି ଚିହ୍ନନ୍ତି ନାହିଁ, ମୋ ଦାଢ଼ି ନିଶକୁ ସିନା ସମସ୍ତେ ଚିହ୍ନନ୍ତି । କହିଲୁ ଲଖୁ, ମୋତେ କିଏ ଚିହ୍ନେ, ମୁଁ ଏବେ କଅଣ କରେ, ମୋତେ ଖାସା ଫଳ ଖୁଆଇଲୁ' । ଏ ଦୃଶ୍ୟ ଦେଖି ସବୁ ଯାତ୍ରୀ ଠୋ ଠୋ ହସି ଉଠିଲେ, ସେ ନିଜେ ମଧ୍ୟ ହସି ପକାଉଥିଲେ ।

କିନ୍ତୁ ସେ ଯାହା କହିଥିଲେ ଏବେ ଭାବିଲେ ମୋତେ ସତ ପରି ଲାଗେ । ପ୍ରକୃତରେ ଏ ଦେଶ କଅଣ ସେମାନଙ୍କ ପରି ଲୋକଙ୍କୁ ଚିହ୍ନି ପାରିବ ? ଆମେ କେବଳ ତାଂକ ବାହାର ଦେଖିଛୁ, ନିଶ ଦାଢ଼ି ଦେଖିଛୁ । ତାଙ୍କୁ ଚିହ୍ନିନାହୁଁ, ତାଙ୍କୁ ଉପଯୁକ୍ତ ସମ୍ମାନ ଦେଇ ପାରି ନାହୁଁ । ତାଙ୍କର ଆଦର୍ଶ ଗ୍ରହଣ କରି ପାରିନାହୁଁ । ଏବେ ତାଙ୍କୁ ବୁଝିବାକୁ ସ୍ୱର୍ଗରୁ ତାଙ୍କର ଆଶୀର୍ବାଦ ହିଁ ଆମର ପାଥେୟ ।



# ମୁଁ ତାଙ୍କୁ ଯେପରି ଜାଣେ

ଶ୍ରୀ ରବିନାରାୟଣ ଦାଶ ଏମ୍. ଏ.

ଆଚାର୍ଯ୍ୟ ହରିହର ଦାଶ ଥିଲେ ଆମ ଗାଁର ଶେଷ ଦୀପଶିଖା । କେବଳ ଗାଁର ନୁହନ୍ତି, ସାରା ଓଡ଼ିଶାର, ଗୋଟିଏ ଯୁଗର ଜୀବନ୍ତ ପ୍ରତୀକ । ତାଙ୍କ ପିତା ମହାଦେବ ବ୍ରହ୍ମା ଥିଲେ କୌଶିକ ବଂଶ ସମ୍ଭୂତ ଜଣେ ପଣ୍ଡିତ, ଜ୍ୟୋତିର୍ବିଦ୍ ଏବଂ ଶିକ୍ଷକ । ପୁରୀ ରାଜାଙ୍କ ନିକଟରୁ ସେ ବ୍ରହ୍ମା ଉପାଧି ପାଇଥିଲେ । ସଂସ୍କୃତ ଭାଷାରେ ତାଙ୍କର ପ୍ରଗାଢ଼ ଜ୍ଞାନ ଏବଂ କର୍ମକାଣ୍ଡରେ ଅସାଧାରଣ ଦକ୍ଷତା ଥିଲା । ତାଙ୍କର ଅମାୟିକ ବ୍ୟବହାର ଓ ନିଷ୍କପଟ ଆଚରଣ ହେତୁ ଗ୍ରାମର ପ୍ରତ୍ୟେକଙ୍କର ସେ ପ୍ରିୟପାତ୍ର ଥିଲେ । ଏହିଭଳି ଏକ ଗୁଣବାନ୍ ପିତାଙ୍କର ଉପଯୁକ୍ତ ଦାୟାଦ ରୂପେ ହରିହର ନିଜ ବାଲ୍ୟକାଳରୁ ଏକାନ୍ତ ଚରିତ୍ରବାନ, ସତ୍ୟନିଷ୍ଠ, ନିରହଙ୍କାର ଏବଂ କ୍ରୋଧଶୂନ୍ୟ ଭାବରେ ବଢ଼ିଥିଲେ । ଉତ୍ତର ଜୀବନରେ ଦେଶପ୍ରାଣ ପଣ୍ଡିତ ଗୋପବନ୍ଧୁଙ୍କ ସାନ୍ନିଧ୍ୟ ଫଳରେ ମଣିକାଞ୍ଚନର ସଂଯୋଗ ଘଟିଥିଲା । ସେ ପୁରୀଜିଲ୍ଲା ସ୍କୁଲରେ ଅଧ୍ୟୟନ କରିବା ସମୟରେ ଗୋପବନ୍ଧୁଙ୍କ ସହିତ ଘନିଷ୍ଠ ସମ୍ପର୍କରେ ଆସିଥିଲେ । ଏହା ହିଁ ତାଙ୍କ ଜୀବନର ଗତିପଥକୁ ଦେଶସେବା ଦିଗରେ ନିୟନ୍ତ୍ରିତ କରିଥିଲା । ଯେତେବେଳେ ସେ ଗାଁକୁ ଆସୁଥିଲେ ଘରକୁ ଯାଉ ନଥିଲେ କିମ୍ବା ଘରେ ଖାଉ ନଥିଲେ । କିନ୍ତୁ ଶେଷ ଜୀବନରେ ତାଙ୍କୁ ବହୁତ ଅନୁରୋଧ କରିବା ପରେ ସେ ଘରେ ଖାଇଲେ । ପଚାରିଲେ କହନ୍ତି—'ସବୁ ଘରତ ମୋର, କିଏ ପର ? ମୋ ଦେଶ ତ ମୋ ଘର, ଆଉ ନିଜର କ'ଣ । ସେଠାକୁ ଗଲେ କେବଳ ମୋହରେ ପଡ଼ି କଷ୍ଟ ପାଇବାହିଁ ସାର ହେବ ।' ସେ ଗାଁର ଘରଦ୍ୱାର ଜମିବାଡ଼ି ଉପରୁ ତାଙ୍କର ଦାବୀ ପ୍ରତ୍ୟାହାର କରି ନେଇଥିଲେ । ଏହି ସାଦାଜୀବନ ଆତ୍ମଭାବ ଏବଂ ବିଷୟ ବାସନା ତ୍ୟାଗ ଅନନ୍ୟ ସାଧାରଣ । ଗାଁର ଲୋକମାନେ ସମସ୍ତ ନଷ୍ଟକରି ଫେଳୁ ଥିବାରୁ ସେ ଗାଁକୁ ଆସିବାକୁ ମନାକରି କହିଲେ—"ଯେଉଁଠି ଅଲସୁଆ ମାନଙ୍କର ମେଳା ହେଉଛି ସେଠାକୁ ଯାଇ ମୁଁ କ'ଣ କରିବି ?" ଏହି ସାମାନ୍ୟ ଉକ୍ତି ପଛରେ ରହିଥିଲା ।

ଅଭିମାନ, ଦୁଃଖ ଏବଂ ଗ୍ରାମବାସୀଙ୍କୁ ଏଥିରୁ ନିବର୍ତ୍ତାଇବାରେ ଅନନ୍ୟୋପାୟ ହୋଇ ବ୍ୟସ୍ତ ହେବା । କିନ୍ତୁ ପ୍ରକୃତରେ ତାଠାରୁ ଆହୁରି ବିଶେଷ କଷ୍ଟ ତାଙ୍କ ମନରେ ଯନ୍ତ୍ରଣା ଦେଉଥିଲା ଓ ସେଥିରେ ସେ ମ୍ରିୟମାଣ ହେଉଥିଲେ ; ତା ହେଉଛି କର୍ମହୀନ ମାନବ ଜୀବନ—ଗୀତାଗତ ଆଦର୍ଶର ପରିପନ୍ଥୀ ଏକ ଶୁଷ୍କ ଓ ନିଷ୍ପ୍ରଭ ପରିଣତି । ସେ ଏହାକୁ ଧର୍ମର ଲେପ ସହିତ ତୁଳନା କରୁଥିଲେ । କର୍ମକୁ ଉଚିତ ମାର୍ଗରେ ନିବୋଚିତ ଗୁଣରେ ଭୂଷିତ କରିବା ପାଇଁ ସର୍ବଦା ଅନ୍ୟମାନଙ୍କୁ ଉପଦେଶ ଦେଇ ସେ କହନ୍ତି "ପଶୁ ନହୋଇ ମନୁଷ୍ୟ ହୁଅ" । ଆହୁରି ପାଦେ ଆଗେଇ ଯାଇ ସେ ଅନେକ ସମୟରେ କହନ୍ତି "ମନୁଷ୍ୟ ମଧ୍ୟରେ ଦେବତା ଓ ଅସୁର ମାନେ ସର୍ବଦା ଦ୍ୱନ୍ଦ୍ୱରେ ବ୍ୟାପୃତ, ଅର୍ଥାତ୍ Animality ଓ Rationality ମଧ୍ୟରେ ଅହରହ ସଂଗ୍ରାମ ଚାଲିଛି । ଶ୍ରେଷ୍ଠ ମନୁଷ୍ୟ ବା ଜିତେନ୍ଦ୍ରିୟ ନିଜକୁ Rational being ବା ବିବେକୀ କରିବାହିଁ ଉଚିତ ବୋଲି ମନେକରେ ।"

ଯୌବନର ପ୍ରାରମ୍ଭରେ ସେ ଦୁଇଥର ବିବାହ କରିଥିଲେ ଏବଂ ଦୁଇଥର ତାଙ୍କର ପତ୍ନୀ ବିୟୋଗ ହେବା ଫଳରେ ସେ ସବୁଦିନ ଲାଗି ଗୃହସ୍ଥାଶ୍ରମ ନ କରିବାପାଇଁ ସ୍ଥିର କରିଥିଲେ । କେତେକ ତାଙ୍କ ନିମିତ୍ତ କନ୍ୟା ଖୋଜିବାରୁ ସେ କହିଥିଲେ—'ମୋ, ଭାଗ୍ୟରେ ବୋଧହୁଏ ସଂସାର କରିବା ଲେଖାନାହିଁ । କାହିଁକି କେଉଁ ନିରୀହା ନାରୀକୁ ଦୁଃଖ ଦେବାପାଇଁ ଚେଷ୍ଟାକରୁଛ''? ଗୃହ, ସମ୍ପତ୍ତି ଓ ପତ୍ନୀଠାରୁ ମୁକ୍ତ ଜୀବନକୁ ସେ ଦେଶସେବାର କର୍ମକଣ୍ଡାଲରେ ଉତ୍ସର୍ଗ କରିଥିଲେ । ଏ ଯୁଗରେ ତାଙ୍କଭଳି ନରଦେହୀ ଋଷିପୁଜ୍ୟ ଏବଂ ସତ୍ୟାନୁରାଗୀ କେହି ଅଛନ୍ତି କି ନା ସଂଦେହ । ସେହିଦିନଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଇନ୍ଦ୍ରିୟ ନିଗ୍ରହ କରି ସମସ୍ତ ଜୀବନକୁ କର୍ମଯୋଗରେ ଉତ୍ସର୍ଗ କରିଦେଇ ସେ ଏ ସଂସାରରୁ ବିଦାୟ ନେଲେ ।

କ୍ଷମା ଓ ସ୍ନେହର ଜୀବନ୍ତ ଦେବତାରୂପେ ହରିହର ଏ ଯୁଗର ମୁନିଗଣମାନଙ୍କ ମଧ୍ୟରେ ବିଶିଷ୍ଟ ସ୍ଥାନ ଅଧିକାର କରିଛନ୍ତି । ତାଙ୍କ ଶରୀର ମଧ୍ୟରୁ କ୍ରୋଧର ସନ୍ଧାନ କରିବା ସମ୍ଭବ ନଥିଲା । ଜଣେ ଯୁବକ ଏକଦା ତାଙ୍କୁ କହିଲେ—'ଆପଣ ବଞ୍ଚିଛନ୍ତି ବୋଲି ଆମେ ଆପଣଙ୍କୁ ଆଦର କରିବାକୁ ବାଧ ହେଉଛୁ । ଆମେ ଅପେକ୍ଷା କରିଛୁ ଆପଣଙ୍କ ଅନ୍ତେ କିପରି ଗୋଟିଏ ଶୋକସଭା କଲେ ନିସ୍ତାର ପାଇବୁ'' ମୋ ସହିତ ଆଉ ଯେଉଁମାନେ ସେଠାରେ ଥିଲେ ସମସ୍ତେ ଯେ ମନେ ମନେ ଆହତ, ଲଜ୍ଜିତ ଏବଂ କିଂକର୍ତ୍ତବ୍ୟ ବିମୂଢ଼ ହେଲୁ ତାହା ନୁହେଁ, ସର୍ବୋପରି ସେ ଯୁବକଙ୍କୁ ଓ ହରିହରଙ୍କୁ ବିବ୍ରତ ହୋଇ ଚାହିଁ ରହିଲୁ । ବୃଦ୍ଧଙ୍କର କମ୍ପିତ ଶ୍ମଶ୍ରୁ, ନିର୍ବିକାର ଚକ୍ଷୁ ଓ ସ୍ନେହାର୍ଦ୍ର କଣ୍ଠରୁ ଅତି ଧୀର ଭାବରେ ଉତ୍ତର ଆସିଲା—ସତ୍ୟ ଓ କର୍ମ କାହାରି ପାଇଁ ଅପେକ୍ଷା ରଖେ ନାହିଁ । ଜୀବନ ଅଛି ଯେତେବେଳେ ମୃତ୍ୟୁ ନିଶ୍ଚୟ ଆସିବ । ' ଆଘାତ ତାଙ୍କର କେଉଁ କୋଣରେ କିପରି ତରଙ୍ଗ ସୃଷ୍ଟି କଲା, ଜାଣିବାର ଅବକାଶ ହେଲାନି । ଆମେ ସେ ଯୁବକଙ୍କୁ ଅନିଚ୍ଛା ନେଇ ଫିବାହିଁ

ଉଚିତ ମନେକଲେ; କିନ୍ତୁ ସେ ମହତ୍ ଆତ୍ମାରେ କ୍ରୋଧର ଲେଶମାତ୍ର ଚିହ୍ନ ଦେଖିବାକୁ ମିଳିଲା ନାହିଁ ।

କୌଣସି ନା କୌଣସି ଲୋକହିତକର କାର୍ଯ୍ୟରେ ତାଙ୍କର ପ୍ରାଣ ଆନନ୍ଦରେ ନାଚି ଉଠେ । ପ୍ରସ୍ତାବିତ ସତ୍ୟବାଦୀ ମହାବିଦ୍ୟାଳୟର ସେ ଥିଲେ ସଭାପତି । ପ୍ରତ୍ୟେକ ସଭାରେ ସେ ଯୋଗ ଦେଉଥିଲେ ଏବଂ ଏ ମହାବିଦ୍ୟାଳୟ ପାଇଁ ଯେପରି ଗୋଟିଏ ପଇସା ଅସତ୍ ଉପାୟରେ ସଂଗୃହୀତ ନହୁଏ ସେଥି-ପାଇଁ ସତର୍କ ରହିବାକୁ ସେ ବାରମ୍ବାର ପରାମର୍ଶ ଦେଉଥିଲେ । ପଣ୍ଡିତ ଗୋପବନ୍ଧୁଙ୍କ ଦୁଃଖ ମଧ୍ୟରେ ସତ୍ୟବାଦୀ ସ୍କୁଲର ଧ୍ୱଂସ ଜନିତ ବ୍ୟଥା ଥିଲା ଗୁରୁ-ତର । ତେଣୁ ସର୍ବାନ୍ତଃକରଣରେ ସେ ଚାହୁଁଥିଲେ ସତ୍ୟବାଦୀ ମହାବିଦ୍ୟାଳୟର ଶୁଭମୁହୂର୍ତ୍ତ ତାଙ୍କର ଜୀବଦ୍ଦଶାରେ ଦେଖିବେ ଏବଂ ସେ ମହତ୍ ଆତ୍ମାର ଗୋଟିଏ ଅବଶୋଷକୁ କିଛି ପରିମାଣରେ ହେଲେ ବି ପୂରାଇ ପାରିଲେ ବୋଲି ପ୍ରାଣରେ ଶାନ୍ତି ଅନୁଭବ କରିବେ । ତାଙ୍କର ପ୍ରାଣ ଶିଶୁଭଳି କୋମଳ ଥିଲା । ଅଶାନ୍ତି, ଦୁର୍ଘଟଣା, କନ୍ଦଳ ଆଦି ଯେଉଁ ସ୍ତରର ହେଉନା କାହିଁକି ସେଥିରେ ତାଙ୍କର ହୃଦୟ ଦାରୁଣ ଆଘାତରେ ମ୍ରିୟମାଣ ହେଉଥିଲା । ଯେ କୌଣସି ଜନହିତକର କାର୍ଯ୍ୟ କ୍ଷୁଦ୍ରହେଉ ବା ବ୍ୟାପକ ହେଉ ତାଙ୍କ ମନରେ ଭରି ଦେଉଥିଲା ଉତ୍ସାହ ଓ ଉଦ୍ଦୀପନାର କର୍ମ ପ୍ରବଣତା । କର୍ମୀମାନଙ୍କୁ ସେ କହୁଥିଲେ—'ଦମ୍ଭଧର, ବିଶ୍ୱାସ ରଖ, କାମକର, ନହେବ ଏପରି କେଉଁ କଥା ଅଛି । ଆମର ସିନା ବଳ ନାହିଁ ଯେ ସବୁ କଥାକୁ ଡ଼ରୁଛୁ । ତୁମେ ସବୁ ଯୁବକ, ପର୍ବତ ଟାଳିବ, ଏ କାମ ବା କେତେ ?'

ଅହିଂସାର ଅର୍ଥ ଯେ ଯାହା କରନ୍ତୁ ବା ଯାହାର ଯେପରି ସମାଲୋଚନା କରନ୍ତୁ ପଛେ, ତାହାର ନୈତିକ ପ୍ରଭାବ ଆଗରେ ଯେ କୌଣସି ବୌଦ୍ଧିକ ତଥା କୂଟନୈତିକ କାର୍ଯ୍ୟାବଳୀ ମ୍ଳାନପ୍ରଭ ହୋଇ ଆସିଛି । ଏଥିରେ ମନୁଷ୍ୟର ସାଧନା ଶ୍ରେଷ୍ଠତମ ଅବସ୍ଥାରେ ପଦାର୍ପଣ କରେ । ଏହା ହିଁ ଭାରତୀୟ ସଭ୍ୟତା ପରମ୍ପରା । ଗାନ୍ଧି, ଗୋପବନ୍ଧୁ, ବିନୋବା ଏବଂ ଆଚାର୍ଯ୍ୟ ହରିହର ଏ ଯୁଗରେ ଏହି ଉକ୍ତିର ଯଥାର୍ଥ ପ୍ରତିମୂର୍ତ୍ତି । ଦେଶର ଯେ କୌଣସି କ୍ଷମତାଶାଳୀ ବ୍ୟକ୍ତି ପ୍ରକାଶ୍ୟରେ କିମ୍ବା ଗୋପନରେ ଏମାନଙ୍କର ବିରାଟ ବ୍ୟକ୍ତିତ୍ୱ ନିକଟରେ ସର୍ବଦା ତିରସ୍କୃତ ହେଉଥିବେ ଏଥିରେ ସନ୍ଦେହ ନାହିଁ । ନୀତିଗତ ଭାବରେ ତଥା ଆଚରଣରେ ଅହିଂସାର ପ୍ରୟୋଗ ଆଚାର୍ଯ୍ୟ ମହାଶୟଙ୍କ ନିକଟରେ ଯେପରି ପ୍ରତିଷ୍ଠା ପ୍ରାପ୍ତ ହୋଇଥିଲା ତାହା ଅନ୍ୟମାନଙ୍କ ନିକଟରେ ହୋଇଥିଲା କି ନା ସନ୍ଦେହ । ଏହି ଆର୍ଷ ଚୈତନ୍ୟର ଅମୃତମୟଧାରା କାୟ ମନୋବାକ୍ୟରେ ସର୍ବଦା ଏ ଦେଶର

ଗ୍ରାମ, ପ୍ରାନ୍ତର ଓ ନଗରମାନଙ୍କରେ ପ୍ରବାହିତ ହୋଇ କ୍ଷୀଣ ହେଉ ବା ବ୍ୟାପକ ହେଉ ବହୁ ହୃଦୟରେ ଶାଶ୍ୱତ ଶାନ୍ତିର ଅମୀୟ ବିନ୍ଦୁ ବର୍ଷଣ କରିଅଛି ।

ଏହି ଆଦର୍ଶର ପଛରେ ତାଙ୍କର ଥିଲା ଗଭୀର ଈଶ୍ୱର ଭକ୍ତି ଓ ଗୀତାର ମହିମାମୟ କର୍ମପ୍ରେରଣା । ପ୍ରତ୍ୟହ ବ୍ରାହ୍ମ ମୁହୂର୍ତ୍ତରୁ ନିତ୍ୟକର୍ମର ପରିସମାପ୍ତି ପରେ ଭଗବତ୍ ପ୍ରାର୍ଥନାରୁ ଦିନାନ୍ତ ପର୍ଯ୍ୟନ୍ତ କର୍ମନିମିତ୍ତ ଶକ୍ତି ଆହରଣ ପାଇଁ ଅନନ୍ତ ସତ୍ତାଙ୍କ ନିକଟରେ ବ୍ୟାକୁଳ ନିବେଦନ ତଥା ଦିବାବସାନରେ ସୁଷମାମଣ୍ଡିତ କର୍ମଜନିତ ଭକ୍ତିପ୍ଳୁତ କୃତାଞ୍ଜଳି ତାଙ୍କୁ ଚିର ଶାନ୍ତିର ସ୍ନିଗ୍ଧ ସ୍ପର୍ଶ ପ୍ରଦାନ କରୁଥିଲା । ଉପନିଷଦର ଶାନ୍ତି ବାଚନ ଏବଂ ଏଦ୍ୱାରା ସାର୍ବଜନୀନ କଲ୍ୟାଣକର ଆଶୀର୍ବାଦ ବାଣୀହିଁ ଏହି ପ୍ରାର୍ଥନାରେ ନିତ୍ୟ ଆବୃତ୍ତ ହେଉଥିଲା । ଆଦିମ ଋଷିପ୍ରାଣ ଜଗତକୁ ଯେପରି ଦେଖିଥିଲେ ଏବଂ ତାହାର ମଙ୍ଗଳ ନିମନ୍ତେ ଯେପରି ହୃଦୟର ଗଭୀରତମ ପ୍ରଦେଶରୁ ବିଶ୍ୱସ୍ରଷ୍ଟାଙ୍କ ନିମିତ୍ତ ଆବେଗମୟ ନିବେଦନ ଅର୍ପଣ କରିଥିଲେ ସେହିପରି ଦେଶର କଲ୍ୟାଣ ଓ ମହିମାମୟ ଭବିଷ୍ୟତ ନିମିତ୍ତ ଏହି ମନୀଷୀଙ୍କର ପ୍ରାର୍ଥନାରେ ଦେହି ଆର୍ଯ୍ୟ ଓ ସନାତନ ନିବେଦନ ଝଙ୍କୃତ ହେଉଥିଲା । ଏହାହିଁ ତାଙ୍କୁ ପ୍ରତି ପଦକ୍ଷେପରେ ଆଶାବାଦୀ କରାଇଥିଲା । କେହି କେହି ତାଙ୍କୁ ଯେତେବେଳେ କୁହନ୍ତି—"ଆପଣଙ୍କ କଥାତ କେହି ଶୁଣୁ ନାହାନ୍ତି, ଆପଣ କାହିଁକି ଏ ବୃଦ୍ଧ ବୟସରେ ବୁଲି ବୁଲି ସମସ୍ତଙ୍କୁ ଏ ବାଣୀ ଶୁଣାଉଛନ୍ତି ? ଏ କଳି କାଳରେ କେହି କାହାରଠାରୁ କିଛି ଶୁଣିବାକୁ ଚାହାଁନ୍ତି ନାହିଁ ।" ସେ ହସି ହସି ଉତ୍ତର ଦିଅନ୍ତି—'ଏବେ ନ ଶୁଣନ୍ତୁ ଆମେ କହୁଥିବା ଯଦି କେତେବେଳେ କିଏ ଶୁଣିବେ, ବୁଝିବେ; ତେବେ ତ ସେଇ ଯଥେଷ୍ଟ ।'

ଦେଶର ରାଜନୀତି; କ୍ଷମତା, ଅର୍ଥ ଏବଂ ଚକ୍ରାନ୍ତରେ ପରିଣତ ହେଉଥିବା ବେଳେ ସେ ସେବା ଓ ସ୍ନେହର ମନ୍ତ୍ରରେ ରାଜନୀତିରେ ପ୍ରବେଶ କରିଥିଲେ । ଏଥିପାଇଁ ତାଙ୍କର ଆଦର୍ଶ ଥିଲା—ଦେଶ ଓ ଜାତିର ଉନ୍ନତିରେ ଆତ୍ମୋତ୍ସର୍ଗ । ଏଥିରେହିଁ ମାନବ ଜୀବନର ଅନ୍ତିମ ସଦ୍‌ଗତି ତଥା କର୍ମ ଯଜ୍ଞର ସଫଳ ଆହୁତି ପରିଲକ୍ଷିତ ହୁଏ—ଏହା ସେ ଦୀକ୍ଷାସ୍ୱରୂପ ଗୋପବନ୍ଧୁଙ୍କ ନିକଟରୁ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଗଭୀର ଭାବରେ ବିଶ୍ୱାସ କରିଥିଲେ ଏବଂ ଶେଷ ପର୍ଯ୍ୟନ୍ତ କାର୍ଯ୍ୟରେ ପାଳନ କରିଥିଲେ । ଏହି ସେବା ମାନବପ୍ରୀତି ଉପରେ ଦୃଢ଼ ଭାବରେ ପ୍ରତିଷ୍ଠିତ ଥିଲା ଏବଂ ଏଥିପାଇଁ ଜୀବନକୁ ବିପନ୍ନ କରିବା ନିମନ୍ତେ ଅକୁଣ୍ଠ ଉତ୍ସର୍ଗ ଦ୍ୱାରା ଜାତୀୟ ଚେତନା ଜାଗ୍ରତ କରାଇବାରେ ନିମିତ୍ତ ମାତ୍ର ହୋଇଥିଲା । ଆର୍ଯ୍ୟଙ୍କର ରାଜନୈତିକ ଆଦର୍ଶ ଥିଲା ସେବା । କିନ୍ତୁ ରାଜନୀତିରେ କ୍ଷମତାମୋହ, କୁଟନୀତି ତଥା ପ୍ରତାରଣା ବହୁଳ ଭାବରେ ପ୍ରବେଶ କରୁଥିବାରୁ ତାଙ୍କର ସରଳପ୍ରାଣ ସେଥିରୁ ମୁକ୍ତ ହୋଇ ସାନ୍ତ୍ୱନା ଲାଭ କରିଥିଲା ।

ଆଗ୍ରୁଫି ହରିହର ଥିଲେ ଜଣେ ଆଦର୍ଶ ଶିକ୍ଷକ । ଶିକ୍ଷାର ବିକାଶ ନିମନ୍ତେ ଏବଂ ଯୁଗର ଆହ୍ୱାନ ସହିତ ନିଜକୁ ପ୍ରସ୍ତୁତ କରି ଇଂରାଜୀ ଶିକ୍ଷାକୁ ସହଜ, ସରଳ ଓ ବୋଧଗମ୍ୟ କରିବାପାଇଁ ପିଲାଙ୍କ ନିମିତ୍ତ **Child's Easy first grammar** ଲେଖିଥିଲେ । ଅଦ୍ୟାବଧି ତାହା ଛାତ୍ରମାନଙ୍କ ନିମନ୍ତେ ଇଂରାଜୀ ଶିକ୍ଷାର ପଥ ପ୍ରଦର୍ଶକ ହୋଇ ରହି ଆସିଛି । ସେ ଉପନିଷଦର ଓଡ଼ିଆ ଅନୁବାଦ କରିଥିଲେ । ତାହା ବର୍ତ୍ତମାନ ସୁଦ୍ଧା ଛପା ହୋଇନି । ଭାରତର ଅତୀତ ପରମ୍ପରା, ଆଦର୍ଶ ତଥା ମାନବୋଚିତ କର୍ମର ପ୍ରତିପାଳନ, ସମାଜରେ ତାର ପ୍ରୟୋଗ ଓ ଲୋକଶିକ୍ଷା ମାଧ୍ୟମରେ ଦେଶରେ ନୈତିକତାର ମୂଳଦୁଆ ପକାଇବା ସତ୍ୟବାଦୀର ଚରମ ଓ ପରମ ଶିକ୍ଷାଗତ ଆଦର୍ଶ ଥିଲା । ଏଥିରୁହିଁ ପଣ୍ଡିତ ନୀଳକଣ୍ଠ ଗୀତା, ଆଗ୍ରୁଫି ହରିହର ଗୀତା ଓ ଉପନିଷଦ ଆଦିର ସର୍ବଶେଷ ବ୍ୟାଖ୍ୟା ସହିତ ଅନୁବାଦ କରିବାରେ ପ୍ରୟାସୀ ହୋଇଥିଲେ । ଆଗ୍ରୁଫି ହରିହର ଥିଲେ ଜଣେ ଛାତ୍ର ବତ୍ସଳ ଶିକ୍ଷକ । ଛାତ୍ରମାନଙ୍କ ଜୀବନରେ ପ୍ରବେଶ କରୁଥିବା ଆଳସ୍ୟ ଓ ବ୍ୟସନ ଭବିଷ୍ୟତ ଜୀବନରେ ସେମାନଙ୍କୁ କେବେହେଲେ ଉପଯୁକ୍ତ କରି ଗଢ଼ି ପାରିବ ନାହିଁ— ଏ ଧାରଣା ତାଙ୍କର ଥିଲା । ତେଣୁ ଛାତ୍ରମାନଙ୍କ ମଧ୍ୟରୁ ସେ କୁପ୍ରବୃତ୍ତି ଦୂର କରିବାପାଇଁ ସତ୍ୟବାଦୀ ସ୍କୁଲର ଛାତ୍ରାବାସରେ ତତ୍ତ୍ୱାବଧାରକ ଥିବା ବେଳେ ସେ ଛାତ୍ରମାନଙ୍କୁ ବ୍ରାହ୍ମ ମୁହୂର୍ତ୍ତରୁ ଉଠି ନିତ୍ୟକର୍ମ ଶେଷ କରିବା ଏବଂ ବିଳାସ ସାମଗ୍ରୀର ବ୍ୟବହାରରେ ଅଯଥା ସମୟ ନଷ୍ଟ କରିବା ପରିବର୍ତ୍ତେ ଅଧ୍ୟୟନ କରିବା ନିମିତ୍ତ ଉପଦେଶ ଦେଉଥିଲେ । କେବଳ ଉପଦେଶ ଦେବାରେ ତାଙ୍କ କାର୍ଯ୍ୟ ସୀମାବଦ୍ଧ ନଥିଲା । ନିଜେ ପ୍ରତ୍ୟେକଙ୍କୁ ଏଥିପାଇଁ ସସ୍ନେହ ଅନୁରୋଧ କରିବା ସଙ୍ଗେ ସଙ୍ଗେ ସୁନିୟନ୍ତ୍ରିତ ଉପାୟରେ ସେମାନଙ୍କୁ ସେହି କାର୍ଯ୍ୟରେ ପ୍ରବର୍ତ୍ତାଉଥିଲେ । କୌଣସି ଛାତ୍ର ଉପରେ ସେ କେବେ କ୍ରୋଧ ପ୍ରକାଶ କରି ନାହାନ୍ତି । ସହାସ୍ୟ ବଦନରେ ଛାତ୍ରମାନଙ୍କୁ ଉପଯୁକ୍ତ କରି ଗଢ଼ିବାପାଇଁ ଚେଷ୍ଟା କରୁଥିଲେ । ତାଙ୍କର ନିଷ୍କପଟ ବ୍ୟବହାର ତଥା ଆତ୍ମୀୟତା ଏବଂ ସର୍ବୋପରି ନିରାଡ଼ମ୍ବର ଜୀବନଯାତ୍ରା ତଥା ସେବା ଓ ତ୍ୟାଗ ଛାତ୍ରମାନଙ୍କ ମଧ୍ୟରେ ତାଙ୍କୁ ଦେବତାରୂପେ ପ୍ରତିଷ୍ଠିତ କରିଥିଲା । ଫଳରେ ଛାତ୍ରମାନଙ୍କ ମଧ୍ୟରେ ତାଙ୍କର ନିର୍ଦ୍ଦେଶ ଅଲଂଘ୍ୟ, ତାଙ୍କର ସ୍ପର୍ଶ ନିମିତ୍ତ ଛାତ୍ରପ୍ରାଣ ବ୍ୟାକୁଳ । ସେଠାରେ ଭୀତିର ଲେଶ ମାତ୍ର ନାହିଁ, ମାତ୍ର କର୍ମପାଇ ଅବାରିତ ଆକର୍ଷଣ ଓ ଆନନ୍ଦ ରହିଛି । ନିର୍ଦ୍ଧାରିତ କର୍ମ ଶେଷ ନ ହେଲେ ଛାତ୍ର ମନରେ ବ୍ୟଥା ଏବଂ ଅନୁଶୋଚନାର ତରଙ୍ଗ ଉଠେ । ଏହାହିଁ ହରିହରଙ୍କର ଆଦର୍ଶ ଆଗ୍ରୁଫି ଜୀବନର ସ୍ୱାକ୍ଷର ।

ଆଗ୍ରୁଫି ହରିହରଙ୍କ ଅନ୍ତର ଶିଶୁ ହୃଦୟଭଳି କୋମଳ, ସ୍ୱଚ୍ଛ ଏବଂ ଉଦର୍ପନାମସ୍ତ ଥିଲା । ଶିଶୁମାନଙ୍କୁ ଦେଖିଲେ ସେ ଆନନ୍ଦରେ ଚଞ୍ଚଳ ହେଉଥିଲେ ।

ନିଜେ ଯେପରି ଗୋଟିଏ କ୍ଷୁଦ୍ର ଶିଶୁ ସେହିଭଳି ତା ସହିତ ଖେଳରେ ମାତି ଯାଉଥିଲେ । ତାଙ୍କର ଆମାୟିକ ଗୁଣାବଳି ଏବଂ ଋଷି ପ୍ରାଣ ସଦା ସର୍ବଦା ସ୍ନେହବତ୍ସଳ ଥିଲା । ପ୍ରତ୍ୟେକ ଗୁରୁ, ଯୁବକ ଏବଂ ଶିଶୁ ହୃଦୟରେ ସେ ଭବିଷ୍ୟତର ଆଦର୍ଶ ମାନବ ଜୀବନର ଉଜ୍ଜ୍ୱଳ ପ୍ରକାଶ ଦେଖିବାକୁ ପାଉଥିଲେ । ତେଣୁ ପ୍ରତ୍ୟେକ ତାଙ୍କର ସ୍ନେହ ଭାଜନ ଓ ଆଦରଣୀୟ ହେଉଥିଲେ । ଏଥିପାଇଁ ଗୁରୁମାନଙ୍କ ଘରକୁ ଯାଇ ସେମାନଙ୍କୁ ଆଗ୍ରହର ସହିତ ଅତି ସ୍ନେହରେ ସେ ପାଠ ପଢ଼ାଇ ଦେଉଥିଲେ । ଏହାର ମୂଳରେ ଥିଲା ପ୍ରଚ୍ଛନ୍ନ ଈଶ୍ୱର ପ୍ରେମ । ଈଶ୍ୱର ସର୍ବତ୍ର ବିଦ୍ୟମାନ ଏବଂ ପ୍ରତ୍ୟେକ ଆତ୍ମାରେ ତାଙ୍କର ସାବର୍ଜନୀନ ପ୍ରକାଶ ହୋଇଥିବାର ସେ ଅନୁଭବ କରୁଥିଲେ । ସେଥିପାଇଁ ତାଙ୍କର ଶିଶୁ ତଥା ପ୍ରତ୍ୟେକ ମନୁଷ୍ୟ ଅତି ପ୍ରିୟ ଏବଂ ଅନ୍ତରଙ୍ଗ । ଏହି ଦେବଭାବ, ଏହି ଗଭୀର ଆତ୍ମ ବିଶ୍ୱାସ ଓ ସ୍ୱର୍ଗୀୟ ପ୍ରୀତି ତଥା ସ୍ୱଚ୍ଛ ଚପଳତା ମଧ୍ୟରେ ଦେବତାର ହୃଦୟ ପ୍ରତିବିମ୍ବିତ ହେଉଥିଲା ।

ଆଗ୍ନେୟୀ ହରିହର ଯୌବନାବସ୍ଥାରେ ପଣ୍ଡିତ ଗୋପବନ୍ଧୁଙ୍କର ଅନ୍ତରଙ୍ଗ ସହକର୍ମୀ ଥିଲେ । ସେବାର ସର୍ବଶ୍ରେଷ୍ଠପଥ ଲୋକସେବା ସେମାନଙ୍କ ଜୀବନର ବ୍ରତ ଥିଲା । ଏହାର ମୂଳ ଉତ୍ସଥିଲା, ଦୁର୍ଭିକ୍ଷ, ବନ୍ୟା ଏବଂ ବସନ୍ତ କବଳିତ ଅସଂଖ୍ୟ ନିରୀହ ଜନତାର ଦୁଃଖରେ ମ୍ରିୟମାଣ ହୋଇ ସେମାନଙ୍କ ଦୁଃଖ ଲାଘବ ନିମିତ୍ତ କର୍ମରତ ହେବାରେ । ସେ ଏହି ସେବାକୁ ଜନତା ଜନାର୍ଦ୍ଦନର ସେବା ବୋଲି କହୁଥିଲେ । ଦୁଃସ୍ଥ ଓ ଦରିଦ୍ର ଲୋକମାନଙ୍କ ମଧ୍ୟରେ ଦେବତାଙ୍କର ସତ୍ତା ଦେଖିବା ଏବଂ ସେବାରେ ସେହି ଦେବ ପ୍ରାଣରେ ସନ୍ତୋଷ ପ୍ରଦାନକରି ନିଜେ ବିମଳ ଆନନ୍ଦର ଅଧିକାରୀ ହେବାରେହିଁ ସେ ସତ୍ ଚିତ୍ ଓ ଆନନ୍ଦର ଉପାସକ ଭାବେ ଜୀବନକୁ ମହାର୍ଘ କରିଥିଲେ । ଏହାଥିଲା ତାଙ୍କର ଜୀବନ ଦର୍ଶନ ଓ ସାମାଜିକତା । ଏହି ସମାଜବାଦର ପ୍ରତିଷ୍ଠାପାଇଁ ସେ ନିଜର ଶେଷ ଜୀବନ ପର୍ଯ୍ୟନ୍ତ ସାଧନା କରି ଆସିଥିଲେ । ସେଥିରେ ଫଳ ଲଭିବା ତନ୍ମୟତା ନଥିଲା କିମ୍ବା ବିଫଳତାରେ ବିଚଳିତ ନଥିଲା । ମାତ୍ର କର୍ମ-ତତ୍ପରତାରେ ଅଶେଷ ଆନନ୍ଦର ଚିନ୍ମୟ ସଂଦର୍ଶନ ତାଙ୍କୁ ଆଣି ଦେଉଥିଲା ପ୍ରଶାନ୍ତର ଗମ୍ଭୀର ନୀରବତା ।

—*—

# ଉର୍ଜିତ

### ଶ୍ରୀ ହରିହର ମହାପାତ୍ର

ଆଚାର୍ଯ୍ୟ ମହାଶୟ କହିଲେ ଯେଉଁ ଆକୃତି ମନରେ ଦିଶିଯାଏ, ଆମ ବାଲ୍ୟ ମନରେ ଗ୍ରଥିତ ହୋଇ ରହିଥିବା ମୂର୍ତ୍ତିଠାରୁ ତାହା ଅତି ଭିନ୍ନ । ନିଷ୍ଠାପର ସର୍ବୋଦୟ ନେତା, ଗାନ୍ଧୀବାଦ ବିଶ୍ୱାସୀ ରାଜନୀତି ବିସ୍ପୃହ ଉପଦେଷ୍ଟାରେ ପରିଣତ ହୋଇଛନ୍ତି ସତ୍ୟବାଦୀ ବନବିଦ୍ୟାଳୟର ସୌମ୍ୟକାନ୍ତି ବହଳ ନିଶଧାରୀ କର୍ମଚପଳ, ହାସ୍ୟମୁଖର "ହରି ବାବୁ" ଯେ କଟକରେ ମାଷ୍ଟର କାମ ଛାଡ଼ି ଅକୁଣ୍ଠ ଚିତ୍ତରେ ଯାଇଥିଲେ ଗୋପବନ୍ଧୁଙ୍କ ପ୍ରେରଣାରେ ନୂତନ ଢାଞ୍ଚାର ଶିକ୍ଷାୟତନରେ ଶିକ୍ଷକ ହେବାପାଇଁ । ସେ ସ୍କୁଲର ପରିବେଶ ଥିଲା, ଭିତର କୋମଳ ଉପର କଠୋର । ସେଥିରେ ସେ ପ୍ରଥମରୁ ପୁରା ଖାପ ବୋଧହୁଏ ଖାଇ ନଥିଲେ । ପାଣି ଜମାଟ ବାନ୍ଧିଲେ ବରଫ ପାଲଟେ । ନୂଆ ମାଷ୍ଟରଙ୍କ ତାରଲ୍ୟ ଆମ ପିଲାଙ୍କ ଚଞ୍ଚଳ ମନରେ ଚମକ ଆକର୍ଷଣ ଯୋଡ଼ିଦେଲା । କଟକରୁ ଯାଇଥାନ୍ତି ବୋଲି ଚଢ଼ା ହମ୍ବିମ ତାଙ୍କର ଆପେ ଆପେ ପ୍ରାପ୍ୟ ହୋଇଗଲା, ତା' ଉପରକୁ ଆସିଲା ତାଙ୍କର ଅଙ୍କ ପଢ଼ାଇବାରେ ନୂଆ ଢଙ୍ଗର କୁହୁକ । ସେ ହୋଇଗଲେ ଅତି-ଶୀଘ୍ର ଅତିପ୍ରିୟ ପିଲାଙ୍କ ପାଖରେ, ପିଲାମାନଙ୍କ ଅଜ୍ଞାତସାରରେ ଓ ଅନ୍ୟ ମାଷ୍ଟରମାନଙ୍କ ଅନୁଭୂତି ବାହାରେ । ଦିଗ୍‌ବଳୟରେ ସୂର୍ଯ୍ୟ ଉଦିତ ହେଲା-ବେଳେ ଯେଉଁ ଅଲକ୍ତରଞ୍ଜିତ କୋମଳ ଆଲୋକଧାରା ଗଛପତ୍ରକୁ ସ୍ନିଗ୍ଧ ସମୁଜ୍ଜ୍ୱଳ ଆଭା ଦିଏ, ତାହାର କ୍ରମଶଃ ବର୍ଦ୍ଧମାନ ତାପରେ ଧରା ପୃଷ୍ଠର ଶୀତଳ ଜଡ଼ତା ଆପେ ଆପେ ବିଲୋପ ପାଇଯାଏ । ସେହି ତାପ କେହି ପ୍ରୟୋଗ କରୁଛି ବୋଲି ବାହାରର କୌଣସି ପ୍ରକ୍ରିୟାରୁ ବୁଝାଯାଏ ନାହିଁ । ସ୍ୱଭାବସିଦ୍ଧ ଭାବରେ ତାହା ଘଟିଥାଏ । ଠିକ୍ ସେହିପରି 'ହରିବାବୁ'ଙ୍କର ପ୍ରଭାବ ପିଲାଙ୍କ ଉପରେ କ୍ରମଶଃ ବିସ୍ତାର ଲାଭ କଲା । ଅନ୍ୟ ଶିକ୍ଷକଙ୍କ କଥା ଭିନ୍ନ ଥିଲା । "ହରିବାବୁ"ଙ୍କ ଦୃଷ୍ଟି ଥିଲା ତୀକ୍ଷ୍ଣ ; କିନ୍ତୁ କର୍ତ୍ତୃତ୍ୱବିହୀନ ଅନୁଶାସନରେ କ୍ଷମା-ସୂଚିତ ଅନୁରାଗ ଯୋଡ଼ି ହୋଇଥାଏ । ଆମେ ଚହଲି ଯାଉଁ ; କିନ୍ତୁ ବାଧା ଲାଗେନାହିଁ । ନିଜକୁ ସୁଧାରି ନ ନେବାଯାଏ, ନିଜ ଲାଜରେ ନିଜକୁ ମ୍ରିୟମାଣ ହେବାକୁ ପଡ଼େ ।

ତିନମାଇଲ ଦୂର ଗାଁରୁ ଯାଇ ଆସି ସ୍କୁଲରେ ପାଠ ପଢୁଥାଏ । ସନ୍ଧ୍ୟା-ବେଳେ ଗାଁ ଭିତରେ ଜଣକ ଦାଣ୍ଡଘରେ ପାଞ୍ଚ ଛଅଜଣ ମିଳି ଏକାଠି ବସି ପଢୁଁ । ପାଳି କରି ଗୋଟିଏ ଆଲୁଅର ତେଲ ଦେଉଥାଉ । ଶୀତ ଦିନ । ଅଳପ କୋହଲି ପାଗ । ଦାଣ୍ଡ ଦୁଆର ଆଉଜାଇ ଘର ଭିତରେ ପଢୁଥାଉ । ପଢ଼ା ଭିତରେ କେତେ-ବେଳେ ଗଳପ ଆରମ୍ଭ ହୋଇ ଯାଇଛି—ହସ ସାଙ୍ଗରେ ସ୍କୁଲ ମାଷ୍ଟର କାହାର କାହାରି କଣ୍ଠସ୍ୱର୍ କାରିକେଚର୍ ଚାଲିଥାଏ । ଆଉଜା ଦୁଆର ବାହାର ପଟରେ ଠକ୍ ଠକ୍ ଶବ୍ଦ ହେଲା । ସନ୍ଧ୍ୟାପରେ ଗାଁରେ ଚହଳ କିଛି ନ ଥାଏ । ଘରେ ଖାଇବା ଡ଼ାକ ପଡ଼ିବା ଯାଏ, ଆମ ପଠପଢ଼ା ବୈଠକ ଚାଲିବାର କଥା । ତଥାପି-ବଧାରକ ଆମେ ନିଜେ ନିଜେ । ଦୁଆର ଆରପଟେ ଶବ୍ଦ ହେବାରୁ ଆମେ ଭାବିଲୁ ବୋଧହୁଏ କାହାଘରୁ କିଏ ଆସି ଡ଼ାକୁଛି ଖାଇବାକୁ । ଦୁଆର ଖୋଲି ଦେଖିଲୁ ବେଳକୁ କେହି ନାହାନ୍ତି । ଭୂତ ଆସିଲା କି ଭାବି, ପୁଣି ଘରଭିତରେ ପଶିଲୁ ଏବଂ ସବୁଦିନ ପରି ଆଉ ଘଣ୍ଟାଏ ଦି’ ଘଣ୍ଟା ପରେ ଯେ ଯାହା ଘରକୁ ଗଲୁ । ତା’ ଆରଦିନ ସ୍କୁଲକୁ ଯାଇ କୌଣସି ଥିରେ କିଛି ବ୍ୟତିକ୍ରମ ଦେଖିବାର ଆଶଙ୍କା କାହାରି ମନରେ ନଥିଲା । ଦିନ ମଝି ବିଶ୍ରାମ ଛୁଟିରେ ଆସ୍ତେ ଆସ୍ତେ ଆସିଲେ “ହରିବାବୁ” ମୋ ଆଡ଼କୁ । ଆଉ ପିଲାଏ ପାଖରେ ଥାଆନ୍ତି । ପଚାରିଲେ; ଆମ ଭିତରେ କିଏ କେଉଁ ମାଷ୍ଟରଙ୍କର କାରିକେଚର୍ ଭଲ କରି ପାରିବ ? ବାପ୍‌ରେ ବାପ୍ ସତ୍ୟବାଦୀ ସ୍କୁଲ, ଆଦର୍ଶ ଢଙ୍ଗ, ଭିତରେ ନ ଥିଲେ ସୁଦ୍ଧା ବାହାରେ ଦେଖାଇବା ପାଇଁ ସବୁ ପିଲାମାନଙ୍କ ପ୍ରବଳ ପ୍ରୟାସ । କୃତ୍ରିମ ଆଚରଣ ଉପରେ ଦ୍ରଷ୍ଟାଠାରୁ ସ୍ରଷ୍ଟାର ବେଶୀ ନଜର ଥାଏ । ଏପରି ପରିବେଷ୍ଟନୀରେ ମାଷ୍ଟରଙ୍କ କାରିକେଚର କେବଳ ଅକ୍ଷମଣୀୟ ନୁହେ, ଅଭାବନୀୟ ବୋଲି ସମସ୍ତେ ବିଚାରିବା କଥା ସ୍ୱଭାବିକ କଥା । ସେ ପ୍ରଶ୍ନ ପଚାରିବାରେ ପିଲେ ଧରୁ ଆଚମ୍ବିତ ହେଲେ । କେହି କିଛି କହିଲେ ନାହିଁ, କିନ୍ତୁ ସ୍ଥିର ମନ ଗଣ୍ଠିରେ । ମୁଁ ଭାବୁଥାଏ, ଗଲା ରାତିରେ ଆମେସବୁ ଗାଁରେ ଯେଉଁ ଗପ ସପ, କାରିକେଚର କରିଥିଲୁ, ସେ କଥା କିଏ ଆସି ଆମ ଭିତରୁ ଭଲେଇ ହେବାପାଇଁ “ହରିବାବୁ” ଙ୍କୁ କହିଦେଲା କି ? ମୋ ମୁହଁରୁ ସେ ସଂଶୟ ବୋଧହୁଏ ଜଣା ପଡ଼ିଲା । ଆଉ କିଛି ନ କହି ସେ ଚାଲିଗଲେ । ଦୋଦପାଞ୍ଚରେ ପଡ଼ିଲୁ । ମନରେ ଭୟ; କିନ୍ତୁ ବାହାରେ କେହି ନ ଜାଣିଲା ପରି । ପରେ ବୁଝାଗଲା ଯେ ଗାଁରେ ପିଲାମାନେ କିପରି ପଢ଼ାପଢ଼ି କରୁଛନ୍ତି ତାହା ଦେଖିବା ବୁଝିବା ପାଇଁ ସ୍କୁଲ ମାଷ୍ଟରମାନଙ୍କ ଭିତରୁ ଜଣେ ଜଣେ ଭିନ୍ନ ଭିନ୍ନ ଗାଆଁକୁ ବେଳେବେଳେ ଯାଉଥାନ୍ତି । “ହରିବାବୁ” ଯାଇଥିଲେ ସେଦିନ ରାତିରେ ଆମ ଗାଁକୁ । ଅକ୍ଳେଶରେ ସେ ଦୁଆର ଫିଟାଇବାକୁ କହିପାରି ଥାଆନ୍ତେ ଓ ଆମକୁ ସେଇଠି ସିଧାସଳଖ ଭର୍ତ୍ସନା କରି ଆସି ପାରି ଥାଆନ୍ତେ । ଆଉ କାହା ହାବୁଡ଼େ ଆମେ ପଡ଼ିଥିଲେ, ହୁଏତ ସେପରି ଘଟିଥାଆନ୍ତା; କିନ୍ତୁ ‘ହରିବାବୁ’ଙ୍କ କୌଶଳ ଥିଲା ଭିନ୍ନ—ଚେତାଇ ଦେବା, ଚେହାଇବା ନୁହେ ।

ଆଉ ଗୋଟିଏ ଘଟଣା କହେ । ମାର୍ଚ୍ଚ ମାସ । ମୋ ପିତୃଦେବ, ଯେ ସ୍କୁଲ ଆସିଷ୍ଟାଣ୍ଟ ସବ୍‌ଇନ୍‌ସପେକ୍ଟର ଥିଲେ, କଟକ ଆସିଥାଆନ୍ତି ସାଲତମାମି କାମପାଇଁ । ଲୋକନାଥ ପଟ୍ଟନାୟକ ଥାଆନ୍ତି ଡେପୁଟି ଇନ୍‌ସପେକ୍ଟର । ତାଙ୍କର ତତ୍ତ୍ୱାବଧାନରେ ସାଲତମାମି କାମ ହେଉଥାଏ । ଲୋକନାଥବାବୁ କବି ବୈକୁଣ୍ଠ-ନାଥ ପଟ୍ଟନାୟକଙ୍କର ଦାଦା ଏବଂ ପଣ୍ଡିତ ଗୋପବନ୍ଧୁଙ୍କର ପ୍ରିୟ ସହପାଠୀ ବନ୍ଧୁ, ସତ୍ୟବାଦୀ ସ୍କୁଲର ବିଶେଷ ଅନୁରକ୍ତ ବ୍ୟକ୍ତି ଥିଲେ । କଟକ ଦେଖିବାପାଇଁ ମୁଁ କିଛିଦିନ ସେହି ଅବସରରେ ଆସିଥାଏ, ମହମ୍ମଦିଆ ବଜାରର ଗୋଟିଏ ଭଡ଼ା-ଘରରେ ରହିଥାଉ । ଦିନେ ସନ୍ଧ୍ୟାବେଳେ ପିତାଙ୍କ ସାଙ୍ଗରେ ମୁଁ ଆସିଲି ଲୋକ-ନାଥବାବୁଙ୍କ ଘରଠାକୁ । ଆଉ କେତେଜଣ ବୟସ୍କ ଲୋକ ମଧ୍ୟ ସେଠାରେ ବସି ଥାଆନ୍ତି । ମୁଁ ପିଲା, ସେମାନଙ୍କ ବୈଷ୍ଟନୀର ଦୂରେ ବାହାରେ । ନୟାସଡ଼କରୁ ହଳେ ଜୋତା ମୋ ପାଇଁ କିଣା ହେବାର ଥିଲା, ସେଥିପାଇଁ ମୁଁ ଆସିଥିଲି ପିତାଙ୍କ ସାଙ୍ଗରେ । ବାଟରେ ଲୋକନାଥବାବୁଙ୍କ ଘରେ କିଛି ସମୟ ପାଇଁ ଅଟକି ଥିଲୁ । କୌତୂହଳବଶତଃ ଲୋକନାଥ ବାବୁ ମତେ ପାଖକୁ ଡାକି ପଚାରିଲେ, କେଉଁଠି ଓ କେଉଁକ୍ଲାସର ପଢ଼ୁଛି । ଯେତେବେଳେ ଜାଣିଲେ ଯେ ମୁଁ ସତ୍ୟବାଦୀ ସ୍କୁଲ ବୋର୍ଡ଼ିଂରେ ରହି ପଢ଼ୁଥାଏ, ବୋର୍ଡ଼ିଂ କଥା ମେସ୍ କଥା ସବୁ ପଚାରିଲେ । ମୁଁ କହୁ କହୁ କହିଦେଲି "ଆମ ମେସ୍‌ରେ ଯେଉଁ ଡାଲି ହୁଏ, ସେଥିରେ ବୁଡ଼ ମାରିଲେ ମଧ୍ୟ ଡାଲି ପାଇଲେ ମିଳିବ ନାହିଁ" । ସମସ୍ତେ ହସିଲେ । ଲୋକନାଥବାବୁ ନିଜେ ଅଟ୍ଟେଲ ଲୋକ ଥିବାରୁ ଏ ଉତ୍ତରରେ ଟିକିଏ ବୋଧହୁଏ ପ୍ରସନ୍ନ ମଣିଲେ । ତା'ପରେ ଆମେ ଦୁହେଁ ପିତା ପୁତ୍ର ବଜାରକୁ ଯାଇ ଏକଟଙ୍କା ଚାରିଅଣା ମୂଲ୍ୟରେ ମୋ ପାଇଁ ହଳେ ଜୋତା କିଣି ବସାକୁ ଫେରିଲୁ । ଦୁଇ ତିନି ଦିନ ଉତ୍ତାରୁ ମୁଁ ସତ୍ୟବାଦୀ ବୋର୍ଡ଼ିଂକୁ ଫେରି ଆସିଲି । ବାକ୍‌ସ ତଳେ ନୂଆ ଜୋତା ହଳକ ରଖି ଛଟପଟ ମନରେ ଅପେକ୍ଷା କରି ରହିଥାଏ, କେଉଁ ସୁଯୋଗରେ ଜୋତା ପିନ୍ଧି-ବାହାରିବି । ସ୍କୁଲକୁ ଜୋତା ପିନ୍ଧିଯିବା ଯେପରି ଦୃଷ୍ଟିକଟୁ—ମାଟିରେ ପଟି ଉପରେ କ୍ଲାସରେ ବସିବା ମଧ୍ୟ ସେହିପରି ଅସୁବିଧା ଜନକ । ତେଣୁ ଅପେକ୍ଷା କରି ରହି-ଥିଲି ଗାଁକୁ ଯିବାର ମଉକା ମିଳିବା ପାଇଁ ସେତେବେଳେ ଜୋତା ପିନ୍ଧିବାର ଗୌରବ ଆଉ ଅଟକିବ ନାହିଁ । ଏହି ବ୍ୟବଧାନ ଭିତରେ ଦିନେ ବୋର୍ଡ଼ିଂ ସବୁ ବାରଣ୍ଡାରେ ଆମେ କେତେଜଣ ଠିଆ ହୋଇଛୁ, 'ହରିବାବୁ' ହଠାତ୍ ଆସି ପହଞ୍ଚିଲେ ସାଇକେଲରେ୍‌ରେ । ପାଦରେ ଖଡ଼ମ । ଖଡ଼ମ ପିନ୍ଧି ଅବଲୀଳାକ୍ରମେ ସାଇକେଲ୍‌ରେ ସତ୍ୟବାଦୀରୁ ଦାମୋଦରପୁର ( ୬ । ୭ ମାଇଲ ) ଯିବା ଆସିବା କରିବା ଆମେ ଦେଖିଛୁ । ସାଇକେଲ୍‌ରୁ ଓହ୍ଲାଇ ତାଙ୍କ କୋଠରୀକୁ ଯିବାବେଳେ କହିଗଲେ, " କିହୋ ମନ୍ତ୍ରାପାଟେ, କଅଣ ସବୁ କଟକରେ କଲ ? ହଉ, ହଉ ସବୁ ଜଣାଯାଇଛି ଯେ ।" ହସି ହସି ଚାଲିଗଲେ । ମୁଣ୍ଡରେ ଯେମିତି ଚଡ଼କ ପଡ଼ିଲା । ଭାବିଲି, କଟକରେ ବୋଧହୁଏ ଏକମାତ୍ର ଅକ୍ଷମଣୀୟ କାର୍ଯ୍ୟ କରିଛି

ଜୋତା ହଲେ ଆଣିବାରେ । ତାକୁ ଲକ୍ଷ୍ୟକରି ବୋଧହୁଏ ସତର୍କ ବାଣୀ ଶୁଣା-ଇଲେ । ଆଉ ଜୋତା ପିନ୍ଧେ କିଏ । ବାକ୍ସ ତଳୁ ପଦାକୁ ଯାହା ଟିକିଏ ଦେଖାଯାଉ ଥିଲା—ସେତକ ନିବୃଜ କରି, ଜୋତାକୁ ଭିତରକୁ ପୂରାଇଦେଲି । "ହରିବାବୁ"ଙ୍କ ପାଖରୁ ଲମ୍ବ ଡିବା ଆସିବା କରୁଥାଏ । କେତେଦିନ ଗଲାଗଲା । ପୁଣି ଥରେ ହାବୁଡେ ପଡ଼ିଗଲି । ଆଉ ମାଷ୍ଟରମାନେ ଥାଆନ୍ତି । ସେ କହିଲେ— ଜାଣିଛ ସବୁ, ଏ ହରି ଯାଇ କଟକରେ କଅଣ କହିଛି । ଆମ ମେସ୍‌ରେ ଯେଉଁ ଡାଲି ହୁଏ ସେଥିରେ କେବଳ ପାଣି—ମୁଣ୍ଡ ବୁଡାଇ ଖୋଜିଲେ ଫାଳେ ଅଧେ ଡ଼ାଲି ମିଳିବ କି ନାହିଁ ସନ୍ଦେହ । ଲୋକନାଥ ପଟ୍ଟନାୟକ ଏକଥା କହି ହସି ହସି ଗଡ଼ି ଯାଉଛନ୍ତି । ଏଥିରୁ ହିବରଣୀରେ ସମସ୍ତେ ହସାହସି ହେଲେ । ମୋ ମୁଣ୍ଡରୁ ବୋଝ ଅଧେ ହାଲ୍‌କା ହୋଇଗଲା ପରି ଲଗିଲା । କାରଣ ମୋର ଯେ ଭୟ ଥିଲା, ଜୋତା କଣା ଅପରାଧ ଅମାର୍ଜନୀୟ ହେବ, ତାହା କଟିଗଲା, କିନ୍ତୁ ଭାବିଲି ମେସ୍ ଖାଇବା ବିଷୟରେ ଅନ୍ୟମାନଙ୍କ ଆଗରେ, ବିଶେଷତଃ ବୟସ୍କ ମାନ୍ୟଗଣ୍ୟ ଲୋକଙ୍କ ସମକ୍ଷରେ ଏପରି ନିନ୍ଦାସୂଚକ କଥା କହିବା ମୋର ଅନୁଚିତ ହୋଇଛି । ନିଜ ଲାଜରେ ନିଜେ ସାରହେଲି । "ହରିବାବୁ" କଟୂକଥା କହିଲେ ନାହିଁ, କିମ୍ବା ପ୍ରକାଶରେ ମୁଁ ନିନ୍ଦିତ ବା ଭର୍ତ୍ସିତ ହେଲି ନାହିଁ । ତାଙ୍କର ଇଂଗିତ ସ୍ନେହସ୍ନିଗ୍ଧ, ରୁଢ଼ପବର୍ଜିତ; ମାନିଲେ ତମର ଭଲ । ନ ଶୁଣିଲେ ତାଙ୍କର ବିକାର ନାହିଁ । ଏହି ବୈଶିଷ୍ଟ୍ୟ ଅନନ୍ୟ ସାଧାରଣ ; ସେଥିଯୋଗୁ ପରବର୍ତ୍ତୀ କାଳର "ଆଚାର୍ଯ୍ୟ ହରିହର" ସାମାଜିକ ସ୍ତରରେ ରାଜନୀତିକ୍ଷେତ୍ରରେ ସର୍ବଜନପୂଜିତ ।' ମତଭେଦର ଉଗ୍ରତା, ଦୃଷ୍ଟିକୋଣର ଭିନ୍ନତା, କର୍ମଧାରାର ପାର୍ଥକ୍ୟ, କୃତିତ୍ୱର ଅହଙ୍କାର, କ୍ଷମତାର ଆସ୍ଫାଳନ, ତାଙ୍କର ଶୁଚିବନ୍ତ ଜୀବନରେ କେତେବେଳେ କୌଣସି ଦ୍ୱନ୍ଦ୍ୱ ଉଠାଇ ପାରିନାହିଁ । ଅବିଚଳିତ ଚିତ୍ତର ଅନ୍ତରାଳରେ ରଖିଛନ୍ତି ସମସ୍ତଙ୍କ ପାଇଁ ଅକୁଣ୍ଠ ସ୍ନେହର ଉତ୍ସ ।

—o—

# ଆଚାର୍ଯ୍ୟ ସ୍ମରଣେ

ଶ୍ରୀ ଇନ୍ଦୁଭୂଷଣ ମିଶ୍ର

ମୁଁ ଆଚାର୍ଯ୍ୟ ମହାଶୟଙ୍କ ଗାଁର ଲୋକ । ହେଲେ କଣ ହେବ ତାଙ୍କ ସଙ୍ଗେ ପରିଚୟ ବହୁତ ଡେରିରେ ହେଲା ।

ସେବାଗ୍ରାମ ତାଲିମରୁ ଫେରିବା ପରେ ନବରଙ୍ଗପୁରରେ ଗୋଟିଏ ଶିକ୍ଷକ ତାଲିମ କେନ୍ଦ୍ର ଆରମ୍ଭ କରି ଚଳେଇବା ଭାର ମୋ ଉପରେ ପଡ଼ିଲା । ସେତେବେଳେ ଆଚାର୍ଯ୍ୟ ମହାଶୟ ବେସିକ୍ ଏଜୁକେ-ଶନ୍ ବୋର୍ଡର ସଭ୍ୟ ଥିଲେ । ବୋଧହୁଏ ୧୯୫୦ ମସିହା ଜୁନ୍ ମାସରେ ସେ ନବରଙ୍ଗପୁର ଯାଇଥିଲେ । ସ୍କୁଲ ଆଡ଼େ ବୁଲିଗଲେ । ତାଟି ଘର, ଅଳ୍ପ ଗୁରୁଗୃହ, ଆଦିବାସୀ ହରିଜନ ପିଲାଙ୍କର ପ୍ରାଥମିକ ବିଦ୍ୟାଳୟଟିଏ ଦେଖି ଆଚାର୍ଯ୍ୟ ମହାଶୟ ଖୁସି ହେଲେ । ପିଲାମାନଙ୍କ ସଙ୍ଗେ ତାଙ୍କର ଖେଳ ଥଟ୍ଟା ପରିହାସ ମୋର ଏପର୍ଯ୍ୟନ୍ତ ମନେ ଅଛି ।

## ଯାଇବ ଟୋପି

ଦିନେ ଆଚାର୍ଯ୍ୟ ମହାଶୟଙ୍କର ଆମ ଘରେ ଭୋଜନର ବ୍ୟବସ୍ଥା ଥାଏ । ସେ ଆଉ ମୁଁ ପିଣ୍ଡାରେ ମସିଣାଟିରେ ବସି ଗପସପ କରୁଥିଲୁ । ତାଙ୍କର ଫଟା ଖଦଡ଼ ଲୁଗା ଦେଖାଇ କହିଲେ "ଦେଖିଲ, ସୂତା କାଟି ଜମା ରଖିଛି, ବୁଣେଇ ପାରିନାହିଁ, ଫଟା ଖଣ୍ଡିକରେ ବୁଲୁଛି ।" ଅନ୍ୟାନ୍ୟ ବହୁ ଦୁଃଖ ସୁଖ ପଡ଼ିଲାବେଳକୁ ମୋର ଜଣେ ବନ୍ଧୁ ପଦସ୍ଥ ସରକାରୀ କର୍ମଚାରୀ ଆମ ଘରକୁ ଆସିଲେ । ମୁଁ ତାଙ୍କୁ ଆମ ଘରେ ଅତିଥି ହେବା ପାଇଁ ନିମନ୍ତ୍ରଣ କଲି । ସେ ମଧ୍ୟ ଡାକବଙ୍ଗଳାର ବିକ୍ୟବସ୍ଥେଲେ ଛାଡ଼ି ଆମ ଘର ଶାକାନ୍ନରେ ରାଜି ହୋଇଗଲେ । ଆମେ ତିନିଜଣ ସେହି ମସିଣାରେ

ଏସି କଥାବାର୍ତ୍ତା ହେଉ ହେଉ ଆଚାର୍ଯ୍ୟ ମହାଶୟ ଉକ୍ତ କର୍ମଚାରୀଙ୍କର ଟୋପିଟି ଧରିଲେ ଆଉ କହିଲେ ଯେ ଏ ଟୋପି ଏ ଦେଶରେ ଆଉ ବ୍ୟବହାର କରୁଥିବା ଆଦୌ ଉଚିତ ନୁହେଁ । ଏଗୁଡ଼ିକ ଏକାବେଳେକେ ବର୍ଜନ କରିବା ଉଚିତ । ମୋତେ କଥାଟା ଭଲ ଲାଗିଲା ନାହିଁ । କାରଣ ମୋର ବନ୍ଧୁ କାଳେ ଅପମାନ ବୋଧ କରିଥିବେ । ମୁଁ କହିଲି "ଆପଣ ଟୋପିର ଉପକାରିତାକୁ କ'ଣ ଏକାବାରେ ଭୁଲିଗଲେ ?" "ନା, ଏହି ଟୋପିଟି ଗୋଟିଏ ଉପକାରୀ ବସ୍ତୁ । ଖରା ବର୍ଷାରୁ ଆମକୁ ରକ୍ଷା କରେ, ଏକଥା ମୁଁ ସ୍ୱୀକାର କରୁଛି, କିନ୍ତୁ ଠିକ୍ ଏହିପରି ଟୋପି ପିନ୍ଧି ବ୍ରିଟିଶ୍ ସରକାର ସମସ୍ତରେ ଆମ ଉପରେ ଜୁଲମ ଓ ଅତ୍ୟାଚାର କରାଯାଇଛି । ଆମକୁ ଭିଡ଼ ଭିଡ଼ ଥାନାକୁ ଓ ଜେଲକୁ ନିଆଯାଇଛି । ସୁତରାଂ ଏ ଟୋପିର ସ୍ଥାନ ଆଉ ଏ ଦେଶରେ ନାହିଁ; ଯାହାକୁ ଦେଖିଲେ ସେଇ ଦିନଗୁଡ଼ାକ ମନେ ପଡ଼ୁଛି । ଏ ଦେଶରୁ ଏ ଟୋପିକୁ ନିକାଲିବା ଦରକାର ।"

## ମନ୍ତ୍ରୀ କିଏ ଲୋକ ? ସିଏ ସରକାର !

ତା ଆରବର୍ଷ ଆଚାର୍ଯ୍ୟ ମହାଶୟ ପୁଣି ନବରଙ୍ଗପୁର ଆସିଲେ । ଏଥର ସାଙ୍ଗରେ କୃପାସିନ୍ଧୁ ହୋତା ମହାଶୟ ବି ଥିଲେ । ସେ ବୁଢ଼ା ସହିଦ ଭବନରେ ରହୁଥିଲେ । ଦେଖାକଲି, ଡ଼ାକିଲି ଆମ ତାଲିମ କେନ୍ଦ୍ରକୁ ଯିବାକୁ, ତୋ କରି ମନାକରିଦେଲେ । କହିଲେ, "ମୁଁ ଆଉ ତୁମ ବେସିକ୍ ମେମ୍ବର ନାହିଁ । ଇସ୍ତଫା ଦେଇଛି, କାହିଁକି ଯିବି ?" କହିଲି, "ଆପଣ ମେମ୍ବର ନ ହେଲେ କ'ଣ ମୌଳିକ ଶିକ୍ଷା ପ୍ରତି ଆପଣଙ୍କର ଶ୍ରଦ୍ଧା ଚାଲିଗଲା ? ଟିକିଏ ବୁଲି ଆସନ୍ତୁ, ଆମ ଗୁରୁଜୀମାନେ ଓ ପିଲେ ଆପଣଙ୍କୁ ଦେଖି ଖୁସି ହେବେ ।" ପୁଣି ରୁକ୍ଷ ସ୍ୱରରେ ମନା କରିଦେଲେ । କହିଲେ, "ତୁମର ସରକାରୀ ସ୍କୁଲ । ସୁତରାଂ ଯିବିନାହିଁ ।" "ମୁଁ କହିଲି, ଆଜ୍ଞା ଏଇଟା ପରା ଆପଣଙ୍କ ନବବାବୁଙ୍କ ସରକାର । ସ୍କୁଲଟା କିଣ ଆପଣଙ୍କର ନୁହେଁ ?" ତା ପରେ ମୁଁ ଯାଏ କୁଆଡ଼େ । ଖୁବ୍ ଚଡ଼ା ଗଳାରେ ମୋତେ ବୁଝାଇ କହିଲେ, "ବୁଝିଲ ଇନ୍ଦ୍ରବାବୁ ! ନବବାବୁ ପରା ସରକାର ହୋଇ ଗଲେ, ଆଉ ଆମର ହୋଇ ରହିଲେ କେଉଁଠି ? ମୁଁ ମ.ଇ ପାରିବି ନାହିଁ ।" ଅଗତ୍ୟା ନିରାଶ ହୋଇ ଫେରିଲି ।

## ସଚ୍ଚା ଶିକ୍ଷକ ଜୀବନରୁ ପଦେ

ତା ପରେ ଆଗ୍ରୁଯଁ୍ୟ ମହାଶୟଙ୍କ ସଙ୍ଗେ ଦେଖାହୁଏ ବରପାଲରେ ବୋଧହୁଏ ୧୯୫୫ରେ । ମୁଁ ସେତେବେଳେ ଆମେରିକାନ୍ ବନ୍ଧୁ ସେବା ସଙ୍ଘରେ କାମ କରୁଥାଏ । ଆମ ଘରେ ଦୁହେଁ ବସି ଦୁଃଖ ସୁଖ ହେଲୁ । ବିଦେଶୀ ବନ୍ଧୁ ଜଣେ ଅଧେ ତାଙ୍କୁ ଆମ ଘରେ ଦେଖା କରି କିଛି ପ୍ରଶ୍ନ ପଚାରିଲେ । କିନ୍ତୁ ଆଗ୍ରୁଯଁ୍ୟ ମହାଶୟଙ୍କର ସେମାନଙ୍କ ସଙ୍ଗେ କଥାବାର୍ତ୍ତା କରିବାର ସ୍ପୃହା ଦେଖିଲି ନାହିଁ । ଯାହା ହେଉ ତାଙ୍କ ସଙ୍ଗେ କଥାବାର୍ତ୍ତ ସରିବାରୁ ମୋତେ କହିଲେ, "ବୁଝିଲ ଇନ୍ଦୁବାବୁ ! ମୋତେ ସମ୍ବଲପୁର କଲେଜରେ ଅଧ୍ୟାପକମାନେ ଧରିଲେ କିଛି ଉପଦେଶ ଶୁଣିବା ପାଇଁ । ବଡ଼ ଅଡ଼ୁଆରେ ପଡ଼ିଲି । ସେମାନେ ଏତେ ପାଠ ପଢ଼ିଛନ୍ତି, ମୁଁ ତାଙ୍କୁ କି ଉପଦେଶ ଦେବି ? ତଥାପି ସେମାନେ ଛାଡ଼ିଲେ ନାହିଁ, କିଛି କହିବାକୁ ବାଧ୍ୟ କଲେ । ସେମାନେ କହିଲେ ବର୍ତ୍ତମାନ ଛାତ୍ର ବିଶୃଙ୍ଖଳା ଏତେ ଦେଖା ଦେଇଛି ଯେ ଆମ୍ଭେମାନେ ଆଦୌ ଭଲ ଶିକ୍ଷକ ହୋଇ ପାରୁ ନାହୁଁ । ଆପଣ ଶିକ୍ଷକ ହିସାବରେ ସୁନାମ ଅର୍ଜନ କରିଥିଲେ । ଆମକୁ କିଛି ଉପାୟ ବତାନ୍ତୁ । ସୁତରାଂ ବାଧ୍ୟ ହୋଇ ମୋତେ କହିବାକୁ ହେଲା ଯେ ମୋ ପାଖରେ କୌଣସି ଫର୍ମୁଲା ନାହିଁ ଏବଂ ମୁଁ ଅନେକ ଦିନ ତଳେ ଶିକ୍ଷକଥିଲି ଆପଣମାନେ ବର୍ତ୍ତମାନ ଯୁଗର ଶିକ୍ଷକ, ଅଧିକ ଜ୍ଞାନୀ ଓ ଶିକ୍ଷା-ଦାନ— କୁଶଳୀ । ମୁଁ କଣ ଆପଣଙ୍କୁ ବାଟ ଦେଖେଇବି । ସେମାନେ ଯେତେବେଳେ କିଛି କହିବାକୁ ବାଧ୍ୟ କଲେ, ମୁଁ ତାଙ୍କୁ ମୋର ଶିକ୍ଷକ ଜୀବନର ଅଭିଜ୍ଞ-ତାରୁ ଦିକଥା ଶୁଣେଇଲି ।" ସେ କପରି ପ୍ୟାରିମୋହନ ଏକାଡ଼େମୀରେ ଶିକ୍ଷକତା କଲେ ସେଇକଥା ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କଲେ । ତାହା ହେଲା ଏହି ।

ଯୁବକ ହରିବାବୁ (ଆଗ୍ରୁଯଁ୍ୟ ହରିହର) ଆଇ. ଏ. ପାଶ୍ ପରେ ଚାକିରି ଖୋଜିଲେ । ଏକାଡେମୀରେ ଶିକ୍ଷକ ଚାକିରିଟିଏ ମିଳିଲା । ପ୍ରଧାନ ଶିକ୍ଷକ ଥିଲେ ନମାଇଁ ବାବୁ । ସେ ହରିବାବୁଙ୍କୁ ଆନନ୍ଦରେ ଗ୍ରହଣ କଲେ ଏବଂ ତାଙ୍କୁ ଏକାଦଶ ଶ୍ରେଣୀରେ ଗଣିତ ପଢ଼ାଇବା ପାଇଁ ଆଦେଶ

ଦେଲେ । ସେ ଅନୁସାରେ ରୁଟିନ୍ ହୋଇଗଲା । ହରିବାବୁଙ୍କର ସର୍ବୋଚ୍ଚ ଶ୍ରେଣୀରେ ଗଣିତ ପଢ଼ାଇବା ପାଇଁ ମନରେ ଯଦିଓ ଦ୍ୱିଧା ଥିଲା, ତଥାପି ପ୍ରଧାନ ଶିକ୍ଷକଙ୍କ ଆଦେଶକୁ ଶିରୋଧାର୍ଯ୍ୟ ମନେ କରି ହଁ କଲେ । ଟିଚର୍ସ କମନରୁମ୍‌ରେ ଆଲୋଚନା ଚାଲିଲା । ସମସ୍ତେ ଚମକିତ ଓ ବ୍ୟଥିତ ହେଲେ । ସମସ୍ତ ଶିକ୍ଷକଙ୍କ ତରଫରୁ ଜଣେ ହରିବାବୁଙ୍କୁ କହିଲେ, "ଆପଣ ଭଲ ଲୋକ ଓ ଜ୍ଞାନୀ ଶିକ୍ଷକ ହୋଇପାରନ୍ତି । କିନ୍ତୁ ଉପର ଶ୍ରେଣୀରେ ଗଣିତ ନେବାକୁ ରାଜି ହୁଅନ୍ତୁ ନାହିଁ । କାରଣ ଆପଣଙ୍କର ଅଭିଜ୍ଞତା ନାହିଁ । ସେ ଶ୍ରେଣୀରେ ପିଲାମାନେ ଭାରି ଦୁଷ୍ଟ । ଆପଣ ପତଳା ଲୋକ । ଶୃଙ୍ଖଳା ରଖିବା ଆପଣଙ୍କ ପକ୍ଷେ କଷ୍ଟକର ହେବ । ଆମର ଅନୁରୋଧ ହେଡ୍-ମାଷ୍ଟରଙ୍କୁ ମନା କରିଦିଅନ୍ତୁ ଉପର ଶ୍ରେଣୀରେ ଗଣିତ ପଢ଼ାଇବା ପାଇଁ ହରିବାବୁ ବିନମ୍ର ସହିତ କହିଲେ, ପ୍ରଧାନ ଶିକ୍ଷକଙ୍କ ଆଦେଶକୁ ମାନି ନେଇ ସାରିଲା ପରେ ପୁଣି ମତ ବଦଳାଇବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ତା ପରେ ହରିବାବୁ ଏକାଦଶ ଶ୍ରେଣୀରେ ଗଣିତ ପଢ଼ାଇବାକୁ ଲାଗିଲେ । ଶିକ୍ଷକ ବନ୍ଧୁମାନେ ଉତ୍କଣ୍ଠାର ସହିତ ଅପେକ୍ଷା କଲେ ଫଳା-ଫଳ । ହରିବାବୁ ଗଲେ ଶ୍ରେଣୀକୁ, ଦେଖିଲେ ଅଧାଧିକ ଛାତ୍ର ତାଙ୍କର ବୟସର । ଦେଖିବାକୁ ଗୋଟିଏ ଗୋଟିଏ ମାଲ । ପିଲେ ନୂଆ ମାଷ୍ଟରଙ୍କୁ ଦେଖି ଆଖି ଠାରାଠାରି ହେଲେ, ଗଳା ସଫା କଲେ । ମଝିରେ ମଝିରେ କଥାବାର୍ତ୍ତା, ମନ୍ତବ୍ୟ ପ୍ରକାଶ ଇତ୍ୟାଦି ଚାଲିଲା । ହରିବାବୁ ହାରିବା ଲୋକ ନୁହନ୍ତି । ସେ ସବୁବେଳେ ଠିଆହୋଇ ପଢ଼ାନ୍ତି । ପିଲାମାନେ ଅଙ୍କ କଷିଲାବେଳେ କାସରେ ବୁଲି ଗୋଳମାଳ କରୁଥିବା ପିଲାମାନଙ୍କ ପାଖକୁ ଯାଇ ବତାବତି କରିଦିଅନ୍ତି । ଗୋଳମାଳ କିନ୍ତୁ ମଝିରେ ମଝିରେ ହୁଏ । ତା ପରେ ହରିବାବୁ ସବୁ ପିଲାଙ୍କର ନାଁ ଗୁଡ଼ାକ ମନେ ରଖି ତାଙ୍କୁ ସବୁ ନାଁ ଧରି ଡାକିଲେ । ସମସ୍ତଙ୍କ ନାଁ ଜାଣି ସାରିଲା ପରେ ସେମାନଙ୍କର ବାପାଙ୍କ ନାଁ ଓ ସାଇର ନାଁ ବୁଝିନେଲେ ଓ ଗୋଟିଏ ଟିପା ଖାତାରେ ଟିପି ରଖିଲେ । ଶ୍ରେଣୀରେ ପ୍ରତ୍ୟେକ ପିଲାସଙ୍ଗେ ବ୍ୟକ୍ତିଗତ ସମ୍ପର୍କ ସ୍ଥାପନ କରିବାରେ ଅନେକ ପରିମାଣରେ ଗୋଳମାଳ କମିଗଲା । ତା'ପରେ ହରିବାବୁ ଚାଲିଲେ ପିଲାଙ୍କ ଘରକୁ । ପ୍ରତିଦିନ ସନ୍ଧ୍ୟାରେ ସେ ଦୁଇ ତିନୋଟି ପିଲାଙ୍କ ଘରକୁ ଯିବା ଆରମ୍ଭ କରିଦେଲେ । ସାଇ ଭିତରେ ପଶି ପିଲାର ଘର ଖୋଜି ଖୋଜି ତା ଘରର ମହାଜନଙ୍କୁ ନାଁ ଧରି ଡାକନ୍ତି । ଛାତ୍ର

ଯଦି ଘରେ ଥାଏ ତାହା ହେଲେ ତା ବାପା ଅଛନ୍ତି କି କହି ଛାତ୍ରର ପଢାଘରେ ପ୍ରବେଶ କରନ୍ତି । ବାପା ଯଦି ଥାନ୍ତି ତାହେଲେ ପିଲାର ଭଲ ମନ୍ଦ ପଢ଼ାପଢି ସମ୍ବନ୍ଧରେ ତାଙ୍କ ସଙ୍ଗେ କଥାବାର୍ତ୍ତା କରନ୍ତି ଏବଂ ଛାତ୍ରକୁ ଦୁଇଖଣ୍ଡ ଅଙ୍କ ଟ୍ରାନ୍ସଲେସନ୍ ଠିକଏ କରାଇଦେଇ କରି ଆଉ ଗୋଟିଏ ଛାତ୍ରର ଘରକୁ ଯାଆନ୍ତି । ଏହିପରି ସେ ସବୁ ପିଲା ଓ ତାର ବାପା ବା ଅଭିଭାବକଙ୍କ ସଙ୍ଗେ ଘନିଷ୍ଠଭାବେ ପରିଚିତ ହୋଇଗଲେ । ଆଉ କ୍ଲାସ୍‌ରେ ଗଣ୍ଡଗୋଳ ତ ଦୂରର କଥା ଫୁସଫୁସ୍ ବି ବନ୍ଦ ହୋଇଗଲା । ହରିବାବୁଙ୍କ କ୍ଲାସରେ ଶୃଙ୍ଖଳା ଦେଖି ଶିକ୍ଷକମାନେ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ହରିବାବୁ ଠୋକାଲୋକ ହେଲେ ମଧ୍ୟ ଉଭୟ ଗୁରୁ ଓ ଛାତ୍ର ତାଙ୍କୁ ସମ୍ମାନ କଲେ । ଉଚ୍ଚ କ୍ଲାସ୍‌ରେ ଶୃଙ୍ଖଳାର ଅଭାବ ଦେଖାଗଲେ ହରିବାବୁଙ୍କୁ ଡାକରା ପଡ଼ିଲା ।

ଏତକ ଶୁଣି ମୁଁ କହିଲି, ଆଜ୍ଞା ! ଏଇଥିରୁ କଲେଜ ଶିକ୍ଷକମାନେ ନିଶ୍ଚୟ କିଛିତ ଶିଖିଥିବେ । ଆଜିକାଲି ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷ ସମ୍ବନ୍ଧ ଆଦୌ ରହୁନାହିଁ । ସ୍କୁଲରେ ଯେତିକ ଘଣ୍ଟାପାଇଁ ସମ୍ବନ୍ଧ ରହେ ତାହା ମେକାନିକାଲ୍ । ଆମର ପ୍ରଚଳିତ ଶିକ୍ଷାନୀତିରେ ଶିକ୍ଷକମାନେ ସାଇ ସାଇ ବାଣ୍ଟି ନେଇ ଛାତ୍ରମାନଙ୍କ ଘରକୁ ଯାଇ ବାପା ମା'ଙ୍କ ସହିତ ସମ୍ପର୍କ ରଖି ପିଲାର ସର୍ବାଙ୍ଗୀନ ବିକାଶ ପ୍ରତି ଦୃଷ୍ଟି ଦେବା ପଦ୍ଧତି ଅଛି । କିନ୍ତୁ ଏ ଯୁଗରେ ଏତେ କଷ୍ଟ କରୁଛି କିଏ ?

## ଶ୍ରୀକୃଷ୍ଣ ଏବେ ବିଦେଶ ଭ୍ରମଣରେ

ମୁଁ ଆଚାର୍ଯ୍ୟ ମହାଶୟଙ୍କୁ ବରପାଲି ଅଞ୍ଚଳରେ ଗୋଟିଏ ଗାଁରେ ଗୋଟିଏ ସଭାକୁ ଆମ ଗ୍ରାମସେବକ ଓ ଗ୍ରାମବାସୀଙ୍କ ତରଫରୁ ନିମନ୍ତ୍ରଣ କଲି । ଗାଁଟିରେ ହରିଜନ ବସ୍ତିରେ ହରିଜନମାନଙ୍କ ନିଜ ଚେଷ୍ଟା ଓ ଅନ୍ୟମାନଙ୍କ ସାହାଯ୍ୟରେ ଗୋଟିଏ କୂଅ ନିର୍ମାଣ କରାଯାଉଥାଏ । ଆଚାର୍ଯ୍ୟ ମହାଶୟ ସଭାକୁ ଗଲେ । ଆଶୀର୍ବାଦ ସହ ଦେଶ ଓ ସମାଜ ସମ୍ବନ୍ଧରେ ଲୋକଙ୍କୁ ପାଞ୍ଚକଥା ଶୁଣାଇଲେ । ଗୋପାଳନ କଥା କହୁ କହୁ କହିଲେ ଯେ ଗୋମାତାର ଦେଶ ପୁଣ୍ୟଭୂମି ଭାରତବର୍ଷରୁ ଶ୍ରୀକୃଷ୍ଣ ବଳରାମ ବିଦ୍ର- ଧନରୁ ବିଦାୟ ନେଇ ବିଦେଶ ଗମନ କରିଛନ୍ତି । ସେମାନେ ଯେତେ–

ବେଳେ ଦେଖିଲେ ଯେ ଯେତେ ଲଗିଲେ ବ ଏ ଦେଶରେ କୃଷି ଓ ଦୁଗ୍ଧ ଉତ୍ପାଦନ ଆଗେଇଲା ନାହିଁ ସେମାନେ ବାଧ୍ୟ ହୋଇ ଏ ଦେଶ ଛାଡ଼ି ଆମେରିକା, ହଲାଣ୍ଡ, ଅଷ୍ଟ୍ରେଲିଆ ପ୍ରଭୃତି ଦେଶରେ ଗସ୍ତ କରୁଛନ୍ତି । ହେଲେ କ'ଣ ହେଲା ଭାରତବର୍ଷ ପ୍ରତି ତାଙ୍କର ତ ଫେର ମମତା ଅଛି । ସେଇଥିପାଇଁ ଗହମ ଓ ଗୁଣ୍ଡଦୁଧ ସେ ଦେଶମାନଙ୍କରୁ ପଠାଇବାରେ ଲାଗିଛନ୍ତି । ହସ କୌତୁକ ଆଚାର୍ଯ୍ୟ ମହାଶୟଙ୍କୁ ଜଣାଥିଲା ଏବଂ ତା ଜରିଆରେ ମଜାକଥାମାନ କହି ସେ ବହୁତ ଶିକ୍ଷା ଦେଉଥିଲେ ।

## ଆଶୀର୍ବାଦ କରୁଛି ଭଲଲୋକ ହୁଅ ।

ତା ପରେ ବୋଧହୁଏ ୧୯୭୫-୭୬ରେ ଦେଖାଗଲା ବଳଙ୍ଗିରରେ । ବୟସାଧିକ୍ୟ ହେତୁ ଓଜ କହିବ କମିଯାଇଛି । ଟାଣି ଓଟାରି ହୋଇ ସଭାସମିତି ବା ସ୍କୁଲ କଲେଜକୁ ଯାଉଛନ୍ତି । ଆଉ କହିବାର ବଳ ବା ସ୍ପୃହା ନାହିଁ, କିନ୍ତୁ ମନର ଦମ୍ଭ ଅଛି, ବୁଲିବାର ଆଗ୍ରହ ଓ ଶ୍ରଦ୍ଧା ଅଛି । ଯେଉଁଠିକି ଗଲେ ଏଣିକି ଅତି ସଂକ୍ଷେପରେ କହନ୍ତି, "ଭଲ ମଣିଷ ହୁଅ । ଭଲ ସମାଜ ଗଢ଼ । ମୁଁ ସମସ୍ତଙ୍କୁ ଆଶିର୍ବାଦ କରୁଛି ।" ତାପରେ ମଝିରେ ମଝିରେ ଦେଖାହୁଏ, କଟକରେ ଅବା ଭୁବନେଶ୍ୱରରେ, ବାଟ ଘାଟରେ ଅବା ଲୋକମେଳରେ । ଆଖିକୁ ଦିଶୁନାହିଁ । ନମସ୍କାର କଲେ ସ୍ୱର ବାରି ସଙ୍ଗେ ସଙ୍ଗେ କହନ୍ତି ଇନ୍ଦବାବୁଟି ! କଣ ସବୁ ଭଲ, ପିଲେ ଭଲ ଅଛନ୍ତି ? ସ୍ୱର ବାରି ପାରି ଚହ୍ନୁଥିଲେ ଏବଂ କୁଶଳବାର୍ତ୍ତା ପଚାରୁଥିଲେ । କିନ୍ତୁ ଚଳିବା ବୁଲିବା ପାଇଁ ତାଙ୍କର ବରାବର ଆଗ୍ରହ ଥିଲା ।

## ଶର-ଶଯ୍ୟା

୧୯୬୯ ଓ ୭୦ରେ କଟକ ଭୂଦାନ ଅଫିସ ଯୋଗିଆ ଯାହାରେ ଭୀଷ୍ମଦେବ ସଦୃଶ ଶଯ୍ୟାଶାୟୀ ରହିଲେ । ଅନ୍ତିମ ବିଶ୍ରାମ ବହୁଦିନରୁ ଆରମ୍ଭ ହୋଇଗଲା । ସଜ୍ଞାହୀନ ଅବସ୍ଥାରେ ପାଖ ବର୍ଷକ ପରେ ଆଚାର୍ଯ୍ୟ ମହାଶୟଙ୍କ ମହାପ୍ରୟାଣ ଘୋଷିତ ହେଲା । ମର ଦେହ ସତ୍ୟବାଦୀରେ ଚିରଦିନ ପାଇଁ ବିଶ୍ରାମ ନେଲା ପଞ୍ଚସଖାଙ୍କ ଗହଣରେ ।

— - —-

# ଅନଭ୍ରା ସନତା

ଗୌରଶ୍ୟାମ ସାମନ୍ତରାୟ

୧୯୪୨ ଅଗଷ୍ଟ, ବର୍ତ୍ତମାନକୁ କାହିଁ କେତେ ଦୂରକୁ ଠେଲି ଦେଇ ଅତୀତ କେତେ ବିବର୍ତ୍ତନବାଦ ନେଇ ଦ୍ରୁତ ଗତିରେ ଆଗେଇ ଚାଲିଛି ଭବିଷ୍ୟତ ପଥେ । ଅତ୍ୟାଚାରୀ ଓ ଲୁଣ୍ଠନକାରୀ ଇଂରେଜ ସାମ୍ରାଜ୍ୟବାଦୀଙ୍କୁ ଏ ଦେଶରୁ ତଡ଼ି ଦେବା ପାଇଁ ସେଦିନର ଡାକ ଥିଲା 'ଭାରତ ଛାଡ଼' । 'କର ବା ମର' । ଏହି ଧ୍ୱନିରେ ଭାରତବର୍ଷର ଗଗନ ପବନ ମୁଖରିତ ହୋଇଥିଲା । ଜାତିର ଜନକ ମହାତ୍ମାଗାନ୍ଧୀ ଏ ସଂଗ୍ରାମର ସର୍ବୋଚ୍ଚ ସେନାନାୟକ ଭାବେ ଭାରତବାସୀଙ୍କୁ ଏହି ଆନ୍ଦୋଳନ ପାଇଁ ଡାକରା ଦେଇଥିଲେ ।

ଏହି ଦଳିତ ନିଷ୍ପେଷିତ ଓଡ଼ିଶା ବକ୍ଷରେ ସ୍ୱାଧୀନତା ଆନ୍ଦୋଳନର ବହ୍ନି ପ୍ରଜ୍ୱଳିତ ହୋଇ ଉଠିଥିଲା । ଓଡ଼ିଶାର ଋଷିପ୍ରାଣ ଆଚାର୍ଯ୍ୟ ହରିହର ଏହି ଆନ୍ଦୋଳନରେ ନିଜକୁ ସମର୍ପଣ କରି ଦେଇଥିଲେ । ସେହି ସମୟରେ ଏହି ତ୍ୟାଗପୂତ ମନୀଷୀଙ୍କ ଭାଷା ଏତେ ପ୍ରେରଣାଦାୟକ ଥିଲା ଯେ ମୋ ଭଳି ଗୋଟିଏ ସ୍କୁଲ ପିଲାର ଜୀବନରେ ମଧ୍ୟ ଚାଞ୍ଚଲ୍ୟ ଖେଳାଇ ଦେଇଥିଲା । ମୁଁ ମଧ୍ୟ ଘରର ସକଳ ମାୟା ମମତାକୁ ଭୁଲି ଆଚାର୍ଯ୍ୟ ମହାଶୟଙ୍କ ପ୍ରେରଣାରେ ସେହି ଗଣଆନ୍ଦୋଳନକୁ ଡେଇଁ ପଡ଼ିଥିଲି । ୧୯୪୨ ଠାରୁ ବରାବର ତାଙ୍କ ସମ୍ପର୍କରେ ଆସିବାର ସୁଯୋଗ ପାଇ-ଥିବାରୁ ତାଙ୍କର କର୍ମମୟ ଜୀବନ ସମ୍ପର୍କରେ ପଦେ ଅଧେ ଏଠାରେ ଲେଖୁଛି ।

ସେତେବେଳେ ବ୍ରହ୍ମପୁରରେ ଓଡ଼ିଶାର କେନ୍ଦ୍ର ଜେଲ ଥାଏ । ଅଟକ ଆଇନ୍ ବଳରେ ଗିରଫ ହୋଇଥିବା ପ୍ରାୟ ସାତଶହ ବନ୍ଦୀ ଆମେ

ସେଠାରେ ଥିଲୁ । ଜେଲ ଭିତରେ କେତେ ଗୁଡ଼ିଏ ମେସ ଥାଏ । ଆମେ କେତେକ ତରୁଣ 'ଆଜାଦ ମେସ' ଗଠନ କରିଥାଉ । ଜେଲ ମଧ୍ୟରେ ଯେତେବେଳେ ଗଣ୍ଡଗୋଳ ଓ ଦାବୀ ହାସଲ ପାଇଁ ଭଲମନ୍ଦ ହେଉଥିଲା ସେସବୁରେ ଆଜାଦ ମେସ ମୁଖ୍ୟ ଅଂଶ ଗ୍ରହଣ କରୁଥିଲା । ଅନ୍ୟାନ୍ୟ ମେସ ଛଡ଼ା ଗୋଟିଏ ଗୁଆଗ୍ନ ମେସ ମଧ ଜେଲ ଭିତରେ ଥିଲା । ଗୁଆଗ୍ନର ଅର୍ଥ କ'ଣ, ଆଜିର ଯୁବକ ଓ ଛାତ୍ରମାନେ ସହଜେ ଜାଣି ପାରିବେ ନାହିଁ, ଗୁ···ରୁ ଗୋପବାବୁ ଆ···ରୁ ଆଗ୍ନେୟ ହରିହର ଓ ଗ୍ନ···ରୁ ଗୃହିବାବୁ । ଏ ତିନିଜଣ ପକ୍କା ଗାନ୍ଧୀବାଦୀ ନେତା ରୂପେ ଆମ ଆଗେ ପରିଚିତ ଥିଲେ ଓ ତାଙ୍କ ନେତୃତ୍ୱରେ ଦଳେ ସେହି ଭଳି ଜୀବନ କଟାଉଥିଲେ । ଆମେ ଆଜାଦ୍ ମେସର ସଦସ୍ୟମାନେ ଜେଲ ଭିତରେ ଆମର ଦାବୀ ହାସଲ ପାଇଁ ସର୍ବଦା ଆନ୍ଦୋଳନରେ ସବୁବେଳେ ବ୍ୟସ୍ତ ଥାଉ । କମ୍ୟୁନିଷ୍ଟ ବନ୍ଦୀମାନେ ଥିବା ସାତ ନମ୍ବର ଓ୍ୱାର୍ଡ଼କୁ ବହୁ ସମୟରେ ଆମେ ଯାଉଥିଲୁ ଓ ଷ୍ଟାଲିନ୍ ଲେନିନ୍ ଦିବସମାନଙ୍କରେ ଭୂରି ଭୋଜନ କରିବା ସଙ୍ଗେ ସଙ୍ଗେ ମାର୍କସ୍‌ବାଦ ସଂପର୍କରେ ଆଲୋଚନା କରି ଫେରିଲା ବେଳେ ଆଗ୍ନେୟ ମହାଶୟଙ୍କ ହାବୁଡ଼ରେ ପଡ଼ିଥାଉ । କାରଣ ସେ ସବୁବେଳେ ବାରଣ୍ଡାରେ ବସି ସୂତା କାଟୁଥାନ୍ତି । ପିତୃତୁଲ୍ୟ ଅଧିକାର ନେଇ ସେ ଆମକୁ ଡାକି ପାଖରେ ବସାଇ ମହାତ୍ମାଗାନ୍ଧୀଙ୍କ ଅହିଂସା ନୀତି, ଶିକ୍ଷାନୀତି ଇତ୍ୟାଦି ବୁଝାଇ ବସନ୍ତି । ସେତେବେଳେ ସବୁ କଥା ଶୁଣିଲେ ମଧ ସେ ସବୁ ନୀତି-ବାକ୍ୟ ଆମ ମାନଙ୍କ ହୃଦୟକୁ ସ୍ପର୍ଶ କରି ପାରୁ ନ ଥିଲା । ଜେଲ ମଧ୍ୟରେ ଆମେ ଆମ କାମ କରି ଯାଉଥିଲୁ । ତଥାପି ଆଗ୍ନେୟ ମହାଶୟେ ବିଚଳିତ ନ ହୋଇ ଆମମାନଙ୍କୁ ସେସବୁ ବରାବର ବୁଝାଉଥିଲେ । ତାଙ୍କ ଅମାୟିକ ବ୍ୟବହାର ଯୋଗୁ ଆମେମାନେ ତାଙ୍କ ନିକଟରେ ବସି ସବୁ ବିଷୟ ଧୈର୍ଯ୍ୟର ସହ ଶୁଣୁ ଥିଲୁ । ବିଶେଷ କରି ଜେଲ ଭିତରେ ହିଂସାନୀତି ବର୍ଜନ କରିବାକୁ ଓ ଶୃଙ୍ଖଳାମାନି ଚଳିବାକୁ ସେ ବରାବର ଉପଦେଶ ଦେଉଥିଲେ । ଥରେ ଆମେମାନେ ଜେଲ ବାହାରୁ ଗୋଟିଏ ଜାତୀୟପତାକା ସଂଗ୍ରହ କରି ଜେଲ ଭିତରେ ପତାକା ଉତ୍ତୋଳନ କରିଥିଲୁ, ଯେଉଁଥିପାଇଁ ଭୀଷଣ ଲାଠି ଚାର୍ଜ ଆମମାନଙ୍କ ଉପରେ କରାଗଲା । ମାଡ଼ଖାଇ ଘାଏଲ ଅବସ୍ଥାରେ ବହୁ ଯୁବକ ପଡ଼ିଲେ । ସେତେବେଳେ ଆଗ୍ନେୟ ମହାଶୟ ନିଜେ ସମସ୍ତଙ୍କର ସେବା ଯତ୍ନ କରୁଥିଲେ । ନିଜର ପୁଅ ବେମାର ପଡ଼ିଲା ଭଳି ସେ

ଅନୁଭବ କରୁଥିଲେ ଓ ବରାବର ସମସ୍ତଙ୍କ ଖବର ବୁଝୁଥିଲେ । ତାଙ୍କୁ ଦେଖିଲେ ଜେଲ ଜୀବନର କଷ୍ଟ ସବୁ ଭୁଲିଯାଇ ହେଉଥିଲା । ଜେଲ ଭିତରେ ଦାବୀ ହାସଲ ପାଇଁ ସର୍ବଦା ଆନ୍ଦୋଳନ କରୁଥିଲେ । ଆଚାର୍ଯ୍ୟ ହରିହରଙ୍କ ପ୍ରତି ସମସ୍ତଙ୍କର ପ୍ରଗାଢ଼ ଭକ୍ତି ଥିଲା ।

ମହାତ୍ମାଜୀଙ୍କ ଉପବାସ ଓ ମୁକ୍ତି ପରେ ଆମେମାନେ ସବୁ ଜେଲରୁ ମୁକ୍ତ ହେଲୁ । ପୁରୀରେ ପହଞ୍ଚି ମୁଁ ମୋର ଭବିଷ୍ୟତ କାର୍ଯ୍ୟପନ୍ଥା ନେଇ ବଡ଼ ଚିନ୍ତିତ ଥିଲି । ଏହି ପ୍ରଶ୍ନର ସମାଧାନ ଆଚାର୍ଯ୍ୟ ହରିହରଙ୍କ ଚିଠି ପାଇବା ପରେ ହୋଇ ଯାଇଥିଲା ଓ ସେବେଠୁଁ ମୋ ଜୀବନର ଗତିଧାରା ବଦଳିଗଲା । ମୁଁ ଘରର ମାୟା ମମତା ଛାଡ଼ି ଗାନ୍ଧୀଜୀଙ୍କ ପାଖେ ଅଧ୍ୟୟନ ପାଇଁ ସ୍ଥିର କରି ନେଲି ଓ ସେହି ଅନୁଯାୟୀ ସେବାଗ୍ରାମ ଯାଇ ସେଠାରେ ଦୀର୍ଘ ଦିନ ଧରି ଅଧ୍ୟୟନ କଲି । ମଝିରେ ମଝିରେ ଆଚାର୍ଯ୍ୟ ହରିହର ସେବାଗ୍ରାମ ଯାଆନ୍ତି ଓ ମୋ ସଙ୍ଗେ ଅଧ୍ୟୟନ କରୁଥିବା ଓଡ଼ିଆ ପିଲାଙ୍କୁ ଆଶୀର୍ବାଦ କରିଆନ୍ତି । ତାଙ୍କର ପୁତ୍ରତୁଲ୍ୟ ସ୍ନେହ ପାଇ ଆମେ ବେଶ୍ ଶାନ୍ତି ଅନୁଭବ କରୁଥିଲୁ । ଜେଲରୁ ମୁକ୍ତ ହେଲା ପରେ ଆଚାର୍ଯ୍ୟ ହରିହର ଓଡ଼ିଶାର ଗ୍ରାମାଞ୍ଚଳମାନ ବୁଲି କର୍ମୀମାନଙ୍କ ସଂଗେ ଓ ସେମାନଙ୍କ ପରିବାରବର୍ଗଙ୍କ ସଙ୍ଗେ ସଂପର୍କ ସ୍ଥାପନ କରି ଯତ୍ନେଇ ସଂପର୍କ ରଖୁଥିଲେ । ପୁରୀ ଜିଲ୍ଲା କୋଣାର୍କ ନିକଟ ଗଡ଼କୁପାସ ମୋର ଗାଁ ଥିଲା ଓ ମୋ ନେତୃତ୍ୱରେ ୮୧୦ ଜଣ ଗାଁରୁ ଆନ୍ଦୋଳନରେ ଭାଗ ନେଇ ଜେଲ ବରଣ କରିଥିଲେ । ସେତେବେଳେ ଆମ ଗାଁ ଖୁବ୍ ଚହଳ ପକାଇ ଥିଲା । ତେଣୁ ଆଚାର୍ଯ୍ୟ ମହାଶୟ ବରାବର ଆମ ଗାଁକୁ ଆସୁ ଥିଲେ । ଆମ ଘର ମାନଙ୍କୁ ଯାଇ ସମସ୍ତଙ୍କୁ ଦେଶ କଥା ଓ ଗାନ୍ଧୀଜୀଙ୍କ ନୀତି ଆଦର୍ଶକୁ ବୁଝାଉ ଥିଲେ । ଗାଁ ଗହଳର ଏକତା ପାଇଁ ମୋର ଜଣେ ସହକର୍ମୀ ଶ୍ରୀ ନରେନ୍ଦ୍ର ପାଣ୍ଡ ୨୧ ଦିନ ଆମରଣ ଅନଶନ କରିବାକୁ ସ୍ଥିର କଲେ । ଏ ଖବର ମୁଁ ସମ୍ବାଦପତ୍ରକୁ ପଠାଇବା ସଙ୍ଗେ ସଙ୍ଗେ ଆଚାର୍ଯ୍ୟ ହରିହରଙ୍କୁ ଖଣ୍ଡିଏ ଚିଠି ଲେଖି ଜଣାଇଲି ଓ ମତାମତ ଜାଣିବାକୁ ଚାହିଁଲି । ଅବଶ୍ୟ ତାଙ୍କ ଠାରୁ ଉତ୍ତର ଆସୁ ଆସୁ ଅନଶନ ଆରମ୍ଭ ହୋଇ ଯାଇଥିଲା । କାରଣ ସେତେ-ବେଳେ ଆଚାର୍ଯ୍ୟ ମହାଶୟ ଗୋପବନ୍ଧୁ ସେବାସଦନରେ ନ ଥିଲେ । ରାସ୍ତାରେ ବୁଲିଯାଇଥିବାରୁ ଚିଠିର ଜବାବ ଆସିବାରେ ଡେରି ହେଲା । ଚିଠିର ନକଲ ନିମ୍ନମତେ ଦେଲି ।

ଆତ୍ମମୁକ୍ତାନ ଗୌରବଶାଳୀ, ତମେର ପତ୍ର ପାଇଲି । ତମେ ଏତେ ବ୍ୟସ୍ତ ବା ତର-ତର ହେବା ଦରକାର ନାହିଁ, ଲୋକେ ହଠାତ୍ ଆମ କଥା ଶୁଣି ଯିବେ ନାହିଁ । ସେଥିପାଇଁ ଧୈର୍ଯ୍ୟ, ସାହାସ ଓ ତଗଭବଳ ଆବଶ୍ୟକ । ଆମେ ଆମ କାର୍ଯ୍ୟରେ ଦୃଢ଼ଭାବେ ଲାଗି ରହିବା, ସେମାନଙ୍କୁ ବୁଝାଇବା । ତମେ ଘରେ ରହିଥିବା ପର୍ଯ୍ୟନ୍ତ ସେ କାମ ନିଷ୍ଠାର ସହିତ କର । ସେହି ଆଦର୍ଶ ଲୋକଙ୍କ ଆଗରେ କାର୍ଯ୍ୟରେ ରଖ, ଏହାହିଁ ବଡ କାମ । ଦେଶର ଅବସ୍ଥା ତ ଏପରି । ସେହି ପରିସ୍ଥିତି ଭିତରେ କାମ କରିବାକୁ ହେବ । ନରେନ୍ଦ୍ର ଏତେ ଚଞ୍ଚଳ ଉପବାସ କରିବା ଦରକାର ନ ଥିଲା । ଯେଉଁ ଉଦ୍ଦେଶ୍ୟରେ ହେଉ ସତ୍ୟାଗ୍ରହର ଅସ୍ତ୍ର ଉପବାସ ବୋଲି ମହାତ୍ମାଜୀ କହନ୍ତି । ପ୍ରକୃତ ମଧ୍ୟ ତାଇ । କାମ ସର୍ବଦା କରି ଲୋକଙ୍କର ଆଳସ୍ୟ ଓ ନିଶ୍ଚେଷ୍ଟତା ଦୂର କରିବାକୁ ହେବ, ସେଇଥିପାଇଁ ଉପବାସ କରିବା ନିରର୍ଥକ, ମନୁଷ୍ୟ ଯଥାସାଧ୍ୟଚେଷ୍ଟା କରି ଅକୃତକାର୍ଯ୍ୟ ହେଲେ ଶେଷରେ ଅନ୍ୟ ବସ୍ତୁର । ଆଗେ କାମ ସର୍ବଦା ନିଜେ କରି ଅନ୍ୟଙ୍କୁ କରାଇବ ଓ ସେଇ ଆଦର୍ଶରେ ଅନୁପ୍ରାଣିତ ହେବ । ନିଜର ଚରିତ୍ର ଠିକ୍ କରିବ ଓ ସତ୍ୟ ଅହିଂସା ପାଳନ କରିବ ତା ପରେ ଉପବାସ ପ୍ରଭୃତି । ନରେନ୍ଦ୍ରକୁ କହିବ ଏ ଉପବାସର ସମୟ ନୁହେଁ, ଉପାସ ବନ୍ଦକରି କାମରେ ନିତ୍ୟ-ଲାଗିବା ଦରକାର । କର୍ମମୟ ଜୀବନ ସବୁର ମୂଳ । ସମୟ ସମୟରେ ପତ୍ର ଦେଉଥିବ । ସମୟ ହେଲେ ଯେତେଶୀଘ୍ର ପାରେ ଯିବି । ମୋର ସ୍ନେହାଶୀ-ର୍ବାଦ ଗ୍ରହଣ କରିବ । ଅନ୍ୟାନ୍ୟ ସମସ୍ତଙ୍କୁ ଜଣାଇଦେବ । ଏ ସବୁ କାର୍ଯ୍ୟରେ ଭଗବାନ ତମକୁ ନିଶ୍ଚୟ ସହାୟ ହେବେ । ଇତି

ଶୁଭାକାଂକ୍ଷୀ
ହରିହର ଦାସ
କଟକ, ତା ୧୨ । ୨ । ୪୬

ଆଚାର୍ଯ୍ୟ ମହାଶୟଙ୍କର ଏହି କ୍ଷୁଦ୍ର ଚିଠିରୁ ସମାଜପ୍ରତି ତାଙ୍କର ଭାବନା ଜାଣିହେବ । ଗଠନ ମୂଳକ କାର୍ଯ୍ୟରେ ଯେତେବେଳେ କଠିନ ସମସ୍ୟା ଦେଖାଯାଏ ମୁଁ କାହିଁକି ପ୍ରତ୍ୟେକ ସମାଜସେବୀ ତାଙ୍କର ପରା-ମର୍ଶ ଓ ଆଶୀର୍ବାଦ ଗ୍ରହଣ କରି କାର୍ଯ୍ୟ କରୁଥିଲୁ । ଫଳରେ ସମ୍ପୃକ୍ତ ଅଞ୍ଚଳର କର୍ମୀମାନେ ତଥା ଜନସାଧାରଣ ସେଥିରେ ସନ୍ତୋଷ ପ୍ରକାଶ

କରୁଥିଲେ । ଏଇ ମହାତ୍ମ ପରାମର୍ଶରେ ୧୦ ଦିନ ପରେ କର୍ମୀ ତାଙ୍କର ଅନସନ ଭଂଗକରି ନିଜର କର୍ତ୍ତବ୍ୟ କର୍ମରେ ଆଗେଇ ଆସିଲେ । ମୁଁ ତ ଜଣେ ସାଧାରଣ କର୍ମୀ । ହଜାର ହଜାର କର୍ମୀ ଓ ନେତା ଆଚାର୍ଯ୍ୟ ହରିହରଙ୍କ ସଂପର୍କରେ ଆସିଛନ୍ତି । ସେମାନେ ଭଲଭାବେ ଜାଣିଥିବେ ସେ କ'ଣ ଥିଲେ ? ସେତେବେଳେ ସବୁ ପ୍ରକାର ପ୍ରଲୋଭନକୁ ଜଳାଞ୍ଜଳି ଦେଇ ସେ ସାଧାରଣ ସେବକ ଜୀବନରେ ରହିବାକୁ ସିଦ୍ଧାନ୍ତ କରି ନେଇଥିଲେ ଓ ଶେଷ ଜୀବନ ପର୍ଯ୍ୟନ୍ତ ଉକ୍ତ ସିଦ୍ଧାନ୍ତରେ ଅଟଳ ଓ ନିର୍ଭିକ ଥିଲେ । ଆଚାର୍ଯ୍ୟ ମହାଶୟଙ୍କ ପରିବାର ବୋଇଲେ ଆମେ ସବୁ ବୁଝୁ, ସମାଜରେ ଥିବା ସମସ୍ତ ନରନାରୀ । ଏହା ତାଙ୍କର ସ୍ୱଭାବ ସୁଲଭ ଗୁଣ ଥିଲା । ଏଥିରେ କୃତ୍ରିମତା କିଛି କେହି କେବେ ଅନୁଭବ କରି ନାହାନ୍ତି । ତାଙ୍କ ହୃଦୟରେ ବିଶ୍ୱ ପାରିବାରିକ ଭାବନା ପରିପୂର୍ଣ୍ଣ ଭାବେ ଜମାଟ ବାନ୍ଧି ରହିଥିଲା । ତେଣୁ ତାଙ୍କ ନିକଟରେ ଯେତେକ କର୍ମୀ ରହୁଥିଲେ ସେମାନେ ନିଜ ପରିବାରର କଥା ଭୁଲିଯାଇ ସମାଜ ସେବା କାମରେ ଆଗେଇ ଯାଇ ପାରୁଥିଲେ । ସେ ସବୁବେଳେ ସଚ୍ଚା ନାଗରିକ ଶିକ୍ଷାଦ୍ୱାରା ମନୁଷ୍ୟ ଜୀବନକୁ ସରସ ସୁନ୍ଦର କରି ଗଢି ତୋଳି ଥୋଇବାକୁ ଆପ୍ରାଣ ଚେଷ୍ଟା ଚଳାଇ ଥିଲେ । ସେ ସେଥିପାଇଁ ଶପଥ ନେଇଥିଲେ । ଧୋଇପୁଆ ଅଞ୍ଚଳ ଲୋକଙ୍କୁ ଆଖି ଆଗରେ ରଖି ସରଳ ଜୀବନ ଯାପନ କରିବା ସଙ୍ଗେ ୨ ସେମାନଙ୍କ ପାଇଁ କାନ୍ଦୁଥିଲେ ଓ ଜୀବନକୁ ଦଳିତା ପରି ଜାଳି ଦୁଃଖୀ ଦରିଦ୍ରଙ୍କ ମୁହଁରେ ହସ ଫୁଟାଇବାକୁ ଓ ନୂତନ ଆଲୋକ ଦେବାକୁ ଚେଷ୍ଟା କରିଥିଲେ । ନିଜ ହାତକଟା ସୂତାରେ ଗ୍ରେଟ ଓ ସାଧାରଣ ଖଦି କପଡ଼ା ପିନ୍ଧି, ପାଦରେ ଚାଲି ଚାଲି ଦୁଃଖୀ ଲୋକଙ୍କ ସମସ୍ୟା ସଙ୍ଗେ ନିଜକୁ ମିଶାଇ ଦେଇ ସମସ୍ତଙ୍କ ସୁଖ ଦୁଃଖ ବୁଝୁଥିଲେ । କଠୋର ସାଧନା ଦେଇ ଜୀବନ ଅତିବାହିତ କରୁଥିଲେ ମଧ୍ୟ ଅନ୍ୟପ୍ରତି ଆଦର ଓ ଶିଶୁ ବତ୍ସଳତା ସ୍ୱଭାବ ତାଙ୍କଠାରେ ପରିପୂର୍ଣ୍ଣ ଭାବେ ଥିଲା । ଆଚାର୍ଯ୍ୟ ହରିହର ଅତି ରକ୍ଷଣଶୀଳ ଓ ପ୍ରତିଷ୍ଠିତ ବ୍ରାହ୍ମଣ କୁଳରେ ଜନ୍ମ ଗ୍ରହଣ କରି ଥିଲେ ମଧ୍ୟ ସେହିଭଳି ସମାଜକୁ ପଛରେ ପକାଇ ଜନ ସେବାର ବ୍ରତ ନେଇଥିଲେ । ଯାହାକି ତାଙ୍କ କର୍ମମୟ ଜୀବନରୁ ଜଣା ପଡି ଥିଲା । ବେଶପରିଧାନ, କଥାବାର୍ତ୍ତା, ଚାଲିଚଳନ ଓ ଦୈନନ୍ଦିନ କାର୍ଯ୍ୟରେ ଏ ଛବି ପ୍ରତିବିମ୍ବିତ ହେଉଥିଲା । ପ୍ରକୃତରେ ସେ ଜଣେ ସମାଜବାଦୀ ନେତା

ଥିଲେ । ଶେଷ ନିଶ୍ୱାସ ନେବାର ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ଆଚାର୍ଯ୍ୟ ମହାଶୟ ତାଙ୍କ ନୀତିରେ ଅଟଳ ରହିଥିଲେ, ଯାହାକୁ କଠୋର ସାଧନା ବୋଲି କୁହାଯାଉଛି ଓ ଆଜିର ସମାଜରେ ଅସମ୍ଭବ ବୋଲି ମନେ କରାଯାଉଛି । ସେ ହୁଏତ ଚାହିଁଥିଲେ ଓଡ଼ିଶା କାହିଁକି ଭାରତରେ ଉଚ୍ଚ କ୍ଷମତାର ଅଧିକାରୀ ହୋଇ ପାରି ଥାନ୍ତେ କିନ୍ତୁ ସେ ସବୁବେଳେ କ୍ଷମତା ମୋହରୁ ନିଜକୁ ବହୁ ଦୂରରେ ରଖିଥିଲେ । ତାଙ୍କ ଜୀବନର ପ୍ରତିଟି ମୁହୂର୍ତ୍ତ ସମାଜ ସେବା କାର୍ଯ୍ୟରେ ନିୟୋଜିତ କରି ସେ ଆତ୍ମ ସନ୍ତୋଷ ଅନୁଭବ କରୁଥିଲେ । ବାସ୍ତବିକ ତାହାହିଁ ସ୍ଥିତପ୍ରଜ୍ଞର ଲକ୍ଷଣ । ଓଡ଼ିଶାର ପୁରପଲ୍ଲୀ ଗିରିକନ୍ଦର ବୁଲି ନିଃସ୍ୱ ଲୋକଙ୍କ କୁଡ଼ିଆରେ ଆତିଥ୍ୟ ଗ୍ରହଣ କରି ପେଜ, ଜାଉ, ଶାଗ ଓ ଫଳ ମୂଳ ଖାଇ ବେଶ୍ ଆନନ୍ଦ ଅନୁଭବ କରୁଥିଲେ । ପ୍ରକୃତ ସମାଜବାଦୀର ତାଜାରକ୍ତ ତାଙ୍କର ପ୍ରତି ଧମନୀରେ ପ୍ରବାହିତ ହେଉଥିଲା ।

ମୁଁ ଯେତେବେଳେ ପ୍ରଚଳିତ ଶିକ୍ଷା ସମ୍ପର୍କରେ ଆଚାର୍ଯ୍ୟ ମହାଶୟଙ୍କ ସହ ଆଲୋଚନା କରିଛି ସେ ସେତେବେଳେ ଉତ୍ତର ଦେଇ କହୁଥିଲେ ଆମର ପ୍ରଚଳିତ ବିଶ୍ୱବିଦ୍ୟାଳୟର ଶିକ୍ଷା ଆବଶ୍ୟକତା ନାହିଁ । ଦେଶର ସବୁ ବିଶ୍ୱ ବିଦ୍ୟାଳୟ କୋଡ଼ି ଜାଙ୍କର ବିଶ୍ୱ ବିଦ୍ୟାଳୟ ହେବା ଆବଶ୍ୟକ ।" ଏହିଥିରୁ ଶିକ୍ଷା ସଂପର୍କରେ ସେ କେତେ ଚିନ୍ତା କରୁଥିଲେ ଓ ପ୍ରଚଳିତ ଶିକ୍ଷାର ଭବିଷ୍ୟତ ନେଇ କେତେ ଯେ ବ୍ୟସ୍ତ ଥିଲେ ତାହା ଅନୁମାନ କରିହେବ । ଦିନକର ଘଟଣା, ମୁଁ ସେତେବେଳେ ଭାରତ ସେବକ ସମାଜର ଅର୍ଗାନାଇଜର ରୂପେ କାର୍ଯ୍ୟ କରୁଥାଏ ଗୋଟିଏ 'ହଲି ଓ୍ୱେ ହୋମ କ୍ୟାମ୍ପ'ରେ ଥିବା ସତୁରି ଜଣ ଛାତ୍ରଛାତ୍ରୀଙ୍କୁ ନେଇ ଆଚାର୍ଯ୍ୟ ହରିହରଙ୍କ ଆଶୀର୍ବାଦ ପାଇବା ପାଇଁ ଗଲି । ସେତେବେଳେ ଆଚାର୍ଯ୍ୟ ମହାଶୟ ପୁରୀ ଗୋପବନ୍ଧୁ ଭବନରେ ଅବସ୍ଥାନ କରୁଥା'ନ୍ତି । ବିଶିଷ୍ଟ ସମାଜ ସେବୀ ଶ୍ରୀଯୁକ୍ତ ସତିବାବୁ ତାଙ୍କର ତଦାରଖ କରୁଥିଲେ । ପିଲାମାନଙ୍କୁ ନେଇ ତାଙ୍କ ପାଖେ ପହଞ୍ଚି ପ୍ରଣାମ କଲୁ । ତା ପରେ ସେ ଆଶୀର୍ବାଦ ଦେବାକୁ ଯାଇ କହିଲେ "ପିଲାମାନେ ତୁମେ ସବୁ ଭବିଷ୍ୟତରେ କ'ଣ ହେବ ଓ କ'ଣ କରିବ ସେ ପାଇଁ ମୁଁ ବିଶେଷ ଚିନ୍ତିତ । ଆଜି ଶିକ୍ଷା କ୍ଷେତ୍ର ଯାହା ହୋଇଛି ଭାବିଲା ବେଳକୁ ମର୍ମାହତ ହେବାକୁ ହୁଏ । ତମମାନଙ୍କ

ଉପରେ ଯେଉଁ ଶିକ୍ଷା ଲବ୍ଧ ହଅା ଯାଉଛି ତାର ପରିଣାମ ଭଲ ହେବ ବୋଲି ମନେ ହେଉ ନାହିଁ । ( ଏକଥା କହିଲା ବେଳେ ଆଚାର୍ଯ୍ୟ ମହା-ଶୟଙ୍କ ଆଖି ଛଳ ଛଳ ହୋଇ ପଡୁଥିଲା )ଗାନ୍ଧୀଜୀଙ୍କ କଥା ଓ ଶିକ୍ଷା ମାତ୍ର କେହି ମାନିଲେ ନାହିଁ । ଶିକ୍ଷା ମଣିଷକୁ ମଣିଷପରି ଗଢିବାର କଥା, ତାହା ଏ ପର୍ଯ୍ୟନ୍ତ ହେଲାନାହିଁ । ସେଇ ଇଚ୍ଛା-ସବୁ ବିଶ୍ୱ ବିଦ୍ୟାଳୟ କୋଡ଼ିକାଙ୍କର ବିଶ୍ୱ ବିଦ୍ୟାଳୟ ହେଉ । ସେକଥା କାହା ମୁଣ୍ଡରେ ପଶୁନି । ଗୁରୁଜୀ ମାନଙ୍କ ସଙ୍ଗେ ଛାତ୍ରଛାତ୍ରୀଙ୍କର ଉତ୍ତମ ସଂପର୍କ ରହିପାରୁ ନାହିଁ । ଏ ସବୁ ଦିଗରେ ନଜର ଦେଇ ଭଲ ମଣିଷ ହେବା ପାଇଁ ପିଲାମାନେ ଚେଷ୍ଟା କରିବ । ଜଗନ୍ନାଥ ତୁମ ମାନଙ୍କର ମଙ୍ଗଳ କରନ୍ତୁ । ତମେ ସବୁ ଭବିଷ୍ୟତରେ ଭଲ ମଣିଷ ହୋଇ ତମ ଗାଁ ମାନଙ୍କର ଉନ୍ନତି କର ଏହାହିଁ ପ୍ରଭୁଙ୍କଠାରେ ମୋର କାମନା ।"

ଏଥିରୁ ହରିହରଙ୍କର ଶିଶୁ ମାନଙ୍କ ପ୍ରତି କିପରି ସ୍ନେହ ମମତା ଥିଲା ଓ ସେମାନଙ୍କ ଭବିଷ୍ୟତ ସଂପର୍କରେ ସେ କ'ଣ ଚିନ୍ତା କରୁଥିଲେ ତାହା ଅନୁମାନ କରିହେବ । ଯେଉଁମାନେ ତାଙ୍କ ସଂପର୍କରେ ଆସି-ଛନ୍ତି ସେମାନେ ସମସ୍ତେ ଅନୁଭବ କରିଥିବେ ଯେ ସେ କପଟ ଆଚାର ବୃଦ୍ଧି ବନତା କାହାର ମନରେ କଷ୍ଟ ଦେଉ ନଥିଲେ । ସେ ଏଭଳି ବ୍ୟବହାର ତାଙ୍କର ସ୍ୱଭାବ ସୁଲଭ ଗୁଣରେ ଦେଖାଇ ଥିଲେ ଓ କରୁ ଥିଲେ । ଯେତେ କଠିନ ସମସ୍ୟା ହେଲେ ବି ସୁଦ୍ଧା କାହାର ମନରେ ଦୁଃଖ ନ ଆଣି ସେ ସମସ୍ୟାର ସମାଧାନ ହୋଇ ପାରୁଥିଲା । ଗୁପ୍ତ ବୋଇଲେ କ'ଣ ତାହା ତାଙ୍କର ଆନ୍ତର ବାହାର କଥାବାର୍ତ୍ତା ଓ ବ୍ୟବହାରରେ ଅଣୁମାତ୍ର ପ୍ରବେଶ କରି ପାରୁ ନଥିଲା । ସେ ଅମାୟିକ କର୍ମ-ନିଷ୍ଠ ସାଧକ ଥିଲେ । ଅନ୍ୟ ଭାଷାରେ କହିବାକୁ ହେଲେ ସେ ପ୍ରକୃତରେ ମହାତ୍ମା ତଥା ମହର୍ଷିର ସ୍ଥାନ ଅଧିକାର କରିଥିଲେ । ଓଡ଼ିଶାରେ ତାଙ୍କ ସ୍ଥାନ ପୂରଣ କରିବାକୁ ମୋର ଜାଣିବାରେ କେହି ନ ଥିଲେ ଓ ଏବେବି ନାହାଁନ୍ତି ।

ଉପ୍ରସଙ୍ଗରେ ଗୋଟିଏ ଦିନର ଘଟଣା ମନେ ପଡ଼େ । ମୁଁ ସେତେ ବେଳେ ସେବାଗ୍ରାମରୁ ଅଧ୍ୟୟନ ଶେଷ କରି ଜୀବଗ୍ରାମ ଖାଦି ବିଦ୍ୟାପୀଠରେ ଅଧ୍ୟାପକ ଭାବେ କାର୍ଯ୍ୟ କରୁଥାଏ । କେଉଁଠିରେ ସ୍ତ୍ରୀ କହୁଛି ଗୋଟିଏ

ସଦ୍ୟଜାତ ଝିଅଟିକୁ ଆଣି ଆମେ ଲାଳନ ପାଳନ କରୁଥାଉ । ସେହି ଅନାଥା ଝିଅଟିକୁ ଆଶୀର୍ବାଦ କରିବା ପାଇଁ ମୁଁ କହିଲି । ସେ ଗମ୍ଭୀର ମୁଖ ମଣ୍ଡଳରେ ଝିଅଟିକୁ କୋଳରେ ଧରି କହିଲେ "ଗୌରଶ୍ୟାମ, ଏ ଝିଅଟି ସୃଷ୍ଟି କରିଚାଙ୍କ ଝିଅ । ଯେଉଁ ବାପମାଆ ଏହାକୁ ରାସ୍ତାକଡରେ ପକାଇ ଦେଇଗଲେ ସେମାନେ ସମାଜର କେତେ ତଳର ତାହା ତମେ ମାନେ ଅନୁଭବ କର । ସେମାନେ ମାନବ ଅବସ୍ଥାରେ ନାହାନ୍ତି । ପଶୁ ଜାତି ହେଲେ ବି ଯେତେ ବିପଦ ଆସୁନା କାହିଁକି ସେ ତା ସନ୍ତାନକୁ ସହଜରେ ଛାଡ଼ି ପଳାଏ ନାହିଁ । ତମେ ସବୁ ଏହିଭଳି ସମାଜର ଚରିତ୍ରକୁ ବଦଳେଇ ଦେବା ପାଇଁ ଅଣ୍ଟା ଭିଡ଼ି ବାହାରିବ । ଏ ଆଶା ମୁଁ ତମ ମାନଙ୍କ ଠାରେ ପୋଷଣ କରେ । ଏ ଝିଅଟି ଭବିଷ୍ୟତରେ ପିଢାଣୀ ବାଙ୍କା ବୋହୂ ନ ହୋଇ ଭଲ ଗୃହିଣୀ ହେଉ ଏହାହିଁ ମୋର କାମନା" । ସତକୁ ସତ ପୂର୍ବ ଜନର ସତ୍ୟବାଦୀ ମିଶ୍ର ସେ ଝିଅଟିକୁ ନେଇ ରଖିଲେ ସେ ଏବେ ଆଗ୍ନେୟ ମହାଶୟଙ୍କ ଆଶୀର୍ବାଦରେ ଉତ୍ତମ ଗୃହିଣୀ ହୋଇ ପାରିଛି ।

ମହାତ୍ମା ଗାନ୍ଧୀଙ୍କ ବିଶ୍ୱ ପରିବାର ଭାବନାକୁ ଆଗ୍ନେୟ ହରିହର ଶେଷ ଜୀବନ ପର୍ଯ୍ୟନ୍ତ ନିଜ ଜୀବନରେ ପ୍ରୟୋଗ କରି ସଫଳ ହୋଇ ପାରିଥିଲେ । ସାଧାରଣ କର୍ମୀଙ୍କ ଠାରୁ ଆରମ୍ଭ କରି ନେତା ପର୍ଯ୍ୟନ୍ତ, ନିଃସ୍ୱ ଠାରୁ ଆରମ୍ଭ କରି ଧନୀ ଲୋକ ପର୍ଯ୍ୟନ୍ତ ସମସ୍ତଙ୍କୁ ସେ ନିଜ ପରିବାରର ଲୋକ ପରି ମନେ କରି ସେହିଭଳି ସମ ବ୍ୟବହାର ଦେଖାଉଥିଲେ । କଏ ରୋଗରେ ପଡ଼ିଲେ ପର ଆପଣା ମନେ ନ କରି ନିଜେ ରୋଗୀର ସେବା କରୁଥିଲେ । ତାଙ୍କ ସେବାରେ ରୋଗୀ ମନରେ ଆତ୍ମ ପ୍ରତ୍ୟୟ ସୃଷ୍ଟି ହୋଇ ପାରୁଥିଲା । ତା ଫଳରେ ତାଙ୍କଠାରେ ସମସ୍ତଙ୍କର ଅଗାଧ ବିଶ୍ୱାସ ଓ ଭକ୍ତି ରହିପାରୁଥିଲା । କେଣୁ କରି ସେତେବେଳେ ଆମେ ଯେଉଁ-ମାନେ ତାଙ୍କ ହାବ ପରିବ୍ୟାପ୍ତ ହୋଇ ଆସୁଥିଲୁ ଆମକୁ ନିଜ ପରିବାରର ମାୟା ମମତା ଅଟକାଇ ପାରୁ ନଥିଲା । ଆଗ୍ନେୟ ହରିହରଙ୍କ ପିତା-ସମ ବ୍ୟବହାର ସମାଜସେବା କାର୍ଯ୍ୟ ପାଇଁ ପ୍ରେରଣା ଯୋଗାଉଥିଲା । ସେ ତ ପିତା କେବଳ ନଥିଲେ ମାତା ମଧ୍ୟ ଥିଲେ । ମାଆର ପୁଅ ପ୍ରତି ଯେମିତି ଅଗାଧ ସ୍ନେହ ମମତା ଥାଏ କର୍ମୀ ମାନଙ୍କ ପ୍ରତି ଆଗ୍ନେୟ

ମହାଶୟଙ୍କର ସେହିପରି ମାୟା ମମତା ଥାଏ । ସେହି ବ୍ୟାବହାରିକ ଆଦର୍ଶ ଯୋଗୁଁ କର୍ମୀମାନେ ସେତେବେଳେ ବହୁ ସଂଖ୍ୟାରେ ସମାଜ ସେବା ଭଳି କଠିନ କାର୍ଯ୍ୟ ପାଇଁ ନିସ୍ୱାର୍ଥପର ଭାବେ ବାହାରି ଆସୁ-ଥିଲେ । ସେହି ନେତୃତ୍ୱ ଆଜି ଦେଖିବାକୁ ମିଳୁନାହିଁ । ସେଥିପାଇଁ ସମାଜରେ ବହୁ ପ୍ରକାର ବିଶୃଙ୍ଖଳା ଦେଖା ଦେଇ ବଢ଼ି ବଢ଼ି ଚାଲିଛି । ଆଚାର୍ଯ୍ୟ ହରିହରଙ୍କ କର୍ମମୟ ଜୀବନର ଘଟଣାବଳୀ ମୋ ଭଳି ଜଣେ ସାଧାରଣ କର୍ମୀ କ'ଣ ବା ଆଙ୍କି ପାରିବ ? ସେତ ଥିଲେ ଜଣେ ମହର୍ଷି, ମରଣଜୟୀ । ଉଦ୍‌ଭାସିତ ବେଦନାକ୍ତ ମାନବ ପ୍ରାଣରେ ସେ ସୃଷ୍ଟି କରି ଯାଇଛନ୍ତି ମହାନ୍ ବହ୍ନିଶିଖା ଓ ଜାତି ଆଗରେ ଜାଳି ଯାଇଛନ୍ତି ସେବାର ଅଲିଭା ମଶାଲ । ଶତାବ୍ଦୀର ତଳେ ଶତଦ୍ରୁର ବେଳା ଶ୍ୟାମ ତଟେ ଯେଉଁ ମହାନ୍ ବ୍ରହ୍ମବାଣୀ ଶତ ଶତ ଋଷି କଣ୍ଠରୁ ଝରି ଆସିଥିଲା ତାହାହିଁ ଆଚାର୍ଯ୍ୟ ମହାଶୟଙ୍କ କଣ୍ଠରେ ପ୍ରତିଫଳିତ ହୋଇଥିଲା । ଦଧୀଚି ଦେବତାମାନଙ୍କ ନିମନ୍ତେ ଅସ୍ଥି ଦାନ ଦେଲାପରି ହରିହର ସମାଜ ମଙ୍ଗଳ ପାଇଁ, ସର୍ବୋଦୟ ସମାଜ ପ୍ରତିଷ୍ଠା ପାଇଁ ସବୁକିଛି ଦେଇଗଲେ । ଆମମାନଙ୍କ ମେଳରୁ ମର ଶରୀର ଛାଡ଼ି ଦୂରକୁ ଚାଲିଗଲେ ସତ କିନ୍ତୁ ତାଙ୍କ ଜୀବନର ବାଣୀ-ଝର୍ଣ୍ଣା ସବୁ ଦିନେ କଳକଣ୍ଠେ ଛଳ ଛଳେ ଗାଉଥିବ; ତାଙ୍କର ଚିତାଭସ୍ମ ବିସର୍ଜନ ହୋଇଥିବା ମହୋଦଧି କୂଳ ସମୀରଣ ତାଙ୍କରି ଜୀବନ ସଂହିତା ସମାଜର ଗଳି କନ୍ଦରେ ପହଞ୍ଚାଉ ଥିବ; ତାଙ୍କର ପବିତ୍ର ଶୁଭ୍ର ଜ୍ୟୋତି କଣା ଏ ଜାତିର ବକ୍ଷରେ ବିଚ୍ଛୁରିତ ହୋଇ ରହିବ; ଇତିହାସ କେବେ ଭୁଲିବ ନାହିଁ, କିନ୍ତୁ ଏ ଜାତି ତାଙ୍କୁ ମନେ ରଖି ପାରିବତ ?

—*—

# ସମ୍ପର୍କରେ ଆସିଲେ ଭକ୍ତି ବଢିବ

## ଗୋକୁଳାନନ୍ଦ ମହାନ୍ତି

ଆଚାର୍ଯ୍ୟ ମହାଶୟ ଯେପରି ନରମ, ସେହିପରି ଟାଣ; ଯେପରି ବୁଦ୍ଧିମାନ ସେହିପରି ସରଳ, ଯେପରି ଆଦର୍ଶବାଦୀ ସେହିପରି ବାସ୍ତବବାଦୀ। ତାଙ୍କ ଘଟଣା ବହୁଳ ଜୀବନରୁ ମୋର ଏକଥା ସ୍ପଷ୍ଟ ହେବ। ମୁଁ କେତୋଟିମାତ୍ର ଅନେକ ନଗ୍ଣ କଥାର ବର୍ଣ୍ଣନା ତଳେ ଦେବି।

ପୁରୁଣା ଯୁଗର କଥା। ପୁଲିସ ସେତେବେଳେ ଇଂରେଜଙ୍କ ଧର୍ମପୁଅ ବା ଡ଼େପୁଟି ରାଜା। ଏ ଦେଶର ଖାଣ୍ଟି ଲୋକଙ୍କ ମଧ୍ୟରୁ ଯେଉଁମାନେ ସାହାସ କରି କିଛି କହୁଥିଲେ, ତାଙ୍କୁ ପୁଲିସ ଲୋକେ ଅବଜ୍ଞାଦୃଷ୍ଟିରେ ଦେଖୁଥିଲେ! ଏହି ପୁଲିସ ଅଫିସରଙ୍କ ମଧ୍ୟରେ ମୋର ଜଣେ ଆତ୍ମୀୟ—କଥା ପଡ଼ିଲେ—ସତ୍ୟବାଦୀ ଦେଶ ସେବକମାନଙ୍କ ସମ୍ବନ୍ଧେ ହେୟକର କଥା କହନ୍ତି; କିନ୍ତୁ ଆଚାର୍ଯ୍ୟ ମହାଶୟଙ୍କ ସମ୍ବନ୍ଧେ କିଛି କହିବାକୁ ବସିଲେ ତାଙ୍କ **କଥା ସରେ ନାହିଁ**, ତାଙ୍କପ୍ରତି ଗଭୀର ଶ୍ରଦ୍ଧା ଓ ସମ୍ମାନ ମୁଁ ଲକ୍ଷ୍ୟ କରେଁ। ମୁଁ ସେତେବେଳେ ଆଚାର୍ଯ୍ୟ ମହାଶୟଙ୍କ ପିଲ ବୁଦ୍ଧିରେ ବଢ଼ୁଥିଲି। "କାକ ମଧ୍ୟେ ବକ ଯଥା।" କାର୍ଯ୍ୟ କ୍ଷେତ୍ରରେ ଆଚାର୍ଯ୍ୟ ମହାଶୟଙ୍କ ସହିତ ଯେତେବେଳେ ଭେଟ ହେଲା ଓ ମୁଁ ତାଙ୍କସହ ପରିଚିତ ହେଲି, ସେ ମୋର ସେହି ଆତ୍ମୀୟଙ୍କ ଖବର ପଚାରିଲେ। ଯେବେ ଦେଖାହୁଏ, ତାଙ୍କ ଖବର ସେ ପଚାରନ୍ତି। ମୋର ସେହି ଆତ୍ମୀୟଙ୍କଠାରୁ ଜାଣିଲି—ଆଚାର୍ଯ୍ୟ ମହାଶୟ ଏକାଡ଼େମୀରେ ଶିକ୍ଷକତା କରୁଥିବାବେଳେ, ତାଙ୍କର ଶହ ଶହ ଅନୁଗତ ଛାତ୍ରଙ୍କ ମଧ୍ୟରେ ମୋର ଆତ୍ମୀୟ ଜଣେ ଥିଲେ। ଆଜିସୁଦ୍ଧା ଉଭୟ ଉଭୟର ଖବର ରଖନ୍ତି, ଆଚାର୍ଯ୍ୟ ମହାଶୟଙ୍କ ସହିତ ମୋର ଏ ପ୍ରଥମ ପରିଚୟ।

ଥରେ ଆଚାର୍ଯ୍ୟ ମହାଶୟ, ମୁଁ ଓ ବଣ୍ଡା ଅଗ୍ରମର ଜଣେ ଶିକ୍ଷାର୍ଥୀମ ଯାଜପୁର ବାଟେ ଆସୁଥିଲୁଁ। ଶିକ୍ଷାର୍ଥୀମ ଟିକେ ଭକ୍ତ ପ୍ରକୃତି। ଏ ଶିକ୍ଷାର୍ଥୀମ କୌଣସି ଗଛରେ ସିନ୍ଦୂର ମରା ହୋଇଥିବା ଦେଖିଲେ ଅଥବା ଠାକୁରାଣୀଙ୍କ ଭଙ୍ଗା ନୂଆ ମାଟି ଘୋଡ଼ା କୌଣସି ଗଛମୂଳରେ ଗଚ୍ଛିତ ଥିବା ଦେଖିଲେ ଭକ୍ତିରେ

ପ୍ରଣାମ କରୁଥିଲେ, ମନ୍ଦିର ମସଜିଦ କଥା ଗୁଡ । କୌଣସି ଲୋକ୍‌ଙ୍କ ସମାଧିକୁ ମଧ୍ୟ କରଯୋଡ଼ି ନମସ୍କାର କରୁଥିଲେ । ଗୋଟେ ସ୍ଥାନରେ ଖ୍ରୀଷ୍ଟାନଙ୍କ ସମାଧି ଦେଖି ତାଙ୍କୁ ମୁଁ ଦେଖେଇ ଦେଲି । ସେ ପ୍ରଣାମ କଲେ । ଆଚାର୍ଯ୍ୟ ମହାଶୟ ମୋ ପିଠିରେ ବିଧାଟିଏ ଚଢ଼ାଇ ଶିଖାଇଲେ—"ତୁ କ'ଣ ଭାବୁଛୁ କ? ତା' ଧର୍ମବନ୍ତ ଯାହାଙ୍କ ପାଇଁ ନିବେଦିତ, ସେ ପାଇଛନ୍ତି ।"

ଥରେ ଗୋପବାବୁ, ଆଚାର୍ଯ୍ୟ ମହାଶୟ ଓ ୧୦ । ୧୫ ଜଣ ନାରୀ ଓ ପୁରୁଷ କର୍ମୀ ଆମେ ସବୁ କଣ୍ଠାପାଳ ଜଗନ୍ନାଥ ଦାଶଙ୍କ ଘରକୁ ଯାଉଥିଲୁଁ । କଣ୍ଠାପାଳ ଗ୍ରାମଟି ବୈତରଣୀ କୂଳରେ । ନଈକୂଳରେ ପହୁଞ୍ଚିବାବେଳକୁ ରାତି ହୋଇ-ଗଲାଣି । ଶୀତ ଦିନ । ଆମେ ଘାଟ ଖୋଜି ପାଇଲୁ ନାହିଁ । ଡ଼ାକିଲେ ମଧ୍ୟ ଜବାବ ମିଳଲା ନାହିଁ । ଯେଉଁଠି ପଶିଲାବେଳକୁ ଲୁଗା ଭିଜିଗଲା । ଆମେ ଥକକା ହୋଇ ଠିଆ ହୋଇ ରହିଲୁଁ । ଆଚାର୍ଯ୍ୟ ମହାଶୟ ବାହାରିଲେ ରାସ୍ତା ବାହାର କରିବାକୁ । ତାଙ୍କ ସାହସ ଦେଖି କେତେ ଯୁବକ ମଧ୍ୟ ତାଙ୍କ ସଙ୍ଗରେ ବାହାରି ପଡ଼ିଲେ । କିନ୍ତୁ ଯୁବକମାନେ ଯେଉଁଠି ପଶିବାକୁ ସାହସ ନ କଲେ, ଆଚାର୍ଯ୍ୟ ମହାଶୟ ଆଗେଇ ଗଲେ । ଏ ମଧ୍ୟରେ ରାସ୍ତା ମିଳିଗଲା । ଆମେ ଏହି ଅଗ୍ରଗାମୀ ମାନଙ୍କୁ ଅନୁସରଣ କଲୁ । ଆଚାର୍ଯ୍ୟ ମହାଶୟ ପାଣିରେ ବୁଡ଼ୁବୁଡ଼ୁ ହୋଇ ଆମ ନିକଟରେ ଯାଇ ପହଞ୍ଚିଲେ । ଆମେ ଦେଖିଲୁଁ, ସେ ଶୀତରେ ଥରୁଥିବା ଗୋଟାପଣେ ଜଡ଼ସଡ଼ । ଯୁବକମାନେ ଶୁଖିଲା ଲୁଗାରେ ଫେରିଲେ, ଆମେ ସବୁ ଆଚାର୍ଯ୍ୟ ମହାଶୟଙ୍କୁ ନିରମା ଲୋକ ଭାବିଲୁଁ; ସେ ଦିନ ଗୋଟେ ନୂଆ ରୂପ ଦେଖିଲୁଁ ।

ଆଉ ଗୋଟିଏ ଦିନର ଅନୁଭୂତି । ଘୋର ଶୀତ ଦିନ କଥା । କୋରା-ପୁଟରେ ଗାନ୍ଧୀ ସେବା ସଂଘ ପକ୍ଷରୁ ଗୋଟିଏ ଶିକ୍ଷା-ଶିବିର ଖୋଲା ଯାଇ ଥାଏ । ଆଚାର୍ଯ୍ୟ ମହାଶୟ, ମୁଁ ଓ କେତେକ ଶିକ୍ଷାର୍ଥୀ ଗୋଟିଏ ଅସ୍ଥାୟୀ ଡାକ୍ତରୀ ଘରେ ରହୁଥାଉଁ । ରାତି ୩ଟାବେଳକୁ ଶୀତରେ ନିଦ ଭାଙ୍ଗିଯାଏ । ସମସ୍ତେ ଉଠି ବସୁଁ । ଖନ୍ଦାଡ଼ାଙ୍କ ଚୁଲ୍ଲୀରେ କାଠଗଡ଼ ପକାଇ ଧୂନିକରୁଁ । ଥଣ୍ଡା କମି ଯାଏ ସତ କିନ୍ତୁ ପଛ ଆଡ଼ଟା କଣ୍ଟା ପାଣିଆ ଲାଗେ । ମୁଁ ଶିବିର ଶୃଙ୍ଖଳା ମାନି ଚଳିବା ଅସମ୍ଭବ ହେଲା । ଦିନ ୧୦ଟା ବେଳକୁ ଗୋଟିଏ ଗ୍ଲେଟ ଅଧା ଶୁଖିଲା ନଈକୁ ଗାଧୋଇ ଯାଏଁ । ସେ ନଈ ପାଣିରେ କ୍ଷଣକ ପାଇଁ ମୁଣ୍ଡ ବୁଡ଼ାଇଲେ, ଦିନ ୧୦ଟା ବେଳେ ମଧ୍ୟ ମୁଣ୍ଡ ୫ ମିନିଟ ପର୍ଯ୍ୟନ୍ତ କାଲୁଆ ମାରିଯାଏ । ଆଚାର୍ଯ୍ୟ ମହାଶୟ ଶିବିରର ସମସ୍ତ ଶୃଙ୍ଖଳା ମାନି ଚଳୁଥିଲେ । ରାତି ୪ଟାରେ ସ୍ନାନ ପ୍ରାର୍ଥନାଦି ସାରି କାର୍ଯ୍ୟ ଆରମ୍ଭ କରୁଥିଲେ । ତାଙ୍କ ବହୁଦିନର ସାଧନା ହେତୁ ଏହା ଫଳରେ ସ୍ୱାସ୍ଥ୍ୟହାନି ଘଟି ନଥିଲା ।

ଅନେକ ଦିନ ତଳର କଥା । ସ୍ଥାନର ନାମ ମନେ ନାହିଁ । ସେତେବେଳେ ଆଗୃର୍ଯ୍ୟ ମହାଶୟ ପାନ ଖଣ୍ଡରେ ଜମପଣ ଚୂଣ ପାଟିରେ ପକାଇବା ଆରମ୍ଭ କରି ନଥାନ୍ତି । ସେଠା କାର୍ଯ୍ୟ–କେନ୍ଦ୍ରରେ କେହି ପାନ ଖାନ୍ତି ନାହିଁ । ନିଜକୁ ଅଭ୍ୟାସର ସନ୍ତକାଷ୍ଠ କରିବାକୁ କାହାକୁ ପଠାଇବେ ? କିଏ ପାନ ଆଣିଦେବ ? ଏହି ସମୟରେ ମୁଁ ଯାଇ ପହଞ୍ଚିଲି । ଗୁଣ ଚନ୍ଦ୍ରେ ଗୁଣିଆ—ଏହି ନୀତିରେ ମୁଁ ହଠାତ୍ ତାଙ୍କ ଅଭାବ ଜାଣି ନେଲି । ତାଙ୍କୁ ପଚାରିବାରୁ ସେ କହିଲେ "ଅଛି ଯଦି ଦେ, କାହାକୁ ମାଗିବା ବା ପାନ ଆଣିବାକୁ ପଠାଇବା ଜଗର ନାହିଁ ।" ସେହିକ୍ଷଣି କେତେକ ଗାଁ–ଲୋକେ ଆସି ପହଞ୍ଚିଲେ । ଗାନ୍ଧୀ–ବାବା, ତେଣୁ ପରମ ତ୍ୟାଗୀ ବୋଲି ଆମ୍ଭମାନଙ୍କୁ ଭକ୍ତି ଅର୍ଥାତ୍ ନତଶିର ନମସ୍କାର ଜଣାଇଲେ । ସଙ୍ଗେ ସଙ୍ଗେ ତଳେ ବସିଗଲେ । ମୁଁ ତାଙ୍କୁ ସଙ୍ଗରେ ବସିବାକୁ ଡାକିଲି । ସେମାନେ କହିଲେ—"ଆମ୍ଭେମାନେ ଆପଣମାନଙ୍କ ସଙ୍ଗରେ ବସିବା ଭାଜନ ନୋହୁଁ "। ମୁଁ ତାଙ୍କୁ ବୁଝାଇଲି—"ଆମ ଏଆଡକୁ ଜମାହିତ ବାବାଜି ବହୁ ଓଟ ଘୋଡା ନେଇ ଆସନ୍ତି, ତମେ ଦେଖିଥିବ । ଏହି ବାବାଜୀଙ୍କ ମଧ୍ୟରୁ କେତେକ ଗୁରୁପାଖରେ ଘସି କୋହଲା ପକାଇ ମଝିରେ ବସି ଘଣ୍ଟା ଘଣ୍ଟା ଧରି ଜପତପ କରନ୍ତି । ଆଉ କେତେକ ଅଟା, ଘିଅ, ଡାଲିର ଯୋଗାଡ ଓ ରନ୍ଧନ କରନ୍ତି । ଆଉ କେତେକ ଓଟ ଓ ଘୋଡ଼ାଙ୍କୁ ଗାଧୋଇ ଦିଅନ୍ତି, ତାଙ୍କ ପାଇଁ ଘାସ ଛେଲନ୍ତି । ଏହି ରକମର ବାବାଜୀ ଦେଖିଥିବ । ଏ ଗାନ୍ଧୀ ଭକ୍ତଙ୍କ ମଧ୍ୟରେ ଏହି ରକମର ଭକ୍ତ ଅଛନ୍ତି । ମୁଁ ଜଣେ ତମପରି ପାନ ଖାଏଁ । ମାଂସ ମଧ ଖାଏଁ । ଆମ ଭିତରେ ଏହିପରି ଭକ୍ତ ଅଛନ୍ତି, ମାଛମାଂସ ଯେଉଁ ଚୂଲ୍ଲିରେ ରନ୍ଧାଯାଏ ସେ ଚୂଲ୍ଲିରେ ନିରାମିଷ ରାନ୍ଧିଲେ ସେମାନେ ଖାଇବେ ନାହିଁ । ତେଣୁ ଆମ ବିଛଣା ଉପରେ ବସ, ଆମେ କିଛି ମାରି ହେବୁ ନାହିଁ ।" ତା' ପରେ ନାନା କଥା ପଡ଼ିଲା । ସେମାନେ ବିଦା ହୋଇଗଲେ । ଖାଲି ପାଟି ଦେଖି ମୋ ହାତରେ ପାନ ଦୁଇଖଣ୍ଡ ଦେଇ ଗଲେ । ମୁଁ ଅଗ୍ରୁର୍ଯ୍ୟ ମହାଶୟଙ୍କୁ ଦେଲି । ସେ କହିଲେ—"ମୁଁ ନାହିଁ କରିଥିଲି, ମାଗି ଦେଲୁ ନା ?" ମୁଁ କହିଲି "ମାଗିନାହିଁ"; ସେ କହିଲେ "ସେ ଦେଲେ କିପରି ?" ମୁଁ କହିଲି "ଆପଣ ପିଠା ଖାଇବେ ନା ବିନ୍ଧ ଗଣିବେ ?" ନିକଟରେ ଗୋପବାବୁ ବସି କ'ଣ ଲେଖୁଥିଲେ । ମନ ଲିରୁ ବୋଧହୁଏ ସବୁ କଥା ଲକ୍ଷ୍ୟ କରୁଥିଲେ । ଆମ ଆଡକୁ ଅନାଇଁ ଜୋରରେ ହସିଲେ ।

ଏ ସବୁ ଗଳ୍ପ ଆଗୃର୍ଯ୍ୟ ମହାଶୟଙ୍କ ଶାନ୍ତିକାଳୀନ ଚରିତ୍ରବୃତ୍ତିର ଚିତ୍ର । ଗୋଟିଏ ସମରକାଳୀନ ଘଟନା କହି ଶେଷ କରିବ ।

ଚରଣ ମହିନ୍ଦା ଲବଣ ସତ୍ୟାଗ୍ରହୀଙ୍କ ପ୍ରଥମଦଳରେ ସେ ଥିଲେ । ମୁଁ ଓ ଅନ୍ୟ ୧୪ । ୧୫ ଜଣ ସତ୍ୟାଗ୍ରହୀ ତାଙ୍କ ସଙ୍ଗେ ଥିଲୁଁ । ବାହାରିବାବେଳେ ଦଳର

ନେତା ଥିଲେ ଗୋପବାବୁ । ସେ ବାଟରେ ଗିରଫ ହେବାରୁ ଆଚାର୍ଯ୍ୟ ମହାଶୟ ଅଗ୍ରଗାମୀ ହେଲେ । ବାଲେଶ୍ୱରରେ ପହଞ୍ଚିଲୁଁ । ତା' ପରେ ସମୁଦ୍ର କୂଳ ଶିବିରକୁ ଗଲୁଁ । ପରଦିନ ସକାଳୁ ପଚିଶଜଣ ସତ୍ୟାଗ୍ରହୀଙ୍କୁ ଧରି ଆଚାର୍ଯ୍ୟ ମହାଶୟ ସମୁଦ୍ର-କୂଳକୁ ବାହାରିଗଲେ । ସେଠାରେ ଲୁଣମାଟି ତୋଳି ଗଦେଇବାରେ ଆମ୍ଭେମାନେ ଲାଗି ଗଲୁଁ । ହଠାତ୍ ଆମ ଭିତରୁ ଜଣେ କିଏ କହିଲା ପୁଲିସ ଆସିଲେଣି, ମୁଁ ଅନେଇଦେଲି । ମନେ ଅଛି, ଦେଖିଲି ବାଂଶ ମୋଟ, ପାଞ୍ଚ ହାତ, ପିତଳବେଣ୍ଟ ଠେଙ୍ଗା ଗୋଟିଏ ଗୋଟିଏ କାନ୍ଧରେ ପକାଇ ଜଣେ ପୁଲିସ ଅଫିସରଙ୍କ ନେତୃତ୍ୱରେ ଦଶଜଣ ସିପେହୀ ଆସୁଛନ୍ତି । ସେମାନେ ଆମ ସନ୍ନିକଟରେ ପହଞ୍ଚିବାକୁ ପ୍ରାୟ ୫ ମିନଟ୍ ଲାଗିଲା । ମରଣ ପାଇଁ ପ୍ରସ୍ତୁତ ରହିବାକୁ ଆମ୍ଭେମାନେ ପ୍ରତିଜ୍ଞା ପତ୍ରରେ ଦସ୍ତଖତ ସିନା କରିଥିଲୁଁ, ସତକୁ ସତ ମରିବାକୁ ପଡ଼ିବ, ଏ କଥା ଆଖି ଆଗରେ ନାଚିଗଲା । ଆମ ସମସ୍ତଙ୍କ ଖୁସି ଗପ ଏ ପାଞ୍ଚମିନିଟ୍ ବନ୍ଦ ହୋଇଗଲା । ସମସ୍ତେ ବୋଧହୁଏ ନୀରବରେ ମରଣ ପାଇଁ ପ୍ରସ୍ତୁତ ହେବାକୁ ଲାଗିଗଲେ । ମୁଁ କିପରି ପ୍ରସ୍ତୁତ ହେଲି । କାହାକଥା କାହାକୁ ଜଣାନାହିଁ । ଭାବିଲି ଗାନ୍ଧୀଙ୍କ ଭାଷାରେ —"ଏଥର ସବୁ ଗନ୍ତାରେ ପୁଅ ।" ନିଜେ ହସଟାଏ ହସିଲି । ଲୁଣ ମାଟି ଗୋଟେ-ଇବାରେ ମୁଁ ଜୋର ମନ ଦେବା ସଙ୍ଗେ ସଙ୍ଗେ ପୁଲିସମାନେ ଆସି ପଛ-ଆଡେ ଧାଡ଼ି ହୋଇ ଛିଡ଼ା ହୋଇଗଲେ । ପୁଲିସମାନେ ଆସି ପହଞ୍ଚିବା ସଙ୍ଗେ ସଙ୍ଗେ ଆଜି ଆମ କାମ ସାରିବେ ମୁଁ ଭାବିଥିଲି, କିନ୍ତୁ ଆଚାର୍ଯ୍ୟ ମହାଶୟଙ୍କ ସଙ୍ଗେ ସେମାନେ କଥା ଆରମ୍ଭ କଲେ —"ଆପଣମାନେ କ'ଣ କରୁଛନ୍ତି ? ଏ ବେଆଇନ କାମ ଆପଣମାନେ ଜାଣନ୍ତି ?" ଆଚାର୍ଯ୍ୟ ମହାଶୟ କହିଲେ—"ହଁ ଭଲଭାବରେ ମୁଁ ଜାଣେ, ଏମାନେ ସମସ୍ତେ ମଧ୍ୟ ଜାଣନ୍ତି ।" ପୁଲିସ ଅଫିସର କହିଲେ "ଆପଣ-ମାନଙ୍କୁ ଗିରଫଦାର କରାଗଲା !" ଆଚାର୍ଯ୍ୟ ମହାଶୟ କ'ଣ ତା' ପରେ କହିଲେ ମୁଁ ଶୁଣିପାରିଲି ନାହିଁ, କିନ୍ତୁ ଧୀସ୍ଥିର ସହିତ ପୁଲିସ ଅଫିସରଙ୍କ ସଙ୍ଗେ କଥାବାର୍ତ୍ତା କରୁଥିଲେ "ମରତେ ଦମତକ ହମ୍ ଲଢ଼େଙ୍ଗେ' ଧ୍ୱନି ଦେଇ ଆମେ ବନ୍ଦୀଶାଳାକୁ ବାହାରିପଡ଼ିଲୁ । ପୁଲିସ ନୁହେଁ, ନେତୃତ୍ୱ ନେଲେ ଆଚାର୍ଯ୍ୟ ମହାଶୟ ।

—o—

# ତାଙ୍କ ସହ କେତୋଟି ଦିନ

## ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀ

୧୯୬୫ ମସିହା ପୂଜା ଛୁଟି । ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ଜୀବନୀ ଲେଖିବା ଅଭିପ୍ରାୟରେ ମୁଁ ପୁରୀ ଗୋପବନ୍ଧୁ ଭବନରେ ପହଞ୍ଚିଲି । ଆଗରୁ ଆଚାର୍ଯ୍ୟ ମହାଶୟଙ୍କୁ ଚିଠି ଲେଖିଥାଏ । ପହଞ୍ଚିବାମାତ୍ରେ ସେ ଖୁବ୍ ଖୁସି ହୋଇଗଲେ । ମୋ ରହଣିର ଆୟୋଜନ ସାଙ୍ଗେ ସାଙ୍ଗେ ହୋଇଗଲା । ଖଣ୍ଡିଏ ସପ ଓ ଗୋଟିଏ ଖଟ । ସେଇଠି ମୁଁ ମୋର ପନ୍ଦରଦିନ ରହଣିର ଶେଯ ବିଛାଇ ଦେଲି । ଟିକିଏ ମନ୍ଦିରଆଡ଼ୁ ବୁଲି ଆସି ଆଚାର୍ଯ୍ୟ ମହାଶୟଙ୍କ ସହିତ ମଧ୍ୟାହ୍ନ ଭୋଜନରେ ଯୋଗ ଦେଲି । ମୁଁ ଅପ୍ରତ୍ୟାଶିତ ଅତିଥି ନ ଥିଲେ ବି ଆମକୁ ବାଣ୍ଟି କୁଣ୍ଟି ଖାଇବାକୁ ହେଲ । ମୁଁ ନ ଖାଇଲେ ଆଚାର୍ଯ୍ୟ ମହାଶୟ ଭୋଜନରେ ବସୁନାହାନ୍ତି । ମୁଁ ବଡ଼ ଲଜ୍ଜିତ ହୋଇ ପଡ଼ିଲି ।

ବକୁଳ ବନର ଅନ୍ୟତମ ପଞ୍ଚସଖାଙ୍କ ସହିତ ଖାଇ ବସିଲାବେଳେ ମୁଁ ନିରଳସ ଜୀବନ ସାଧନାର ଏକ ପ୍ରଚଣ୍ଡ ସୂର୍ଯ୍ୟ ଦୀପ୍ତି ପାଖରେ ନିଷ୍ପ୍ରଭ ହୋଇ ପଡ଼ିଥିଲି । ଡାଲି ସହିତ ଠାଏ ମାତ୍ର ତରକାରି । ଶାଗ ଟିକିଏ । ଖାଇବା ପୂର୍ବରୁ ସେ ପ୍ରାକ୍-ଭୋଜନ ସର୍ବୋଦୟ ମନ୍ତ୍ର ଉଚ୍ଚାରଣ କଲେ । ତାଙ୍କ ଦାନ୍ତ ନ ଥିବା ପାଟିରେ "ଘେନିବା ଆଗରୁ ମୁଖେ ସଦା ମୋ ନିତ୍ୟ ଭକ୍ଷ, ଘେନିବି ସତତ ମୁହେ ପ୍ରଭୁ ହେ ଦୟା ରଖ" ବେଶ୍ ଏକ ତନ୍ମୟ ପରିବେଶ ସୃଷ୍ଟି କରୁଥିଲା । ପରମ ତୃପ୍ତିରେ ଋଷି ସାଧକ ଖାଉଥା'ନ୍ତି । ଲୁଣି, ଅଲୁଣି, ଭଲମନ୍ଦ ବାଛିବାର ନାହିଁ ।

ତା'ପରେ ସାଙ୍ଗେ ସାଙ୍ଗେ ସେ ଶଯ୍ୟାକୁ ଗଲେ । ପ୍ରାୟ ୩ଟା ବେଳେ ଉଠିଲା ବେଳକୁ ମୁଁ ଖଣ୍ଡିଏ ଖାତା ଓ କଲମ ଧରି ତାଙ୍କ ପାଖରେ ବାରଣ୍ଡାରେ ବସିଲି । ଗୋପବନ୍ଧୁଙ୍କ ଅନେକ ସ୍ମୃତି ସେ ଧରି ରଖିଥିଲେ । ତାଙ୍କ ଭାଷାରେ "ଦାସେ ଆପଣେ...।" ସେ ମନେ ପକାଇ ପକାଇ କହୁଥା'ନ୍ତି । ମୁଁ ଯଥା ସମ୍ଭବ ଟିପି ନେଉଥାଏ । ମୁଁ ଲକ୍ଷ୍ୟ କରେ ବେଳେ ବେଳେ ଉଠୁଥିବା ସ୍ମୃତିର ଲହଡ଼ିରେ ସେ ଡୁବି ଯାଆନ୍ତି । ଅଶ୍ରୁ ଛଳଛଳ ହୋଇ ଉଠେ ତାଙ୍କ ଆଖି । ହୃଦୟର ଆତିଶଯ୍ୟରେ

କଣ୍ଠ ରୁଦ୍ଧ ହୋଇଯାଏ । ପ୍ରିୟ ସଖା ଅଗ୍ରଜ ଦାସେ ଆପଣଙ୍କ ପ୍ରତି ପ୍ରାଣର ନିବେଦ ନୈବେଦ୍ୟ... । "ଆଜି ଏତିକି ଥାଉ, ଚାଲ ବୁଲିଦିବା ।"

ସମୁଦ୍ର କୂଳ ଆଡେ ଟିକେ ବୁଲି ବାହାରୁ । ସାଙ୍ଗରେ ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି । ଆମେ ତାଙ୍କୁ ଡାକୁ ସଚ୍ଚିଭାଇ । ଏହି ମହାନ ସାଧକ ପବିତ୍ର ପୁରୁଷଙ୍କ ପାଖରେ ସଚ୍ଚିଭାଇ ଅନେକ ବର୍ଷଧରି ରହିଛନ୍ତି । ସର୍ବୋଦୟ ଅନୁଷ୍ଠାନ ତରଫରୁ ଏ ବ୍ୟବସ୍ଥା—ସେ ଆଚାର୍ଯ୍ୟ ମହାଶୟଙ୍କ ଯଷ୍ଟି । ଆଚାର୍ଯ୍ୟ ମହାଶୟ ଦୃଷ୍ଟି ଶକ୍ତି ହରାଇ ବସିଥାଆନ୍ତି । ତେଣୁ ସଚ୍ଚି ଭାଇଙ୍କ କାନ୍ଧରେ ଗୋଟିଏ ହାତ ରଖି ସେ ଆଗକୁ ପାଦ ବଢାନ୍ତି । କେତେବେଳେ ତାଙ୍କର ଗୋଟିଏ ହାତ ସଚ୍ଚିଭାଇଙ୍କ ହାତ ମୁଠାରେ । ବାଟରେ କେତେ କିଶୋର କିଶୋରୀ ଓ ପରିଚିତ ବ୍ୟକ୍ତି ଆଚାର୍ଯ୍ୟ ମହାଶୟଙ୍କ ପାଦ ଧୂଳି ନିଅନ୍ତି । ସଚ୍ଚିଭାଇ ଆଚାର୍ଯ୍ୟଙ୍କୁ ଚିହ୍ନାଇ ଦିଅନ୍ତି । ଏ ଅମୁକ ଦାସେ । ଏ ଅମୁକ ମିଶ୍ରେ । ଏ ଅମୁକ ଶତପଥୀଏ । ମହାନ୍ତିଏ । ବିଶ୍ୱାଳେ । "କିଓ ମଲିକ ପୁଅ ଭଲ ଅଛ ?" ଆଚାର୍ଯ୍ୟ ମହାଶୟ ସମସ୍ତଙ୍କ କୁଶଳକାମୀ; ସମସ୍ତଙ୍କ ପାଇଁ ତାଙ୍କ କଣ୍ଠରେ ଆଶିଷର ସ୍ୱସ୍ତ୍ୟୟନ । ଏମିତି ବାଟରେ ଡେରି ହୁଏ । ସମୁଦ୍ର କୂଳରେ ପହଞ୍ଚି ପାରୁନାହିଁ । ପୁରୀରେ ଅଗଣିତ ଭ୍ରମମାନ ଜନସ୍ରୋତ ଆଗେଇ ଯାଆନ୍ତି । ଆମେ ପଛକୁ ଫେରୁ ।

ସଂଧ୍ୟା ପୂର୍ବରୁ ଫେରିଆସି ସେ ସାମାନ୍ୟ ଜଳଖିଆ ଖାଆନ୍ତି । ଚୂଡ଼ାଭଜା, ମୁଢ଼ି, ଉଖୁଡ଼ା, ନଟେଜ୍ ପୁରୀ-ହୁଡୁମ୍ । ପାଟିରେ ଭିଜେଇ ଭିଜେଇ ନିର୍ବିକାର ଭାବରେ ସେ ଏଥିରୁ ଦି'ଟା ଖାଇଦିଅନ୍ତି । ପାଣି ଗିଲାସେ ପିଅନ୍ତି । ତା'ପରେ ସନ୍ଧ୍ୟା ପ୍ରାର୍ଥନା । "ବିପଦ ନୁହଁଇ ବିପଦ କେବେ, ସଂପଦ ନୁହଇ ସଂପଦ ଭବେ ।" ଇତ୍ୟାଦି ।

ଶିଶୁ ସୁଲଭ ସରଳ ପ୍ରାର୍ଥନାଟିଏ । ସମଗ୍ର ପାଇଁ କେବଳ ଶାନ୍ତି ଓ ସ୍ୱସ୍ତିର କାମନା । ନିଜ ପାଇଁ ଏକ ସଂସାର ବିରାଗୀ ସନ୍ନ୍ୟାସୀର ଗୈରିକତା । ସମସ୍ତେ ତାଙ୍କର ସନ୍ତାନ, ଆପଣା ପର କେହି ନୁହନ୍ତି ।

ସନ୍ଧ୍ୟା ପରେ ଆମେ କିଛି ସମୟ ବସୁ । ମୁଁ ଦାସେ ଆପଣଙ୍କ ସମ୍ପର୍କରେ କୌତୂହଳୀ ହୋଇ ଉଠେ । ପଚାରେ "ତା'ପରେ କ'ଣ ହେଲା ?" ମୁଁ ଏକ କଳନ୍ତର ଲୋଭୀ କୃପଣ ବେପାରୀ ପରି ମୋ ଉଦ୍ଦେଶ୍ୟରେ ବଣିଜ ମେଲିଦିଏ । ତାଙ୍କ ସ୍ମୃତିକୁ ଉଖାରି ଉଖାରି ତଥ୍ୟ ସାଉଁଟିବା ମୋର କାମ । ସଚ୍ଚିଭାଇ ମୋତେ ସଚେତନ କରି ଦିଅନ୍ତି । ସେତିକି ଆଉ, ଆଚାର୍ଯ୍ୟ ମହାଶୟ ଅତି ଆମାୟିକ ଭାବରେ ଉତ୍ତର ଦିଅନ୍ତି, "ହଉ, ଖାଇବା ଏଥର ।"

ଏମିତି ପାଖ ପନ୍ଦରଟି ଦିନ ତାଙ୍କ ସହିତ କଟିଗଲା । ପ୍ରତି ଦିନର ସୂର୍ଯ୍ୟୋଦୟ ଆଉ ସୂର୍ଯ୍ୟାସ୍ତ ଭିତରେ, ଜୀବନର ଗଳି ବାଙ୍କରେ ମୁଁ ଆଗ୍ରୂର୍ଯ୍ୟ ମହାଶୟଙ୍କୁ ଅନୁଭବ କଲି ଏକ ନଗ୍ନାଟ ଅବମନ୍ୟ—ବ୍ୟକ୍ତିତ୍ୱ (Unassuming) କେତେ ବଡ଼, କେତେ ଧର୍ମୁଚି—ଅଥଚ ବ୍ୟବହାର, ଆଚରଣ, ପରିଧାନ ଓ ଖାଦ୍ୟ ପେୟରେ କେତେ ସରଳ, ନିଷ୍କପଟ ଆଉ ଶିଶୁସୁଲଭ । ମୋ ମନର ସମସ୍ତ ଆଧୁନିକ ଶିକ୍ଷାଜନିତ ଆଭିଜାତ୍ୟ ଏହି ବିରାଟ ପୁରୁଷର ଚରଣ ତଳେ ରେଣୁ ରେଣୁ ହୋଇ ଲୋଟି ପଡ଼ୁଥିଲା, ଯେପରି ପ୍ରବଳ ପରାକ୍ରାନ୍ତ ଉର୍ମି ନିର୍ବିକାର ବେଳାଭୂମିର ଚରଣ ତଳେ ଲୋଟିପଡ଼େ । ତାଙ୍କର ଦୈନନ୍ଦିନ ଖାଦ୍ୟ, ଆସବାବ ଓ ଜୀବନଧାରା ସବୁ ଯେପରି ମଣିଷର ବଡ଼ଲୋକି ତଥା ଅହମିକାକୁ ଉପହାସ କରୁଥିଲା । ମୁଁ ମନେ ମନେ ଭାବୁଥିଲି—କାହାପାଇଁ ଏ କୁଚ୍ଛ୍ର ସାଧନା ? କିଏ ବୁଝିବ ଏ ଉଜ୍ଜ୍ୱଳ ପୁରୁଷର ଆତ୍ମାର ଆକୁଳ ଆକୂତି ? କାହାପାଇଁ ଶରଶଯ୍ୟାରେ କୁଳବୃଦ୍ଧ ପିତାମହ ?

ମନର ବ୍ୟାକୁଳତାରେ ସଚ୍ଚି ଭାଇଙ୍କୁ ଏକାନ୍ତରେ ପଚାରିଥିଲି—"ସଚ୍ଚି ଭାଇ ଦୁଧ ଟୋପିଏ ଆଗ୍ରୂର୍ଯ୍ୟଙ୍କୁ ଦେଉ ନାହିଁ ?" ସେ ଯେଉଁ ଉତ୍ତର ଦେଲେ, ସେଥିରେ ପ୍ରାଣ ମୋର ଏକ ନିରାଶ ଆକୁଳତାରେ କାନ୍ଦି ଉଠିଲା । "ଏ ସବୁ ଲୋଡ଼ିବାକୁ ପଇସା କାହୁଁ ପାଇବୁ ?" କେତେଜଣ ଗ୍ରାହକଙ୍କ ମାସିକ ଦାନରେ କୌଣସିମତେ ଚଳିବାକୁ ହୁଏ । ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଡଃ ସଦାଶିବ ମିଶ୍ର (ସେତେବେଳେ ଡ଼ି.ପି.ଆଇ.) ଦିଅନ୍ତି କିଛି କିଛି ମାସିକ ଅର୍ଥ ସାହାଯ୍ୟ । ଆଉ ଜଣେ ଦୁଇଜଣ ଗ୍ରାହକ । ସେଇମାନଙ୍କ ଦାନରେ କଷ୍ଟେମଷ୍ଟେ ଚଳିବାକୁ ହୁଏ । ଭୂଦାନ ସମିତି ମଧ୍ୟ କିଛି ଖର୍ଚ୍ଚ ତୁଲନ୍ତି ।

ମୁଁ ବ୍ୟଥା ଓ ବେଦନାରେ ଫାଟି ପଡ଼ିଲି । ଏଇ ଆମ ଦେଶ—ଯେଉଁଠି ମନ୍ତ୍ରୀ ଦେଶ ସେବା ନାମରେ ପୁଞ୍ଜି ସଞ୍ଚୟ କରନ୍ତି—ପୁରୁଷ ପୁରୁଷ ପାଇଁ । ଆଉ ଦରିଦ୍ର ନାରାୟଣ ଜନତାର ପରମ ସେବକ ଅର୍ଦ୍ଧାହାରରେ ବେଳ କାଟେ । ଜରା ଜରାପ୍ରପୀଡ଼ିତ ଦେହ ପାଇଁ ଟିକିଏ ଔଷଧ ମିଳେ ନାହିଁ । ମୁଁ ଆଶ୍ଚର୍ଯ୍ୟ ହେଲି—ଜାତୀୟ ସରକାରଙ୍କ ତରଫରୁ ମଧ୍ୟ ଆଗ୍ରୂର୍ଯ୍ୟ ମହାଶୟଙ୍କ ପାଇଁ କୌଣସି ବ୍ୟବସ୍ଥା ହୋଇନାହିଁ । ଶାସନ ଓ ସରକାରଙ୍କୁ ଏ ସବୁ ଚିନ୍ତା ପାଇଁ ବେଳ କାହିଁ ? ମୁଁ ମନେ ମନେ ଭାବୁଥିଲି ଏ ଦେଶ ଖାଲି ସମ୍ବଳରେ ଦରିଦ୍ର ନୁହେଁ, ଚିନ୍ତାରେ ମଧ୍ୟ ଅତି ଉତ୍କଟ ଭାବେ ଦରିଦ୍ର । ସରକାରଙ୍କ ଆଖିରେ ଆଗ୍ରୂର୍ଯ୍ୟ ମହାଶୟ ବ୍ୟକ୍ତିବିଶେଷ ମାତ୍ର ?

କିନ୍ତୁ ସେ କ'ଣ ବ୍ୟକ୍ତି ବିଶେଷ ଥିଲେ ? ଆଜି ତାଙ୍କ ମୃତ୍ୟୁ ପରେ ମନରେ ଉଦାନ୍ତ ଉଦାତ୍ତ ପ୍ରଶ୍ନ ଉଠେ—ଆମ ସମସ୍ତଙ୍କ ପରି ସୁଖ, ସ୍ୱାଛନ୍ଦ୍ୟ ଓ ଅଭିଳାଷ ପଛରେ

ସେ ହୁଏତ ନସ୍ୟାନ୍ତ ଦଉଡ଼ି ପାରିଥାନ୍ତେ ? କ୍ଷମତା ରାଜନୀତିରେ ସେ ବି ହୋଇ ପାରିଥାନ୍ତେ ନେତା, ମନ୍ତ୍ରୀ କମ୍ବା ସରକାର ! ଅଥଚ ସନ୍ନ୍ୟାସର ଏ ସାଧନା, ଉତ୍କଟ ଦାରିଦ୍ର୍ୟର ଏ ଭେକ କାହାପାଇଁ ? ହେ ସର୍ବସ୍ୱତ୍ୟାଗୀ ସୈନିକ ! ଏ ଜାତିର ବିଜନ ବାଲୁଚରରେ ତୁମର ଏକଣା ପଦଯାତ୍ରାର ଚିହ୍ନ ନ ଲିଭୁଣୁ ଆମେ ତୁମକୁ ପାଶୋରି ଦେଇଛୁ । ତୁମ ପାଇଁ, ତୁମ ଜରାଗ୍ରସ୍ତ ଦେହ ପାଇଁ ଟିକିଏ ସୁଖ ଓ ସ୍ୱାଚ୍ଛନ୍ଦ୍ୟର ବ୍ୟବସ୍ଥା କରି ଦେଇପାରି ନାହୁଁ । କେତେ ନେତା କେତେ ମନ୍ତ୍ରୀ ତୁମକୁ ମୂକସାକ୍ଷୀ କରି ସଭା ସମିତିରେ ଆପଣା କଲା କାମର ଆତ୍ମ ପ୍ରଚାରରେ ଫାଟି ପଡ଼ୁଛନ୍ତି । ଫୁଲମାଳ, ଥାଳ ଓ ହାତ ତାଳି ପାଉଛନ୍ତି । ତୁମେ ହେ ନୀରବ ସାଧକ, ଏହି ପ୍ରତାରଣାର ଶୋଭାଯାତ୍ରା ଦେଖିବା ପାଇଁ ଆଗରୁ ଆଖି ବୁଜାଇ ବସିଥିଲ ।

ଯେଉଁ ଦିନ ମୁଁ ଗୋପବନ୍ଧୁ ଜୀବନୀ ପାଣ୍ଡୁଲିପିଟି ଶେଷ କରି ତିନି ବର୍ଷ ପରେ ତାଙ୍କୁ କିଛି ଅଂଶ ଶୁଣାଇବାକୁ ପୁଣି ଥରେ ତାଙ୍କ ନିକଟରେ ପହଞ୍ଚିଲି, ସେତେ ବେଳକୁ ତାଙ୍କ ସ୍ମୃତି ବହୁ ପରିମାଣରେ ତରଳି ଯାଇଥିଲା । ମୁଁ କିଛି ଅଂଶ ପଢ଼ି ଶୁଣାଇଲି । ପ୍ରାଣଭରା ଆନନ୍ଦରେ ତାଙ୍କ ମୁହଁରେ ସ୍ମିତ ଫୁଟି ଉଠିଲା । ହଁ, ମୋର ସ୍ପଷ୍ଟ ମନେଅଛି ସେ ଶେଯରୁ ଉଠି ବସି ସେଇଠି କେତେ ପୃଷ୍ଠା ଶୁଣିଲେ । କହିଲେ "ଦାସେ ଆପଣଙ୍କ ଏ ଜୀବନୀ କେବେ ଛପା ହେବ ?" ତାଙ୍କ ବ୍ୟାକୁଳତା ଭିତରେ ଏକ ଦରଦୀ ବନ୍ଧୁ, ସମମର୍ମୀ ସହକର୍ମୀର ଅନାବିଳ ଉଚ୍ଛ୍ୱାସ ଭରି ରହିଥିଲା ।

ମୁଁ ଆଗୁର୍ଜୀ ମହାଶୟଙ୍କୁ ଏ ବହିଟି ଉତ୍ସର୍ଗ କରିବାକୁ ସଂକଳ୍ପ କରିଥିଲି । କେବଳ ଅନୁମତି ଲୋଡ଼ି ନେଲି । ତା'ପରେ ତାଙ୍କୁ ଅତି ବିନୀତ ହୋଇ କହିଲି ଆପଣଙ୍କ ଆତ୍ମଜୀବନୀ କେବେ ଲେଖା ହେବ ?" ସେ କହିଲେ--"ମୋର କିବା ଜୀବନୀ, କିବା କଥା ? କ'ଣ ଏଥିରେ ବିଶେଷ ଘଟଣା ଅଛି । ସବୁତ ଦାସେ ଆପଣେ ?" ମୁଁ ଅଭିଭୂତ ହୋଇ ପଡ଼ୁଥିଲି । ଯାହାର ସ୍ମୃତିରେ ଏ ଦେଶର ପ୍ରତିଟି ଗୋଡ଼ମାଟି ସଜଳ ଓ ସିକ୍ତ; ପ୍ରତି ମଣିଷର ମନ ଓ ପ୍ରାଣରେ ଯେ ସମାସୀନ, ଯେ ପ୍ରତି ମଣିଷର ହୃଦସ୍ପ ଭିତରେ ଚିରଜୀବନ୍ତ ତାର ଲିଖିତ ଆତ୍ମ-ଜୀବନୀର କି ଆବଶ୍ୟକତା ଅଛି ? ସେତ ଏ ଜାତିର ଇତିହାସ; ପାଣି ପବନରେ ମିଶି ରହିଛି । ପ୍ରତି ଶିଶୁର ମନରେ ସେ ଏକ ପବିତ୍ର ପ୍ଲାବନ । ପ୍ରତି କିଶୋରର ମନରେ ସେ ଏକ ଚଳମାନ ଊର୍ମି ।

ସତ୍ୟବାଦୀର ଶେଷ ଦୀପ ଶିଖା ଲିଭିସିବା ପୂର୍ବରୁ ଆଉ ଥରେ ତାଙ୍କ ପଦତଳେ ମୁଁ ନଇଁ ପଡ଼ିଥିଲି କଟକର ଭୂଦାନ କାର୍ଯ୍ୟାଳୟରେ । ସେ ସେତେବେଳେ ଥିଲେ ଶଯ୍ୟାଶାୟୀ । ମୁଁ ଗୋପବନ୍ଧୁଙ୍କ ଜୀବନୀ 'ହେ ସାଥି ! ହେ ସାରଥି !' ବହିଟି ତାଙ୍କ ହାତରେ ଦେବାପାଇଁ ସେ ଦିନ ପହଞ୍ଚିଥିଲି । ସେ କିନ୍ତୁ ଆଉ ମୁହଁ

ଚାହିଁବା ଓ ଶବ୍ଦ ବାରିବା ଅବସ୍ଥାରେ ନଥିଲେ । ତାଙ୍କର ସ୍ମୃତି ଓ ଚେତନା ସଂପୂର୍ଣ୍ଣ ଲୋପ ପାଇଥିଲା । ସେ ଥିଲେ ଜ୍ୱରାକ୍ରାନ୍ତ—ପାଖରେ ଜାଗ୍ରତ ପ୍ରହରୀ ସଚି ଭାଇ । ସେ ବଡ଼ ପାଟିରେ ମୋ ଆସିବା ଉଦ୍ଦେଶ୍ୟ ତାଙ୍କୁ ଜଣାଇଲେ । ସେ ଟିକିଏ ଆଖି ଖୋଲିଲେ, କ୍ଷୀଣ 'ହୁଁ'ଟିଏ ତାଙ୍କ କଣ୍ଠ ଅରେଇ ବାୟୁର ତରଙ୍ଗରେ ମିଳେଇ ଗଲା । ତା'ପରେ ଆଖି ବୁଜିଲେ । ମୁଁ ପାଦଧୂଳି ନେଇ ନିଃସ୍ୱ ଭିକାରୀ ପରି ସେ ଦିନ ବ୍ୟଥା ଓ ଅବସାଦରେ ଫେରି ଆସିଥିଲି । କଥା ପଦେ ଶୁଣିବାକୁ ଭାଜନ ହେଲି ନାହିଁ ।

ଆଉ ତାଙ୍କୁ ଭେଟି ନାହିଁ । କଟକରୁ ଚାଳିଶ ମାଇଲ ଦୂରରେ ଗ୍ରାମରେ ଥାଇ ତାଙ୍କ ମୃତ୍ୟୁ ସମ୍ବାଦ ପାଇଲି । ତାଙ୍କ ଶେଷ ଦର୍ଶନ ମୋତେ ମିଳିଲା ନାହିଁ । ତାଙ୍କ ପବିତ୍ର ଶବାଧାରରେ ଅଞ୍ଜୁଳିଏ ଫୁଲର ଅର୍ଘ୍ୟ ଦେଇ ପାରିଲି ନାହିଁ । ମୁଁ ଅପରାଧୀ ।

ସତ୍ୟବାଦୀର ଶେଷ ଦୀପ ଶିଖା ସବୁଦିନ ପାଇଁ ନିଭିଗଲା । ଏ ଯୁଗରେ ଆତ୍ମ ବିଶ୍ୱାସ, ଆତ୍ମସାଧନା ଓ ନିରଳସ କର୍ମପ୍ରେରଣାର ଶେଷ ଭରସା ତାଙ୍କ ତିରୋଧାନ ସହିତ ତୁଟିଗଲା । ଏଯୁଗ ସରଳ ନୈବେଦ୍ୟର ନୁହେଁ, କର୍ମସାଧନାର ନୁହେଁ, କର୍ତ୍ତବ୍ୟ ପରାୟଣତାର ନୁହେଁ, ଏ ଯୁଗ ଧୂର୍ତ୍ତତା ଓ ପ୍ରତାରଣାର, ଶଠତା ଓ ପ୍ରବଞ୍ଚନାର, କଟାକଟି ଓ ଛକାନ୍ତକର । ଏକ ସରଳ ନିଷ୍ପାପ ଆତ୍ମା ଉଦ୍ଦେଶ୍ୟରେ ପ୍ରଣିପାତ କଲାବେଳେ ଆମ ମନର ଏ ଦୈନ୍ୟ ଓ ଗ୍ଲାନି ଆମକୁ ଉପହାସ କରୁ ନାହିଁକି ?

—*—

## ସେ ଥିଲେ ଅନିକେତ—

ଶ୍ରୀମତୀ ରମା ଦେବୀ

[ ଏକ ମନନ ଅପବାହ୍ନ । ମୁଁ ଓ ସଂସଦର ସଭାପତି ଉତ୍କଳର କୃଷ୍ଣଚନ୍ଦ୍ରଦାସ ଦାଶ ଥୋଇଥିଆ ସାନ୍ଧ୍ୟସ୍ଥ ଭୂଦାନ ଅଫିସ ଗୃହରେ ସର୍ବୋଦୟ ନେତ୍ରୀ ରମାଦେବୀଙ୍କୁ ଭେଟି ଆଚାର୍ଯ୍ୟ ମହାଶୟଙ୍କ ସମ୍ପର୍କରେ କିଛି ତଥ୍ୟ ଯୋଗାଇ ଦେବାକୁ ଅନୁରୋଧ କରିଥିଲୁ । ଶ୍ରୀମତୀ ରମାଦେବୀ ସ୍ମୃତିର ଉଜ୍ଜ୍ୱଳ ତେଜରେ ପ୍ରାପ୍ତ ଅଶ୍ରୁସିକ୍ତ ହୋଇ ପଡ଼ିଲେ । ତାହା ଥିଲା ଆଚାର୍ଯ୍ୟ ମହାଶୟଙ୍କ ସଂପର୍କରେ ଏହି ମହୀୟସୀ ମହିଳାଙ୍କର ପରମ ଶ୍ରଦ୍ଧା ଓ ଭକ୍ତିର ଅମଳିନ ନିଦର୍ଶନ । ଆମେ ଆଚାର୍ଯ୍ୟ ମହାଶୟଙ୍କ ଜେଲ-ଜୀବନ ସମ୍ପର୍କରେ ବିଶେଷ ଭାବରେ ଜାଣିବାକୁ ଗୃହୁଁ ଥିଲୁ । ଶ୍ରୀମତୀ ରମା ଦେବୀ ଏହିପରି କେତୋଟି ତଥ୍ୟ ଯୋଗାଇ ଦେଇ ଥିବାରୁ ତାଙ୍କୁ ଅଶେଷ ଧନ୍ୟବାଦ ।-
ସଂପାଦକ ]

ତାଙ୍କ ଜୀବନ ଥିଲା ଖୋଲା ଓ ମେଲା । ଜେଲରେ ଏହିପରି ଖୋଲା ମେଲା ଜୀବନର ବିକାଶ ପାଇଁ ଯଥେଷ୍ଟ ସୁବିଧା ସୁଯୋଗ ରହିଛି । ଜଣେ ଚାହିଁଲେ ନିଜକୁ ଗଢ଼ି ପାରିବ, ଜଣେ ଚାହିଁଲେ ନିଜକୁ ଉଜାଡ଼ିବି ଦେଇ ପାରିବ । ଜେଲରେ ରାଜନୈତିକ ବନ୍ଦୀମାନଙ୍କ ପାଇଁ ବିଭିନ୍ନ ସୁଯୋଗ ରହିଛି । କିଏ ଖେଳି, କିଏ କଳି କରି କିଏ ବା ଉପନ୍ୟାସ ପଢ଼ି ସମୟ କଟାଏ, ପୁଣି ଆଚାର୍ଯ୍ୟଙ୍କ ପରି କେହି ଗୀତା ପଢ଼ି ଓ ଭାଷ୍ୟ ଲେଖି ସମୟ ବିତାଏ । ଅନେକ ବନ୍ଦୀ ଗୁଡ଼ାଖୁ ଓ ବିଡ଼ି ଖଣ୍ଡେ ପାଇଁ ୱାର୍ଡ଼ରର ପଛରେ ଗୋଡ଼ାଇଥା'ନ୍ତି । ଅତି ହୀନ ଭାବରେ ଚଳନ୍ତି । ଭଲ ଓ ମନ୍ଦ-ଉଭୟ ପ୍ରବୃତ୍ତି ପାଇଁ ଜେଲରେ ରହିଛି ଅନେକ ସୁଯୋଗ ।

୧୯୩୦ ମସିହା । ଆଚାର୍ଯ୍ୟ ମହାଶୟ ହଜାରିବାଗ ଜେଲରେ 'ବି' ଡିଭିଜନ ବନ୍ଦୀଗୃହରେ ରହିଲେ । ତାଙ୍କ ସହିତ ଓଡ଼ିଶାରୁ ନବବାବୁ ମାଳତୀ ଦେବୀ, ନନ୍ଦକିଶୋର ଦାସ ଓ ମୁଁ ଏବଂ ଅନ୍ୟମାନଙ୍କ ମଧ୍ୟରେ ବିନୋଦାନନ୍ଦ ଝା, କୃଷ୍ଣବଲ୍ଲଭ ସହାୟ, ନିବାରଣ ଦାସଗୁପ୍ତା ଅତୁଲ୍ୟ ଘୋଷ, ରାଜେନ୍ଦ୍ର ପ୍ରସାଦ, ଖାଁ ସାହେବ ଆଦି ରହିଥିଲୁ । ସଶ୍ରମ ଜେଲ ହୋଇ ଥିବାରୁ ଅଧିକାଂଶ ସଚ୍ଚୋଟ ବନ୍ଦୀ କାମ ମାଗି ନେଉଥିଲେ । ଆଚାର୍ଯ୍ୟ ମହାଶୟ ଜୀବନରେ କାହାକୁ ଠକି ଜାଣି ନ ଥିଲେ । ତେଣୁ ବରାବର ମାଗିକରି କାମ କରୁଥିଲେ । ସେ ସତରଂଜି ବୁଣା କାମ ପାଇଲେ ।

୧୯୪୨ ମସିହାରେ ବ୍ରହ୍ମପୁର ଜେଲରେ ରହିଲା ବେଳେ ସେ ଅଶ୍ରମ ବନ୍ଦୀ ଥିଲେ । ଏତେ ଲୋକ ବସି ଖାଇଲେ ଅଳସୁଆ ହୋଇଯିବେ ଓ ନୈତିକତାର ସ୍ଖଳନ ହେବ । ଏଥିପାଇଁ 'ବି' ଡିଭିଜନ ବନ୍ଦୀ ଗୃହରେ ଅନେକ ସୁଯୋଗ ସୁବିଧା ଆଚାର୍ଯ୍ୟଙ୍କର ଥିଲେ ମଧ୍ୟ ସେ ନିଜେ ନିଜର ରସଦ (ration) ମାଗି ନେଇ ରୋଷେଇ କାମ ଆରମ୍ଭ କଲେ । ଆମିଷ ଓ ନିରାମିଷ—ଏହିପରି ଦଳଦଳ ହୋଇଗଲେ । ଆଚାର୍ଯ୍ୟ ମହାଶୟଙ୍କ ଦଳରେ ଆମେ ପ୍ରାୟ ୩୦ ଜଣ ବନ୍ଦୀ ଥିଲୁ । ସକାଳେ ଚୂଡ଼ାଗୁଡ଼ ମଧ୍ୟାହ୍ନରେ ଡାଲି, ତରକାରି ଓ ସାଗ । ସେତେବେଳକୁ ଆଚାର୍ଯ୍ୟଙ୍କ ଆଖି ଟିକିଏ ଖରାପ ହୋଇ ଆସିଲାଣି । ସେ ରୁଟି ସେକା ଦାୟିତ୍ୱ ସ୍ୱେଚ୍ଛାରେ ନିଅନ୍ତି । ବେଳେବେଳେ ନିଆଁ ମଡ଼ି ତାଙ୍କ ଲୁଗା ପୋଡ଼ି ଯାଇଛି; ହାତରେ ଅନେକ ବାର ନିଆଁ ଲାଗିଛି । ତଥାପି ମଧ୍ୟ ସେ କାମ-ହୁଗୁଳା ହେବାକୁ ଚାହିଁ ନାହାନ୍ତି । ଅନ୍ୟତମ ଜେଲ ସାଥୀ ମନମୋହନ ଚୌଧୁରୀ ତାଙ୍କୁ ବରାବର ବାରଣ କରି କହନ୍ତି—"ଆପଣ ଏ କାମକୁ ଅଯୋଗ୍ୟ, ଆପଣ ନିବୃତ୍ତ ରୁହନ୍ତୁ ।"

ଆଚାର୍ଯ୍ୟ ମହାଶୟ ଥିଲେ ଅତ୍ୟନ୍ତ ଅମାୟିକ ଓ ପରୋପକାରୀ । କାହାର ପଇସା ପତ୍ର ଦରକାର ଥିଲେ ଆଚାର୍ଯ୍ୟ ମହାଶୟଙ୍କ ପାଖରୁ ସେ ନିରାଶ ହୋଇ ଫେରେ ନାହିଁ । ପାଖରେ ଥିଲେ ସାଙ୍ଗେ ସାଙ୍ଗେ ଦେଇ ଦିଅନ୍ତି । କେହି ବେମାରିରେ ପଡ଼ିଲେ ସେ ରାତି ରାତି ତା ବିଛଣା ପାଖରେ

ବସି ରହି ତା'ର ସେବା କରନ୍ତି । ଅନେକ ବର୍ଷ ରାମଚନ୍ଦ୍ରପୁର ମୌଳିକ ଟ୍ରେନିଂ ସ୍କୁଲ୍‌ରେ ଜଣେ ଶିକ୍ଷକ ବେମାର ପଡ଼ିଲେ । ତା' ଶେଯ ପାଖରେ ଆଚାର୍ଯ୍ୟ ମହାଶୟ ଦିନହିନ ଓ ଦିନରାତି ଜଗି ବସି ରହିଲେ । ରାତି ୩ଟା ବେଳକୁ ଗାଧୋଇ ଆରାଧନା ସାରି ପୁଣି ଆସି ରୋଗୀ ପାଖରେ । ରୋଗୀ ପଡ଼ିଲେ ଆଚାର୍ଯ୍ୟ ମହାଶୟ ପ୍ରାୟ ଶୁଅନ୍ତି ନାହିଁ । ଠିକଣାଗି କରି ତାକୁ ନିରୀକ୍ଷଣ କରନ୍ତି । ଡ଼ାକ୍ତର ଆସିଲେ ପୁଙ୍ଖାନୁପୁଙ୍ଖ ରୋଗୀର ଅବସ୍ଥା ବିଷୟରେ ବୁଝାଇ ଦିଅନ୍ତି ।

ପ୍ରତିଦିନ ପ୍ରାୟ ରାତି ୩ଟାରୁ ଉଠି ସେ ଦୁଇ ତିନି ଘଣ୍ଟା ପ୍ରାର୍ଥନା ଆରାଧନା ଓ ପୂଜାପୂଜି କରନ୍ତି । ଗୀତା ତାଙ୍କର ପୂରା ମୁଖସ୍ଥ ଥିଲା; ଉପନିଷଦରୁ ମଧ୍ୟ କେତେକ ସୂକ୍ତ ସେ ମୁଖସ୍ଥ କରିଦେଇଥିଲେ । ଏ ସବୁ ପୂଜା ଓ ନିତ୍ୟକର୍ମ ଏତେ ରାତିରୁ ସେ ସାରି ଦିଅନ୍ତି ଯେ କୌଣସି ଜେଲ ସାଥୀ କିମ୍ବା ମୌଳିକ ଟ୍ରେନିଂ ସ୍କୁଲ ଗୃହର ଏ ସବୁ ଦେଖିବା ସୁଯୋଗ ପାଏ ନାହିଁ । ସମସ୍ତେ ଉଠିଲା ବେଳକୁ ସେ ନିତ୍ୟକର୍ମ ସାରି ଦେଇ କାମ ପାଇଁ ପ୍ରସ୍ତୁତ ହୋଇ ପଡ଼ନ୍ତି । ସକାଳୁ ଚା' ଓ ମୁଢ଼ି ଖାଇ ଦିଅନ୍ତି । ଯାହା ହେଲେ ବି ସେ ଅତି ଆଗ୍ରହରେ ଖାଇ ଦିଅନ୍ତି । କେଉଁଥିରେ ବିରକ୍ତି ବା ଦ୍ୱିଧା ନ ଥାଏ ।

ଆଚାର୍ଯ୍ୟ ମହାଶୟଙ୍କ ଜେଲ ଜୀବନ ସର୍ବମୋଟ ୩ବର୍ଷରୁ ସାମାନ୍ୟ ଅଧିକ ସମୟ । ୧୯୩୦ ଓ ୧୯୩୨ରେ ହଜାରିବାଗ୍ ଜେଲରେ ଯଥାକ୍ରମେ ଅଳ୍ପ କେତେ ମାସ ଓ ଆଠମାସ; ୧୯୪୨ ବେଳେ ବ୍ରହ୍ମପୁର ଜେଲରେ ପ୍ରାୟ ଦୁଇବର୍ଷ । ହଜାରିବାଗ ଜେଲ୍‌ରେ ସୂତାକଟା, ବ୍ରହ୍ମପୁର ଜେଲ୍‌ରେ ତନ୍ତରେ ଲୁଗାବୁଣାରେ ସେ ବରାବର ସାହାଯ୍ୟ କରୁଥିଲେ । ଜୀବନ ସାରା ସେ ସୂତା କଟାରେ ଅଭ୍ୟସ୍ତ ଥିଲେ । ସେଥିରେ ତାଙ୍କର ଯେତିକ ନିଷ୍ଠା ଥିଲା, ସେତିକ ବିଶ୍ୱାସ ବି ଥିଲା । ସାମର୍ଥ୍ୟଥିବା ପର୍ଯ୍ୟନ୍ତ ନିଜ ହାତ କଟା ଲୁଗା ପିନ୍ଧୁଥିଲେ । ଯାହାର ଲୁଗା ଦରକାର ହେଉଥିଲା ସେ ନିଜ ହାତବୁଣା ଲୁଗା ଦେଇ ଦେଉଥିଲେ ଓ କହୁଥିଲେ—"ନେ, ଲୁଗାଖଣ୍ଡେ ନେ । ମୁଁ କଣ ପଇସା ଦେଇ କିଣିଛି ?"

ସେ ପୂର୍ଣ୍ଣିମାଙ୍କାରେ ଥିଲେ ଗାନ୍ଧୀବାଦୀ । ତେଣୁ ସବୁ ଭିତରେ ଥାଇବି ସେ ଥିଲେ ଅନାସକ୍ତ । ଏପରିକି ଭାଇ, ଭଉଣୀ ଆଦି ଆତ୍ମୀୟ ସ୍ୱଜନ ଓ କର୍ମୀମାନଙ୍କ ମଧ୍ୟରେ ସେ ଅନାସକ୍ତ ସାଧନାରେ ଅନୁବ୍ରତ ଥିଲେ । ଏକାଧାରରେ ବିପ୍ଳବୀ ଓ ସେବକ । ବଇଜା ପରି ସଂକ୍ରାମକ ରୋଗରେ ଏକାଦିକ୍ରମେ ସପ୍ତାହ ସପ୍ତାହ ବ୍ୟାପୀ ସେ ସେବାରେ ଲାଗିଥିଲେ । ପୁଣି 'ହରିଜନ' ଆନ୍ଦୋଳନ ବେଳେ ବି ସେ ପ୍ରଥମେ ଓଡ଼ିଶାରେ ବିପ୍ଳବ ଆରମ୍ଭ କଲେ—କିନ୍ତୁ ଏ ସବୁ ଅତି ଅନାସକ୍ତ ଭାବରେ ।

ନନ୍ଦକିଶୋର ସନ୍‌ସାଇନ ପଡ଼ିଆ ପାଖ ଘରେ ସବୁ କଂଗ୍ରେସ ଲୋକେ ଆଡ୍ଡା କରୁଥିଲେ । ଲବଣ ଆନ୍ଦୋଳନ (୧୯୩୦)ରେ ପ୍ରଥମେ ଆଗ୍ଯର୍ଯ୍ୟଙ୍କ ସହିତ ମୋର ସାକ୍ଷାତ । ଆମ ଘରୁ ଲବଣ ଆନ୍ଦୋଳନରେ ସୂତ୍ରପାତ ହେଲା ଓ ଆଗ୍ଯର୍ଯ୍ୟଙ୍କ ସହ ଆମେ କେତେଜଣ କାଲେଶ୍ୱରର ଇଂଚୁଡ଼ିକୁ ଲବଣ ସତ୍ୟାଗ୍ରହ କାର୍ଯ୍ୟରେ ଗଲୁ । ଗୋପବନ୍ଧୁ ଚୌଧୁରୀ କଟକରୁ ଧରା ହୋଇ ଜେଲ୍ ଗଲେ । ଅନ୍ୟମାନଙ୍କ ମଧ୍ୟରେ ବିଶ୍ୱନାଥ ହୋତା, ମୁରଲୀ ହୀରାଠୀ ମଧ୍ୟ ଆନ୍ଦୋଳନରେ ଯୋଗ ଦେଇଥିଲେ । ତା'ପରେ କୃଜଙ୍କ ଠାରେ ଲୁଣମରା କାମରେ ମୋତେ ନିଯୁକ୍ତ କରାଗଲା ଓ ପରେ ପରେ କଟକରେ ମୋତେ ଗିରଫ୍ କରାଗଲା । ନାରୀମାନଙ୍କ ମଧ୍ୟରେ ମାଳତୀ ଦେବୀ, ସୁଭଦ୍ରା ମହତାବ, ବଣ୍ଡିର ପ୍ରିୟମ୍ବଦା ଦେବୀ, ଛତ୍ରପୁରର ଲକ୍ଷ୍ମୀବାଈ ଓ ସରଳା ଦେବୀ ଆଦି ଏହି ଲବଣ ଆନ୍ଦୋଳନରେ ଯୋଗ ଦେଇଥିଲେ । ଆମ ସମସ୍ତଙ୍କ ଆଦର୍ଶ ଥିଲେ ଆଗ୍ଯର୍ଯ୍ୟ ମହାଶୟ । ବେଳେ ବେଳେ ବହୁତ ଅଟ୍ଟା କଥା କହି, ନାନାଦି ଗପ କରି ଆମକୁ କର୍ତ୍ତବ୍ୟରେ ଅନୁବ୍ରତ କରୁଥିଲେ । ଆମର ସମସ୍ତ କ୍ଳାନ୍ତି ତାଙ୍କ ସାହଚର୍ଯ୍ୟରେ ଦୂର ହୋଇ ଯାଇ ମନରେ ଗଭୀର ପ୍ରତ୍ୟୟ ସୃଷ୍ଟି ହେଉଥିଲା ।

ପୂର୍ବରୁ ଜୀବନଯାପନ ପଦ୍ଧତିରେ ଆଗ୍ଯର୍ଯ୍ୟ ମହାଶୟ ଥିଲେ କାୟମନୋବାକ୍ୟରେ ସର୍ବୋଦୟବାଦୀ । ବିନୋବାଜୀ ଯେତେବେଳେ ସର୍ବୋଦୟ ଆନ୍ଦୋଳନ ଆରମ୍ଭ କରିଦେଲେ ସେତେବେଳେ (୧୯୫୧ରେ) ଆଗ୍ଯର୍ଯ୍ୟ ଏଥିରେ ପୂର୍ଣ୍ଣମାତ୍ରାରେ ଯୋଗ ଦେଇ ଦେଲେ । ତା'ପରେ ଓଡ଼ିଶାରେ ଭୂମିଦାନ ଓ ଗ୍ରାମଦାନ କାର୍ଯ୍ୟ ଆଗେଇ ଚାଲିଲା ।

ସେ ସ୍ଥିର ଭାବରେ କେଉଁଠି ରହୁ ନ ଥିଲେ । ସେ ଥିଲେ ଅନିକେତ । ଏପରିକି ସେ ଅନ୍ଧ ଓ ଅଚଳ ହୋଇପଡ଼ିଲା ପରେ ବି ବାଡ଼ି ଧରି ବା ସଚ୍ଚିବାବୁଙ୍କ କାନ୍ଧରେ ହାତ ରଖି ବୁଲି ବାହାରୁଥିଲେ । ପୁରୀ ଗୋପବନ୍ଧୁ ଭବନରେ ରହିଲାବେଳେ ପ୍ରତିଦିନ ସନ୍ଧ୍ୟାବେଳେ ବୁଲି ଯିବାକୁ ବ୍ୟସ୍ତ ଓ ବ୍ୟଗ୍ର ହୋଇ ପଡ଼ୁଥିଲେ । 'ଚରୈବେତି...' ଥିଲା ତାଙ୍କର ଆଦର୍ଶ । ଆର୍ଯ୍ୟଋଷିପରି ସେ ଥିଲେ ଯୋଗୀ । କେବଳ ଋଷିସୁଲଭ ବନବାସ କିମ୍ବା ନିର୍ଜନ ପ୍ରବର୍ଯ୍ୟା ନ ଥିଲା । ସେ ଲୋକମାନଙ୍କ କୋଳାହଳ ଭିତରେ ଥିଲେ ଅନାସକ୍ତ ଯୋଗୀ, ସଂସାରର ଜନସମାଗମ ଭିତରେ ଥିଲେ ମୁକ୍ତିର ସ୍ୱରଣ । ତାଙ୍କ ସମ୍ପର୍କରେ ତ ମୋର ଅନେକ ଦିନର ସ୍ମୃତି, ଅନେକ ଅନୁଭୂତି । ଅନୁଭୂତିର ଆସକ୍ତିରୁ ନିଜକୁ ମୁକୁଳେଇ ସେ ସବୁକୁ ଭିନ୍ନ ଭାବରେ ଲେଖି ହୁଏ ନାହିଁ । ଜୀବନ ଗଢ଼ିବାର ରାସ୍ତାରେ ରାସ୍ତାରେ, ଗଳିମୋଡ଼ରେ ସବୁଥିରେ ତ ତାଙ୍କ ନିର୍ଦ୍ଦେଶ ଓ ସାମୀପ୍ୟ । ଆଉ, ଆଜି ଏତିକି ।



# ଜନ୍ମସିଦ୍ଧ ଆଚାର୍ଯ୍ୟ ହରିହର

ସଚ୍ଚିଦାନନ୍ଦ ମହାନ୍ତି

ସନ ୧୩୭୮ ସାଲ ଫାଲ୍‌ଗୁନ କୃଷ୍ଣ ଏକାଦଶୀଦିନ ଆଚାର୍ଯ୍ୟ ମହାଶୟ ତାଙ୍କ ମର ଶରୀର ଛାଡ଼ି ଚାଲିଗଲେ । ସେ ବଞ୍ଚିଥିଲାବେଳେ କାହାମନରେ କେବେ କଷ୍ଟଦେବା କଥା ଶୁଣା ନାହିଁ । ତେଣୁ ଦେହାନ୍ତ ପରେ କରିହେବ କାହା ମନରେ କଷ୍ଟ ଦିଅନ୍ତେ । ଅର୍ଥାତ୍ ସେ ବଞ୍ଚିଥିଲାବେଳେ ବନ୍ଦ ଲଫାପା ଭିତରେ କିଛି ଲେଖି ଦେଇ ଯାଇ ନଥିଲେ—ଯେ ମୋର ମରଶରୀରକୁ ଏହିପରି ଭାବରେ ସଂସ୍କାର କରିବ । ତେଣୁ ଆମ୍ଭେମାନେ ତାଙ୍କ ମରଶରୀରକୁ ଶୋଭାଯାତ୍ରାରେ ସାକ୍ଷୀଗୋପାଳ ବକୁଳ ବନକୁ ବହିନେଲୁ । ତାଙ୍କର ଜ୍ଞାତି କୁଟୁମ୍ବ ସେମାନଙ୍କର ବିଶ୍ୱାସଅନୁସାରେ ଶୁଦ୍ଧିକ୍ରିୟା କଲେ । ସାରା ଓଡ଼ିଶାରେ ଯିଏ ଯେପରି ଚାହିଁଲା ସେହିପରି ଭାବରେ ତାଙ୍କ ଶ୍ରାଦ୍ଧ ପାଳନ କଲା । କିନ୍ତୁ ଆଚାର୍ଯ୍ୟ ମହାଶୟ ଯେଉଁ ମହତ୍ ଉପଦେଶ ବରାବର ଦେଇ ଆସୁଥିଲେ ''ଭଲ ମଣିଷ ହୁଅ ଭଲ-ମଣିଷ ହେବାପାଇଁ ଭଲଘର, ଭଲଗାଡ଼ି, ଭଲ ପୋଷାକ, ଭଲ ପାଟିସୁଆଦିଆ ଖାଦ୍ୟ ଲୋଡା ହୁଏ ନାହିଁ । ବରଂ ବିଳାସ ବିଭବ, ମଣିଷକୁ ଅମଣିଷ କରେ । ସବୁ କ୍ଷେତ୍ରରେ ଭଲ ମଣିଷ ଆବଶ୍ୟକ । ତମେ ଇଂଜିନିୟର ହୁଅ, ଡାକ୍ତର ହୁଅ, ଓକିଲ ହୁଅ, ବ୍ୟବସାୟୀ ହୁଅ, ବୈଜ୍ଞାନିକ ହୁଅ, ବା ଶିକ୍ଷକ ହୁଅ, ସବୁ କ୍ଷେତ୍ରରେ ଭଲ ମଣିଷ ଆବଶ୍ୟକ''—ଏହାହିଁ ଥିଲା ଆଚାର୍ଯ୍ୟ ମହାଶୟଙ୍କର ସମସ୍ତଙ୍କୁ ଉପଦେଶ । କିନ୍ତୁ ଏକଥା ଅନେକ ଶୁଣି ଗଲେଣି । ଆଚାର୍ଯ୍ୟ ମହାଶୟ ସାଧନାର ଯେଉଁ ଚରମ ସୀମାରେ ପହଞ୍ଚିଥିଲେ ତାହା ତାଙ୍କ ଜୀବଦ୍ଦଶାରେ ବା ବଞ୍ଚିଥିଲା ବେଳେ ଅଧିକାଂଶ ଜାଣି ପାରିଲେ ନାହିଁ ।

୧୯୬୨ ରୁ ୧୯୬୮ ଆଚାର୍ଯ୍ୟ ମହାଶୟ ପୁରୀଠାରେ ରହୁଥିଲେ । ସେହି ସମୟ ମଧ୍ୟରେ ଆଚାର୍ଯ୍ୟ ମହାଶୟଙ୍କର ସାଧନା ଉପର ପ୍ରତ୍ୟକ୍ଷ ଫଳାତ୍ମକ ହୋଇଥିଲା ତାହା ମୁଁ ଏ ଲେଖାରେ ବର୍ଣ୍ଣନା କରିବି ।

ପରଦିନଠାରୁ ସକାଳେ ଆଗ୍ନେୟ ମହାଶୟ ସମୁଦ୍ରକୂଳକୁ ବୁଲି ଆସି ଡାକ୍ତର ମହାଦେବ ବାବୁଙ୍କ ଘରେ ପହଞ୍ଚିଲେ । ମହାଦେବବାବୁ ବାସ୍ତବରୁ ବାହାରୁଙ୍କ କଣ୍ଠରେ ତାଙ୍କର ଗୋଟିଏ ନାତୁଣୀ ଗତ କାଲିଠାରୁ ପଡ଼ିଯାଇ ବେହୋସ ଅବସ୍ଥାରେ ସ୍ୱସ୍ତି ଡାକ୍ତର ଖାନାରେ ଥିବା କଥା ଆଗ୍ନେୟ ମହାଶୟଙ୍କୁ ବତାଇଲେ । ଆଗ୍ନେୟ ମହାଶୟ ସାଙ୍ଗେ, ସାଙ୍ଗେ, ସ୍ୱସ୍ତି ଡାକ୍ତର ଖାନାର ଉପର ମହଲାକୁ ଗଲେ ଓ ସେ ରୋଗୀର ବିଛଣା ପାଖରେ ବସି ପଡ଼ି ତାଙ୍କୁ ଆଉଁସିବାକୁ ଲାଗିଲେ କିନ୍ତୁ ମୁଁ ଲକ୍ଷ୍ୟ କରୁଥାଏ ଆଗ୍ନେୟ ମହାଶୟଙ୍କ ହାତ ରୋଗୀର ଦେହ ଉପରେ ସୂତାଏ ଛାଡ଼ି ଯାଆ ଆସ, କରୁଥାଏ । ରୋଗୀ ଶରୀରକୁ ସ୍ପର୍ଶ କରୁନଥାଏ । ସେଠାରୁ ଫେରି ଗୋପବନ୍ଧୁ ଭବନରେ ପହଞ୍ଚି ଆଗ୍ନେୟ ମହାଶୟ ବିଛଣାରେ ବସି ତାଙ୍କ ଜପାମାଳାଟି ମାଗିଲେ । ମୁଁ ପଚାରିଲି-"ବର୍ତ୍ତମାନ ଦିନ ଦଶଟା ହେଲାଣି, ବର୍ତ୍ତମାନ ମାଳା କଣ ହେବ ?" ଟିକିଏ ବିରକ୍ତି ପ୍ରକାଶ କରି କହିଲେ—"ସବୁକଥା ନ ଜାଣିଲେ କଣ ହେବ ନାହିଁ । କାହାରିକୁ କିଛି କହିବା ଦରକାର ନାହିଁ । ମାଳା-ଡବାଟି ଦିଅ ।" ମୁଁ ମାଳା ଡବାଟି ତାଙ୍କ ହାତକୁ ବଢ଼ାଇଦେଲି । ସେ ଜପରେ ଲାଗିଗଲେ । ୧୨ଟାପରେ ଜପ ଶେଷକରି ଖାଇଲେ; ଅଳ୍ପ ସମୟ ବିଶ୍ରାମ ନେଇ ପୁଣି ଜପ ଆରମ୍ଭ କଲେ । ଏହିପରି ତିନିଦିନ ମଧ୍ୟ ଅବେଳରେ ( ସବୁଦିନେ ଆଗ୍ନେୟ ମହାଶୟ ରାତି ଅଢ଼େଇଟାରୁ ଚାରିଟା ପର୍ଯ୍ୟନ୍ତ ଜପ ଇତ୍ୟାଦି କରନ୍ତି । ) ଜପ ପରେ ଖାଇବାର ବିଳମ୍ବ ହେବାରୁ ମତେ କହିଲେ କଣ ମୋର ଖାଇବା ଡେରି ହୋଇ ଗଲା କି ? ମୁଁ କହିଲି ମାନବ ସେବା ଯାହାର ବ୍ରତ ତାହାର ସ୍ୱ ସେବାର ସହିତ ବିଳମ୍ବରେ ପ୍ରଶ୍ନ କାହିଁ ? ମୋ କାନ୍ଧରେ ହାତମାରି ଦେଇ କହିଲେ ଠିକ୍ ବୁଝିଛ । ମୁଁ ସଙ୍ଗେ ସଙ୍ଗେ, ଉତ୍ତର ଦେଲି— "ଆପଣଙ୍କୁ ଠିକ୍ ଠିକ୍ ଭାବରେ ବୁଝିବା ଅସମ୍ଭବ ।" ସେ ଖାଇଲେ ବିଶ୍ରାମ ନେଲେ । ସେଦିନ ମଧ୍ୟ ସେ ରୋଗୀକୁ ଦେଖିବାପାଇଁ ଡାକ୍ତରଖାନା ଗଲେ । ରୋଗୀ ମାଆଠାରୁ ଶୁଣିଲେ ତାର ଚେତା ଫେରି ଆସିଛି । ତିନି ଆରଦିନ ସମୁଦ୍ର କୂଳରେ ବୁଲିଲା ବେଳେ କହିପକାଇଲେ—"କିଏ କହୁଛି ମନ୍ତ୍ର ଏ ଯୁଗରେ କାମ କରେ ନାହିଁ ବୋଲି; ଯେ ରୋଗୀର ଚେତା ଫେରିବ କି ନାହିଁ ସେ ବିଷୟରେ ଡାକ୍ତରମାନେ ସନ୍ଦିହାନ ଥିଲେ । ତାହା ପାଇଁ ମୁଁ ପ୍ରାର୍ଥନା କଲି, ସେ ଭଲ ହୋଇଗଲା । ତମେ ଜାଣ, ତାର ବାପା, ମୋର ଅତି ପ୍ରିୟ ଛାତ୍ରଥିଲା । ମୁଁ ତାର ଅଜା ଓ ବୋଉର ଦୁଃଖ ଦେଖି ସମ୍ଭାଳି ପାରିଲି ନାହିଁ । ତାହା ପାଇଁ ଏ ପ୍ରକ୍ରିୟା (ଜପ) ଫଳପ୍ରଦ ହେଲା । ମୁଁ ସଙ୍ଗେ ସଙ୍ଗେ କହି ପକାଇଲି-ଆଜ୍ଞା ଆପଣଙ୍କର ଅନେକେ ଆଶ୍ରିତ ଲୋକ ଅଛନ୍ତି । ମୁଁ ସେମାନଙ୍କୁ ଏକଥା ଜଣାଇ ଦିଏ । ତାହା ହେଲେ କାହାର କେଉଁବେଳେ ବିପଦ-ଆପଦ ପଡ଼ିଲେ ସେ ଆପଣଙ୍କର ଶରଣାଗତ ହେବ । ଏକଥା ଶୁଣିଲା ମାତ୍ରକେ ସେ ଗଦ୍‌ଗଦ୍ କଣ୍ଠରେ ଛଳଛଳ ଆଖିରେ କହି ପକାଇଲେ—"ପଚାବାବୁ ରକ୍ଷା କର । ଏକଥା ପ୍ରକଟ ହେଲେ ମୋ

ପାଖରେ ରହୁଥିଲେ ହୋଇଯିବ । ମନେରଖ ମୋ ବଞ୍ଚିଥିବା ଭିତରେ ଏ କଥା କାହାରିକୁ କହିବ ନାହିଁ । ମୁଁ ସେଦିନ ତାଙ୍କୁ ସମୁଦ୍ର କୂଳରେ ସେ ଅବସ୍ଥାରେ ଦେଖି ଓ ତାଙ୍କ କଥା ଶୁଣି ଅଭିଭୂତ ହୋଇଗଲି । ମନେ ପଡ଼ିଲା ପରମହଂସ ରାମକୃଷ୍ଣ କହୁଥିଲେ—"ପ୍ରତିଷ୍ଠା ଶୂକରୀ ବିଷ୍ଠା" । ମୁଁ କହିଲି "ଆପଣ କେତେ ବଡ଼ ସିଦ୍ଧ ପୁରୁଷ, ଅଥଚ ନିଜକୁ ଲୁଚାଇ ଲୁଚାଇ ଚାଲି ଯିବେ । ମୁଁ କବାବ ଦେଉଛି, ଏ କଥା ଆପଣ ବଞ୍ଚିଥିବା ମଧ୍ୟରେ କାହାରିକୁ କହିବ ନାହିଁ ।"

ଆଉ ଥରେ ପୁରୀର ଜଣେ ପ୍ରତିଷ୍ଠିତ ପଣ୍ଡିତ ରୋଗରେ ପଡ଼ିଲେ । ଆତ୍ମର୍ଘ୍ୟ ମହାଶୟ ମତେ ସଙ୍ଗରେ ନେଇ ରୋଗୀ ତାଙ୍କୁ ଦେଖିବାକୁ ଯାଉଥିଲେ । ଉକ୍ତ ପଣ୍ଡିତ ମହାଶୟ ବାରମ୍ବାର ଆତ୍ମର୍ଘ୍ୟ ମହାଶୟଙ୍କୁ ଅନୁରୋଧ କଲେ ତାଙ୍କ ଆରୋଗ୍ୟ ପାଇଁ ପ୍ରାର୍ଥନା କରିବାକୁ ଆତ୍ମର୍ଘ୍ୟ ମହାଶୟ ତାଙ୍କ ପାଇଁ ଜପ ଧ୍ୟାନ କଲେ ଏବଂ ସେ ପଣ୍ଡିତ ମହାଶୟ ସେଥର ରୋଗ ମୁକ୍ତ ହୋଇ ପ୍ରାୟ ଏକ ବର୍ଷ ବଞ୍ଚିଲେ ।

× × × ×

ଗୋଟିଏ ଝିଅ ଆତ୍ମର୍ଘ୍ୟ ମହାଶୟ, ଗୋପବନ୍ଧୁ ଶ୍ରୋତ୍ରୀୟ ଓ ରମା ଦେବୀଙ୍କ ପାଖରେ ତାଲିମ୍ ହୋଇ ପୁରୀର ଜଣେ ପ୍ରତିଷ୍ଠିତ ଲୋକଙ୍କୁ ବିବାହ କରିଥିଲେ । ସେ ଝିଅର ବାହାଘର ଆଠ, ନଅ ବର୍ଷ ପର୍ଯ୍ୟନ୍ତ କୌଣସି ପିଲା ଝିଲା ହେଲା ନାହିଁ । ଦିନେ ସେ ଝିଅଟି କାତର ବାତ୍ସଲ୍ୟ ସ୍ନେହରେ ଆତ୍ମର୍ଘ୍ୟ ମହାଶୟଙ୍କୁ ରଘୁନାଥଙ୍କର କିଛି ମିଷ୍ଟାନ୍ନ ପ୍ରସାଦ ଖୁଆଇ ଦେଲା ଏବଂ ତାପରେ ସେହି ଘଟଣାକୁ କେନ୍ଦ୍ର କରି ଆତ୍ମର୍ଘ୍ୟ ମହାଶୟଙ୍କୁ ଅନୁରୋଧ କରାଗଲା ଯେ ଯଦି ସେ ( ଆତ୍ମର୍ଘ୍ୟ ମହାଶୟ ) ତାହା ପାଇଁ ପ୍ରାର୍ଥନା କରିବେ ତାହାଲେ ତାର ମନବାଞ୍ଛା ପୂର୍ଣ୍ଣ ହେବ । ସମସ୍ତଙ୍କୁ ସତ ତାଉ କେତେ ଦିନ ପରେ ସେ ଝିଅଟି ଗର୍ଭ ଧାରଣ କଲା ଓ ପରେ ପୁରୀ ଡାକ୍ତରଖାନାରେ ତାର ଗୋଟିଏ ଝିଅ ହେଲା ।

ମୁଁ ଆତ୍ମର୍ଘ୍ୟ ମହାଶୟଙ୍କ ଜନ୍ମ ଦିନରେ (୧୯୭୩) ସମାଜରେ ଜନ୍ମସିଦ୍ଧ ଆତ୍ମର୍ଘ୍ୟ ହରିହର ବୋଲି ଯେଉଁ ଲେଖାଟା ଲେଖି ଥିଲି, ତାହା ଠାରୁ ଆହୁରି ପ୍ରତ୍ୟକ୍ଷ ଭାବରେ ମାଆ ହରଚଣ୍ଡୀ ଆତ୍ମର୍ଘ୍ୟ ମହାଶୟଙ୍କ ପ୍ରାର୍ଥନା ଫଳରେ ତାଙ୍କର ସାନଭାଇ ଗୋବିନ୍ଦ ଚନ୍ଦ୍ର ଦାସଙ୍କୁ ତାଙ୍କ ରୋଗ ଶଯ୍ୟା ପାଖରେ ସାକ୍ଷିଗୋପାଳ ଡାକ୍ତରଖାନାରେ ଦର୍ଶନ ଦେଇଥିଲେ । ସମସ୍ତ ଘଟଣା ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା କଲେ ଏ ପୁସ୍ତକର କଲେବର ବୃଦ୍ଧି ଘଟିବ ତେଣୁ ସେଥିରୁ ବିରତ ହେଲି । ପରେ ମୋର 'ଆତ୍ମର୍ଘ୍ୟ ମାନସ' ବହିରେ ସମସ୍ତ ଘଟଣା ବର୍ଣ୍ଣନା କରିବାର ଆଶା ରହିଲା ।

ଉପରୋକ୍ତ ଘଟଣାମାନଙ୍କରୁ ଜଣାଯାଏ ଆର୍ଯ୍ୟ ମହାଶୟ ଜନ୍ମସିଦ୍ଧ ଲୋକ ଥିଲେ । ସେଭଳି ମୁକ୍ତ ଆତ୍ମାଙ୍କୁ ସୃଷ୍ଟି କରି ମାନବ ସମାଜକୁ ଶିକ୍ଷା ଦେବା ପାଇଁ ବରାବର ପଠାନ୍ତି । ଆର୍ଯ୍ୟ ମହାଶୟ କେବେ ହେଲେ ନିଜକୁ ପ୍ରତିଷ୍ଠିତ କରିବା ପାଇଁ ଇଚ୍ଛା କରି ନାହାନ୍ତି । ତାଙ୍କ ଆତ୍ମା ଏବେ ବି ମାନବ ସମାଜର ମଙ୍ଗଳ ପାଇଁ କାର୍ଯ୍ୟ କରୁଛି । ଯଦି କେହି, ପରୀକ୍ଷା କରିବାକୁ ଚାହାନ୍ତି, ସେ ଆର୍ଯ୍ୟ ମହାଶୟଙ୍କର ମୂର୍ତ୍ତିକୁ ନିଜ ମନ ମଧ୍ୟରେ ଚିନ୍ତାକରି ଧ୍ୟାନସ୍ଥ ହୁଅନ୍ତୁ ଓ ତାଙ୍କର ଇପ୍ସିତ ଫଳ ମିଳୁଛି କି ନାହିଁ ପରୀକ୍ଷା କରି ଦେଖନ୍ତୁ ।

—o—

# ଋଷିପ୍ରାଣ ଆଚାର୍ଯ୍ୟ ହରିହର

ଶ୍ରୀ ଲକ୍ଷ୍ମଣ ମିଶ୍ର

**"Blessed are the meek—**
**for they shall inherit the earth"**
**Jesus christ**

ଆଚାର୍ଯ୍ୟ ହରିହର ଥିଲେ ସଂପୂର୍ଣ୍ଣ ରୂପେ ନିର୍ଗୁଣାତୀତ ସ୍ଥିତପ୍ରଜ୍ଞ ଯୋଗୀ । କାମ-କ୍ରୋଧ ଶୂନ୍ୟ ଓ ସଂପୂର୍ଣ୍ଣ ଅହଙ୍କାର ହୀନ ନ ହେଲେ କେହି ଗୁଣାତୀତ ହୋଇ ପାରେ ନାହିଁ । ଅହଙ୍କାର ଶୂନ୍ୟ ପୁରୁଷର ଏକ ପ୍ରଧାନ ଲକ୍ଷଣ ହେଉଛି—ସେ ତୃଣଠାରୁ ବି ନୀଚ ଏବଂ ବୃକ୍ଷଠାରୁ ବି ସହିଷ୍ଣୁ ହୁଏ । ଆଚାର୍ଯ୍ୟ ମହାଶୟଙ୍କ ପକ୍ଷରେ ଏହି ଉକ୍ତି ଅକ୍ଷରେ ଅକ୍ଷରେ ସତ୍ୟ ଥିଲା । ଲୋକେ କଥାରେ କହନ୍ତି—ଅମୁକ ବ୍ୟକ୍ତି ଏତେ ଅହିଂସାପର ଥିଲେ ଯେ ସେ ମାଛିକି ମର ବୋଲି କହୁ ନ ଥିଲେ ।

ଏହିପରି ନିରହଙ୍କାର ସାଧୁବ୍ୟକ୍ତି ମାନଙ୍କ ଉପରେ ଯେତେବେଳେ ଅତ୍ୟାଚାର ହୁଏ, ସେମାନଙ୍କୁ ସକଳ ପ୍ରକାର ଅତ୍ୟାଚାରରୁ ରକ୍ଷା କରିବାକୁ ଭଗବାନ୍ ନରଦେହରେ ଅବତୀର୍ଣ୍ଣ ହୁଅନ୍ତି । ଦଣ୍ଡକବନରେ ସାଧୁଜନ ପୀଡ଼ିତ ରାକ୍ଷସମାନଙ୍କୁ ନିର୍ମୂଳ କରୁଥିଲା ବେଳେ ଶ୍ରୀ ରଘୁନାଥ ରାକ୍ଷସମାନଙ୍କ ପ୍ରତି ନିମ୍ନୋକ୍ତ କଟୁବାଣୀ ପ୍ରକାଶ କରିଥିଲେ ।

"ହେ ଦୁଷ୍ଟ ନିଶାଚରମାନେ, ଯେଉଁ ନିର୍ବାଦ ହିଂସାଦ୍ୱେଷହୀନ ଆତ୍ମସ୍ଥ ମୁନିମାନେ ବୃକ୍ଷ ଫଳମୂଳ ଖାଇ ବଞ୍ଚନ୍ତି, ସମସ୍ତେ ସୁଖୀ ହେଉନ୍ତୁ ବୋଲି ଯେଉଁମାନେ ସର୍ବଦା କାମନା କରୁଛନ୍ତି, ଯେଉଁମାନଙ୍କର ଅଭିଶାପ ବାଣୀ ଉତ୍ପୀଡ଼କ ମାନଙ୍କୁ ସମ୍ପୂର୍ଣ୍ଣରୂପେ ପତଙ୍ଗବତ୍ ଭସ୍ମୀଭୂତ କରି ଦେବାର ପୂର୍ଣ୍ଣ ଶକ୍ତି ରହିଛି ମାତ୍ର ଯେଉଁମାନେ ଏହି ଅଭିଶାପକୁ ସ୍ୱପ୍ନରେ ସୁଦ୍ଧା ପ୍ରୟୋଗ କରନ୍ତି ନାହିଁ, ସେହି ବ୍ରାହ୍ମଣମାନଙ୍କୁ ତୁମେମାନେ ପୀଡ଼ାଦେଲେ ମୁଁ କଦାପି କ୍ଷମା ଦେବି ନାହିଁ ।"

'ବାଲ୍ମୀକି ରାମାୟଣ' ଶ୍ରୀରାମଚନ୍ଦ୍ରଙ୍କ ମୁଖ ବର୍ଣ୍ଣିତ ଏହିପରି ଆତ୍ମସ୍ଥ ମୁନିର ଲକ୍ଷଣ ଆର୍ଯ୍ୟ ମହାଶୟଙ୍କଠାରେ ପ୍ରକଟିତ ହୋଇ ଥିଲା । ଏହି ପରି ବିଶ୍ୱମଙ୍ଗଳକାମୀ ହିଂସାଦ୍ୱେଷ ଶୂନ୍ୟ ବ୍ୟକ୍ତି ଏହି ପୃଥିବୀରେ ବହୁ ସଂଖ୍ୟାରେ ଦେଖା ନ ଦେବା ଫଳରେ ହିଁ ସେମାନଙ୍କୁ ଦୁର୍ଜନପୀଡ଼ାରୁ ତ୍ରାଣ କରିବାକୁ ଭଗବାନ୍ ନରଦେହ ଧରି ଧରାଧାମରେ ଅବତୀର୍ଣ୍ଣ ହୁଅନ୍ତି ବୋଲି ସବୁ ପୁରାଣ ଶାସ୍ତ୍ର ବଜ୍ର-ନିର୍ଘୋଷରେ ପ୍ରକାଶ କରେ ।

ପ୍ରତ୍ୟେକ ବ୍ୟକ୍ତି ଅନ୍ତର ଭିତରେ ଚାହେଁ, "ମୋତେ ସମସ୍ତେ ଭଲ ପାଆନ୍ତୁ, ମୋତେ ସମସ୍ତେ ଜାଣନ୍ତୁ ଏବଂ ମୋର ତୃପ୍ତି ବିଧାନରେ ସମସ୍ତେ ଯତ୍ନଶୀଳ ହୁଅନ୍ତୁ ।"

ଅଜ୍ଞଲୋକେ ଅନ୍ତରଭିତରର ଏହି ତିନୋଟି ଅଭୀପ୍ସାର ତାତ୍ପର୍ଯ୍ୟକୁ ସମ୍ପୂର୍ଣ୍ଣ ହୃଦୟଙ୍ଗମ କରି ନ ପାରି ଏହି ଅଭୀପ୍ସାକୁ ଦେହମନ ଓ ପ୍ରାଣର ଏକ ପ୍ରବଳ କ୍ଷୁଧାବୋଲି ଧରି ନେଇ ଭ୍ରମରେ ପଡନ୍ତି ଏବଂ ପରିବାରଠାରୁ, ସମାଜଠାରୁ ଓ ଦୁନିଆଠାରୁ ସ୍ନେହ ଶ୍ରଦ୍ଧା ଭକ୍ତି ଦାବୀ କରି ସଂଘର୍ଷର ସମ୍ମୁଖୀନ ହୋଇ ବିଫଳ ହୁଅନ୍ତି । ସେମାନେ ଧନ, କ୍ଷମତା, ଓ ଯଶ ପଛରେ ଗୋଡ଼ାଇ ଏହି ତିନୋଟି ବସ୍ତୁସାହାଯ୍ୟରେ ଚାହାନ୍ତି "ସମସ୍ତେ ମୋତେ ଜାଣନ୍ତୁ, ସମସ୍ତେ ମୋ ପାଇଁ କର୍ମ କରନ୍ତୁ ଏବଂ ସମସ୍ତେ ମୋତେ ଭଲ ପାଆନ୍ତୁ ।"

ଧନ, କ୍ଷମତା ଓ କୀର୍ତ୍ତି ଏ ତିନୋଟି ମଧ୍ୟରୁ ଏକ ବା ଏକାଧିକ ହାସଲ କରି ଏହାର ସାହାଯ୍ୟରେ ପୂର୍ବୋକ୍ତ ତିନୋଟି ଅଭୀପ୍ସାକୁ ହାସଲ କରିବାକୁ ବସିଥିବା ଲୋକଙ୍କ ସଂଖ୍ୟା ଖୁବ୍ ବେଶୀ ହେଲେ ବି ଏମାନେ ଯେ ସବୁଦା ବିଫଳ ହୋଇଛନ୍ତି ତାହା ଟିକିଏ ଚିନ୍ତା କଲେ ସ୍ପଷ୍ଟ ଜଣାଯିବ ।

ଯଥେଷ୍ଟ ଐଶ୍ୱର୍ଯ୍ୟ ବା ଧନ କାହାର ପାଖରେ ଥିଲେ କିମ୍ବା ଅମାପ କ୍ଷମତା ଓ ଯଶର ଅଧିକାରୀ କେହି ହେଲେ ତାହାର ଯୋଉଁଏ ମାତ୍ର ଅଭୀପସା ବିକୃତ ଭାବରେ ସଫଳ ହୋଇ ପାରେ । "ମୋତେ ସମସ୍ତେ ଜାଣନ୍ତୁ ଏବଂ ମୋର ତୃପ୍ତି ପାଇଁ ସମସ୍ତେ କାମ କରନ୍ତୁ" ଏହି ଯୋଡ଼ିକ ମାତ୍ର ଅଭୀପାସାକୁ ସେ ଟଙ୍କା ବା କ୍ଷମତା ବଳରେ ବିକୃତ ଭାବରେ ମେଣ୍ଟାଇ ପାରେ । ତାଙ୍କର ଅପର୍ଯ୍ୟାପ୍ତ ଐଶ୍ୱର୍ଯ୍ୟ ବା କ୍ଷମତା ହେତୁରୁ ସମସ୍ତେ ତାଙ୍କୁ ଜାଣନ୍ତି ବା ତାଙ୍କର ପ୍ରୀତି ପାଇଁ କର୍ମ କରି ପାରନ୍ତି । ମାତ୍ର ତାଙ୍କର ହୃଦୟରେ ସବୁଦା ଏହି ଅବଶୋଷ ରହିଯାଏ "ମୋ ପାଖରେ ଅପର୍ଯ୍ୟାପ୍ତ ଧନ ବା କ୍ଷମତା ଥିବାରୁ ସିନା ସମସ୍ତେ ମୋତେ ଜାଣିଲେ ବା ମୋର ତୃପ୍ତି ପାଇଁ କର୍ମ କଲେ । ଏ ଦୁଇଟି ନ ଥିଲେ ମୋତେ ଜାଣନ୍ତେ କି; ଓ ମୋର ତୃପ୍ତି ପାଇଁ କର୍ମ କରନ୍ତେ କି ?"

ମାତ୍ର "ମୋତେ ସମସ୍ତେ ଭଲ ପାଆନ୍ତୁ" ଏହି ପ୍ରବଳତମ ଅଭୀପ୍ସାର ବିକୃତ ତୃପ୍ତି କି କସ୍ମିନ୍ କାଳେ ଧନ ଯଶ ଓ କ୍ଷମତା ଦ୍ୱାରା ହୋଇପାରେ ନାହିଁ।

ଏହି ବିରୋଧ ସଂଘର୍ଷ ଓ ନିଷ୍ଫଳ ପ୍ରୟାସ କଥା ଚିନ୍ତା କରି ମୁଷ୍ଟିମେୟ 'ଜ୍ଞାନୀବ୍ୟକ୍ତିମାନେ ଯୁଗ ଯୁଗ ସାଧନା ବଳରେ ଅନ୍ୟ ଏକ ଅଭ୍ରାନ୍ତ ପଥର ଅବିଷ୍କାର କଲେ ଯହିଁରେ କି ବିନା ଦାବୀରେ ଏବଂ ଧନ କ୍ଷମତାର ବିନା ଲୋଭରେ ବି ଉକ୍ତ ତିନୋଟି ଅଭୀପ୍ସାର ପୂର୍ଣ୍ଣ ସାର୍ଥକତା ଘଟିବ। ସେହି ଅଭ୍ରାନ୍ତ ପଥଟି ହେଉଛି ଏହା—

ପ୍ରତ୍ୟେକ ମଣିଷ ଅନ୍ତରରେ ଯେ ଏହି ତିନୋଟି ଅଭୀପ୍ସା ଅହରହ ମଥା ଟେକୁଛି, ଏଥିରୁ ପ୍ରତିପନ୍ନ ହେଉଛି ଯେ ଏହି ତ୍ରିବିଧ ଅଭୀପ୍ସା କେବେ ହେଲେ ବି ଦୈହିକ, ମାନସିକ ବା ପ୍ରାଣିକ ନୁହେଁ। ଏହି ଅଭୀପ୍ସା ଦେହ ମନ ଓ ପ୍ରାଣର ବାହାରେ ଏବଂ ଏହା ସମ୍ପୂର୍ଣ୍ଣ ନିର୍ବ୍ୟକ୍ତିକ (Impersonal)। ଏହାର ଅପର ନାମ ଆତ୍ମା (self)। ଏହି ନିର୍ବ୍ୟକ୍ତିକ ଆତ୍ମାକୁ ହିଁ ଭଲ ପାଇବା, ସ୍ୱାଙ୍କୁ ହିଁ ଜାଣିବା ଏବଂ ସ୍ୱାଙ୍କର ତୃପ୍ତି ପାଇ ସବୁ କରିବା ହିଁ ଏହି ତ୍ରିବିଧ ଅଭୀପ୍ସାର ମର୍ମତତ୍ତ୍ୱ। ଏହି ତ୍ରିବିଧ ଅଭୀପ୍ସାର ସଫଳ ତୃପ୍ତି ବିଧାନ ପାଇଁ ଦେହ ମନ ଓ ପ୍ରାଣର ସକଳ ଦାବୀକୁ ପ୍ରତ୍ୟାଖ୍ୟାନ କରିବାକୁ ହେବ।

ସମସ୍ତଙ୍କ ହୃଦୟରେ ଥିବା ଏହି ଆତ୍ମାକୁ ମୁଁ ଭଲ ପାଏ, ତାଙ୍କୁ ହିଁ ମୁଁ ଜାଣିବାକୁ ସତତ ଚେଷ୍ଟିତ ହୁଏ; ତାଙ୍କରି ପ୍ରୀତି ପାଇଁ ମୋର ଦୈନନ୍ଦିନ ସବୁ କାମ କରି ଯାଏଁ, ତେବେ ଯାଇ ମୋ ଭିତରେ ଥିବା ଏହି ତ୍ରିବିଧ ଅଭୀପ୍ସାର ପୂର୍ଣ୍ଣ ତୃପ୍ତି ଘଟିବ।

ଋଷି ବ୍ରାହ୍ମଣ ଆଚାର୍ଯ୍ୟ ହରିହର ଏହି ଦ୍ୱିତୀୟ ଶ୍ରେଣୀର ଜ୍ଞାନୀଙ୍କ ମଧ୍ୟରେ ଏକତମ ଅଟନ୍ତି।

—*—

# ମୁକ୍ତ ପୁରୁଷ

ଶ୍ରୀ କୃପାସିନ୍ଧୁ ହୋତା

[ ଫେବୃୟାରୀ ତା୨୧ରିଖ, ୧୯୭୩ ମସିହା । ସଂସଦର ସଭ୍ୟପତି ଡକ୍ଟର କୃଷ୍ଣଚନ୍ଦ୍ର ଦାଶ ଏବଂ ମୁଁ କଟକସ୍ଥ ଭୂଦାନ ଅଫିସ ଗୃହରେ ପୂଜନୀୟ ଶ୍ରୀଯୁକ୍ତ ହୋତାଙ୍କୁ ସାକ୍ଷାତ କରୁ । ଦିନାନ୍ତ ସନ୍ଧ୍ୟା । ଶ୍ରୀଯୁକ୍ତ ହୋତା ବିଛଣାରେ ଶୋଇ ରହିଥିଲେ । ଡ଼କ୍ଟର ଦାଶ ପ୍ରଣିପାତ କରି କହିଲେ—"ମୁଁ ଜଣେ ବୃଦ୍ଧ ଯୁବକଙ୍କ ସହିତ ସାକ୍ଷାତ କରିବାକୁ ଆସିଛି ।" ଶ୍ରୀଯୁକ୍ତ ହୋତା ତତ୍‌କ୍ଷଣାତ୍ ଉତ୍ତର ଦେଲେ—ହଁ, ମୁଁ ଯୁବକ । ମୋ ପାଇଁ ବର୍ତ୍ତମାନ କନ୍ୟା ଖୋଜା ଚାଲିଛି । My crown is in my heart, not on my head." ଡ଼କ୍ଟର ଦାଶ ତହୁଁ କହିଲେ—"ଆମକୁ ଆଚାର୍ଯ୍ୟ ମହାଶୟଙ୍କ ସମ୍ପର୍କରେ ଆପଣଙ୍କର କିଛି ଅଭିଜ୍ଞତା କହି ଦିଅନ୍ତୁ; ଆମ ସଂସଦ ସମ୍ପାଦକ ଅଧ୍ୟାପକ ଶତପଥୀ ଟିପି ନେବେ ।" ଏହା ପରେ ସେ ରହିରହି ଓ ବେଳେବେଳେ ଅତି ବ୍ୟାକୁଳ ଉଚ୍ଛ୍ୱାସରେ ଯେଉଁ କେତେ ପଦ କହି ଦେଇଥିଲେ ତାହା ନିମ୍ନରେ ପ୍ରକାଶ ପାଇଛି—ସମ୍ପାଦକ ]

"ଆଚାର୍ଯ୍ୟଙ୍କ ପାଇଁ ଏ ସ୍ମୃତି ପୂଜାର ଆୟୋଜନ—ଖାଲି କଣ ମୁଣ୍ଡିଆ ମାରିବା ଆଉ ଭୋଗ ଦେବା ? ଏଇ ପୂଜା ଆଚାର୍ଯ୍ୟଙ୍କ ପାଇଁ ? ଛପନ ନଇବେଦ ଭୋଗ, ଅଥଚ ମନ୍ଦିର ବେଢ଼ା ଚାରି ପାଖରେ ଖପରା ଧରି ବସିଛନ୍ତି ଅସଂଖ୍ୟ ଦରିଦ୍ର କାଙ୍ଗାଳ ? "

ଶ୍ରୀଯୁକ୍ତ ହୋତା କିଛି ସମୟ ନୀରବ ରହିଲେ । ମନେ ହେଉଥିଲା ସତେ ଯେପରି ସେ ତାଙ୍କ ଭାବାବେଗଜନିତ କୋଧକୁ ଅବଦମିତ କରି ପାରୁ ନାହାନ୍ତି । ସମାଜର ଏ ବୈଷମ୍ୟର ବିରୁଦ୍ଧରେ ତାଙ୍କ ଅନ୍ତରରେ ଏକ ଅଗ୍ନିନକ ଝଙ୍କାର ଝଙ୍କାର ।

ତାପରେ ଶ୍ରୀଯୁକ୍ତ ହୋତା ଚାପା ଗଳାରେ କହିଲେ—" ଆଚାର୍ଯ୍ୟ ମହାଶୟ ଏପରି ଲୋକଥିଲେ ଯାହାଙ୍କୁ ଶତକଡ଼ା ଶହେ ଲୋକ ବିଶ୍ୱାସ କରୁଥିଲେ ।

ତାଙ୍କୁ ସନ୍ଦେହ କରିବାର କିଛି ନ ଥିଲା । ଯେତେବେଳେ ସେ ଯେଉଁ କାର୍ଯ୍ୟରେ ଥିଲେ କେହି ତାଙ୍କୁ ସନ୍ଦେହ କରି ନ ଥିଲେ । ସେ ଥିଲେ ମୁକ୍ତ ପୁରୁଷ । ଦୟା-ସାଗର, କ୍ଷମାସାଗର, କରୁଣା ସାଗର ଆଦି ଭଗବାନଙ୍କ ପାଖରେ ଯେଉଁ ଆକୂତ— ଏ ସବୁରେ ମୁଁ ବିଶ୍ୱାସୀ ନୁହେଁ । ହରିହର ଥିଲେ ଗୋପବନ୍ଧୁଙ୍କର ପ୍ରକୃତ ଶିଷ୍ୟ । ଗୋପବନ୍ଧୁ 'କାରାକବିତା'ରେ ଲେଖି ଥିଲେ—

"କାହୁଅଛି ପଣ୍ଡି ବୁଲି ବୁଲି ଗ୍ରାମ
ଦେଶ ପାଇଁ ଦଶ ପାଇଁ କର କାମ
ମିଳେ ଯଦି କାହା ଭାଗ୍ୟେ କାରାବାସ
କାର ନୁହଁଇ ସେ ପବିତ୍ର ପ୍ରୟାସ"

ଆଗ୍ରୂର୍ଣ୍ଣ ମହାଶୟଙ୍କ ସ୍ୱରରେ ଗୋପବନ୍ଧୁଙ୍କ ଭାବନାର ସଚ୍ଚୋଟ ପ୍ରତି-ଧ୍ୱନି ଶୁଣା ଯାଉଥିଲା—

"ସତ୍ୟାନୁସନ୍ଧାନେ ଆମର ସଂଗ୍ରାମ
ବଳିଦାନ ପରେ ଆମର ବିଶ୍ରାମ"

ଆଗ୍ରୂର୍ଣ୍ଣ ଥିଲେ ଏହି ଚିନ୍ତାର ଜାଗ୍ରତ ପ୍ରହରୀ । ଯେଉଁ ଶିକ୍ଷା ଲୋକଙ୍କ ଠାରୁ ମଣିଷଙ୍କୁ ଭିନ୍ନ ଭାବରେ ଦେଖେ, ଅଲଗା କରିଦିଏ ସିଏ କଣ ଶିକ୍ଷା ? ଗରିବ, ଉପାସୀ ମଣିଷ ଠାରୁ ଆମେ କେତେ ଦୂରରେ । ଯେଉଁ ଦିନ ଭୁବନେଶ୍ୱରର ଉପକଣ୍ଠରେ କୋଡ଼ିଏ ହଜାର ଟଙ୍କା ବ୍ୟୟ ହୋଇ 'ଆଗ୍ରୂର୍ଯ୍ୟ ବିହାର' ଉଦ୍‌ଘାଟିତ ହେଲା, ସେଇଦିନ ପୁଣି ସିଂହ ଦ୍ୱାରରେ ଏକ ହଜାର କାଙ୍ଗାଳଙ୍କୁ ଖାଇବାକୁ ଦିଆ ହେବାର ଥିଲା । ଆଗ୍ରୂର୍ଯ୍ୟ ଥିଲେ ଏହି ଚିନ୍ତାର ଅନୁବ୍ରତୀ ।

ଏହାପରେ କିଛି ସମୟର ନୀରବତା । ଡ଼କ୍ଟର ଦାଶ ଶ୍ରୀଯୁକ୍ତ ହୋତାଙ୍କ ନୀରବତାକୁ ଭଙ୍ଗ କରି ପଚାରିଲେ—"ଆଉ ପଦେ ଦ'ପଦ କହନ୍ତୁ ଦଯାକରି ।"

ଶ୍ରୀଯୁକ୍ତ ହୋତା କହିଲେ—"ଦିନେ ସନ୍ଧ୍ୟାରେ ମୋତେ ଗ୍ରାମରେ କେତେଜଣ ପଚାରିଲେ ଆଗ୍ରୂର୍ଯ୍ୟ ଓ ଗାନ୍ଧିଙ୍କ ବିଷୟରେ ଆପଣଙ୍କ ମତ କଣ ? ମୁଁ କହିଲି—ଉଭୟଙ୍କ ଭିତରେ ଚିନ୍ତା ଓ କର୍ମରେ ପୁରାପୁରି ମେଳ ଅଛି । କିନ୍ତୁ ଏତିକି ପ୍ରଭେଦ ଗାନ୍ଧିଙ୍କୁ ଲୋକେ ଗୁଳି କରି ମାରି ଦେଲେ, କିନ୍ତୁ ଆଗ୍ରୂର୍ଯ୍ୟଙ୍କୁ ଦିନେ ଟେକାଟିଏ ଫିଙ୍ଗିବାକୁ କେହି ସାହସ କରିନାହିଁ । କାରଣ ତାଙ୍କ ପରି ନିର୍ଦ୍ଦ୍ୱନ୍ଦ୍ୱ ମୁକ୍ତପୁରୁଷଙ୍କ ପ୍ରତି କାହାରି ଇର୍ଷା ବା ରାଗରୋଷ ନ ଥିଲା ।"

ଏହାପରେ, ଶ୍ରୀ ଯୁକ୍ତ ହୋତା ଟିକିଏ ବିଷଣ୍ଣ ବାହାରକୁ ଚାହିଁ କହିଲେ—"ଯେଉଁମାନେ ବୟସ୍କ ସେମାନେ ଯୁବଶକ୍ତିକୁ ପରିଚାଳିତ କରିବାକୁ ସମ୍ପୂର୍ଣ୍ଣ ଅପାରଗ । ସେମାନେ କହୁଛନ୍ତି-ଛାତ୍ରସମାଜ ଓ ଶିକ୍ଷକ ସମାଜ ରାଜନୀତିରୁ ଦୂରରେ ରୁହନ୍ତୁ । ମୁଁ କହୁଛି-"ଆରେ ବୋକା, ତୁମେ ଯେତେବେଳେ ଛାତ୍ର ଥିଲ, ସେତେବେଳେ ରାଜ୍ୟଥିଲା ରାଜାର । ଏଇଲାଏତ ଯେ ଛାତ୍ର ତା ମାଆ ଯାଇ ଠିଆ ହେଉଛି ରାଜନୀତିର ସିଂହଦ୍ୱାରରେ । ସେ ରାଜନୀତି କରିବନାହିଁ ଆଉ କି ନୀତି କରିବ?" ଶ୍ରୀ ଯୁକ୍ତ ହୋତା ଏତିକି କହି ଅଧ୍ୟାପକ ଶ୍ରୀ ଶତପଥୀଙ୍କ ପିଠିରେ ଖୁବ୍ ଜୋରରେ ଗୋଟିଏ ବିଧାମାରି ପଚାରିଲେ—"କଣ କହୁଛ ଶତପଥୀ ! ଏଇଆ ତ ?"

ଭକ୍ତର ଦାସ ରସିକତା କରି କହିଲେ—"ଆପଣଙ୍କ ପରି ଦ୍ରୋଣାଚାର୍ଯ୍ୟଙ୍କ ଆଘାତ ପାଇ ଏ ଶିଷ୍ୟ ତୃଣଟିର ଅବସ୍ଥା ଯେ ସାଂଘାତିକ" ? ଶ୍ରୀ ଯୁକ୍ତ ହୋତା ଖୁବ୍ ଜୋରରେ ହସି ଉଠିଲେ । ତାଙ୍କ ଉଜ୍ଜ୍ୱଳ ମୁହଁର ସମ୍ପୂର୍ଣ୍ଣ ଶୁଭ୍ର ଶ୍ମଶ୍ରୁ ଆନ୍ଦୋଳିତ ହେବାକୁ ଲାଗିଲା । ପୁଣି ପ୍ରକୃତିସ୍ଥ ହୋଇ ଶ୍ରୀ ଯୁକ୍ତ ହୋତା କହିଲେ—"ଏଇ ଗିରି, ଏଇ ଇନ୍ଦିରା......ଏମାନେ ଏଇଲାଏ ଗାନ୍ଧୀ ହଟାଇବାକୁ ବସିଛନ୍ତି । କଣ କମ୍ ଦୁରୂହ କାମ । ସତରେ କଣ ଏ ବିଶାଳ ଦେଶରୁ ଗାନ୍ଧୀ ପରି ମହାତ୍ମା ହଟିଯିବ "

ଭକ୍ତର ଦାସ ଅଙ୍ଗୀକାର ଶେଷରେ କହିଲେ—"ପଙ୍ଗୁ ଲଂଘୟତେ ଗିରି । ଆପଣଙ୍କପରି ପଙ୍ଗୁ ଏଣିକି ଗିରିଙ୍କୁ ବି ଲଘଂନ କରିଯିବେ । ଆପଣଙ୍କଠାରେ ଶତସିଂହର ପରାକ୍ରମ, ସହସ୍ର ଯୁବକର ମନୋବଳ ।"

ଏହାପରେ ମାତ୍ର ଦୁଇ ତିନୋଟି ବାକ୍ୟ କହି ଶ୍ରୀଯୁକ୍ତ ହୋତା ନୀରବ ହେଲେ—"ଆମେତ ଅରୂପଙ୍କୁ ନେଇ ଝଗଡାରେ ଭର୍ତ୍ତି କରୁଛୁ । ତାଙ୍କର ମୋ ତ ଯେଉଁ ସନ୍ତୋଷ ମୁଁ ଜୀବନରେ ଭୁଲି ପାରିବି ନାହିଁ । ସେ ମୁକ୍ତ ପୁରୁଷ ଚାଲିଗଲେ, ମୁଁ ଦେହର ଗଣ୍ଠିକୁ ଧରି ବନ୍ଧା ପଡ଼ିଛି ।"

ଶ୍ରୀଯୁକ୍ତ ହୋତାଙ୍କ ରାତ୍ରୀ ଭୋଜନ ସମସ୍ତ ହୋଇଯାଇ ଥିଲା । ଆମେ ନିଷ୍କ୍ରାନ୍ତ ହେଲୁ ।

---

# ଯୁଗଜନ୍ମା ହରିହର

ଲେ—ଶ୍ରୀ ନରହରି ସ୍ୱାଇଁ

ସଂପାଦକ-ଉତ୍କଳ ସର୍ବୋଦୟ ମଣ୍ଡଳ-କଟକ

"ନିନ୍ଦନ୍ତୁ ନୀତିନିପୁଣାଃ ଯଦିବା ସ୍ତୁବନ୍ତୁ,
ଲକ୍ଷ୍ମୀଃ ସମା ବିଶନ୍ତୁ ଗଚ୍ଛନ୍ତୁ ବା ଯଥେଷ୍ଟମ୍ ।
ଅଦ୍ୟୈବ ବା ମରଣମସ୍ତୁ ଯୁଗାନ୍ତରେ ବା
"ନ୍ୟାଯ୍ୟାତ୍ପଥଃ ପ୍ରବିଚଲନ୍ତି ପଦଂ ନ ଧୀରାଃ ।" ଅର୍ଥାତ୍ ନୀତିନିପୁଣ ଲୋକେ ନିନ୍ଦା କରନ୍ତୁ ବା ସ୍ତୁତି କରନ୍ତୁ । ଲକ୍ଷ୍ମୀ ବରଦାୟିକା ହୁଅନ୍ତୁ ବା ନ ହୁଅନ୍ତୁ ଆଜି ମୃତ୍ୟୁ ହେଉ ବା ଯୁଗାନ୍ତରରେ ହେଉ, ମାତ୍ର ଧୀର ବିଚାରବନ୍ତ ଲୋକ ନ୍ୟାଯ୍ୟ ପଥରୁ କେବେ ହେଲେ ବିଚଳିତ ହୁଅନ୍ତି ନାହିଁ । "ଏହିପରି ନ୍ୟାଯ୍ୟ ବିଚାରବନ୍ତ ମନୀଷୀଙ୍କ ମଧ୍ୟରେ ଆଚାର୍ଯ୍ୟ ମହାଶୟ ଜଣେ । ଯେଉଁ ନ୍ୟାୟ, ସତ୍ୟ, ଆଦର୍ଶ ପାଇଁ ସେ ଜୀବନ ଉତ୍ସର୍ଗ କଲେ, ସେହି ପଣ ତାଙ୍କର ଶେଷ ଜୀବନ ପର୍ଯ୍ୟନ୍ତ ରହିଗଲା । ସେ ତାଙ୍କର ସେବା ଗୁରୁ ତଥା ପଥପ୍ରଦର୍ଶକ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ସହିତ ଯୁବକ ଅବସ୍ଥାରେ ଶପଥ କରିଥିଲେ—"ଆମ୍ଭେ ପାଠପଢ଼ି ସରକାରୀ ଚାକିରୀ କରିବା ନାହିଁ । ଦେଶ ପାଇଁ କିଛି କରିବା । ଜନ୍ମ ବେଳେ ଦେଶକୁ ଯାହା ଦେଖି ଥାଇଁ ତା'ଠାରୁ ଉନ୍ନତ ଦେଖି ମରିବା । " ଏହି ଶପଥ ତାଙ୍କର ବାସ୍ତବ କ୍ଷେତ୍ରରେ ପରିଣତ ହୋଇ ଶେଷରେ ତାଙ୍କୁ ଏ ଯୁଗର ଋଷି ରୂପେ ପରିଗଣିତ କରି ପାରିଲା । ବିଂଶ-ଶତାବ୍ଦୀର ଏକ ନକ୍ଷତ୍ର କୀର୍ତ୍ତିସ୍ତମ୍ଭ ରୂପେ କାଳ ବକ୍ଷରେ ଯୁଗଯୁଗ ପାଇଁ ସ୍ଥାନ ମିଳିଲା । ତ୍ୟାଗ ସାଧନାର ବଳରେ ମାନବ ହିଁ ଦେବତାର ସ୍ଥାନ ଲାଭ କରିପାରେ ଆଚାର୍ଯ୍ୟ ମହାଶୟହିଁ ତାହାର ନମୁନା ।

ଏହି ମାନବଦେହୀ ମହାପୁରୁଷଙ୍କର ଜନ୍ମ ପୁରୀ ଜିଲ୍ଲାର ଶ୍ରୀରାମପୁର ଗ୍ରାମରେ ତାଙ୍କର ପିତାଙ୍କ ନାମ ମହାଦେବ ବ୍ରହ୍ମା ଓ ମାତାଙ୍କ ନାମ ଶ୍ରଦ୍ଧାଦେବୀ । ପିତା ମାତାଙ୍କର ଜ୍ୟେଷ୍ଠ ପୁତ୍ର ହିସାବରେ ଅତି ଅଳିଅଳରେ ବଢ଼ିଥିଲେ । ତାଙ୍କୁ ଛବର୍ଷ

ହେଲାବେଳେ ମାତା ଶ୍ରଦ୍ଧାଦେବୀଙ୍କର ମୃତ୍ୟୁ ହେତୁ ପିତା ମହାଦେବ ବ୍ରହ୍ମାଙ୍କୁ ସକଳ ଦାୟିତ୍ୱ ବହନ କରିବାକୁ ପଡ଼ିଥିଲା । ପିଲାଟି ଦିନୁ ସେ ଥିଲେ ଏକ ନମ୍ରତାର ମୂର୍ତ୍ତିମନ୍ତ ପ୍ରତୀକ । ତୁଳସୀ ଦୁଇପତ୍ରରୁ ବାସିଲା ପରି ପିଲାଟିଦିନୁ ତାଙ୍କର କାର୍ଯ୍ୟ-କଳାପରୁ ସେ' ଜଣେ ମହତ୍ ପୁରୁଷ ହେବେ ତାହା ସ୍ପଷ୍ଟ ଜଣାପଡ଼ିଥିଲା ।

ତାଙ୍କର ବାଲ୍ୟଶିକ୍ଷା ଗ୍ରାମ୍ୟ ପାଠଶାଳାରୁ ଆରମ୍ଭ ହୋଇଥିଲା । ପିଲାଟି ଦିନୁ ଗଣିତଶାସ୍ତ୍ର ପ୍ରତି ତାଙ୍କର ବିଶେଷ ଆଦର ଥିଲା । ଗ୍ରାମ୍ୟ ପାଠଶାଳାର ପାଠ ଶେଷ କରି ଗ୍ରାମ ଭର୍ଣ୍ଣାକ୍ୟୁଲର ସ୍କୁଲରେ ଅଧ୍ୟୟନ କଲେ ଓ ବୃତ୍ତି ପାଇ ପୁରୀ ଜିଲ୍ଲା ସ୍କୁଲରେ ନାମ ଲେଖାଇଲେ । ଛାତ୍ର ଜୀବନରେ ଜଣେ ସରଳ, ସହନଶୀଳ, ସେବାପରାୟଣ ଓ ବିନମ୍ର ଗୁଣ ବିଶିଷ୍ଟ କୃତୀଛାତ୍ର ହିସାବରେ ତାଙ୍କର ଯଥେଷ୍ଟ ସୁନାମ ଥିଲା । ଅବସର ସମୟରେ ବନ୍ୟା, ମରୁଡ଼ି, ମହାମାରୀ, ବସନ୍ତ ଆଦି ବ୍ୟାପିବା ସମୟରେ ପିଲାଙ୍କୁ ଧରି ସେବା କରିବା ତାଙ୍କର ଥିଲା ଅନ୍ୟ ଏକ ସ୍ୱଭାବଗତ ଢଙ୍ଗ । ପୁରୀ ଜିଲ୍ଲା ସ୍କୁଲରେ ପଢୁଥିବା ସମୟରେ ଦାସେ ଆପଣଙ୍କ ସହିତ ମିଳାମିଶା କରିବାର ତାଙ୍କୁ ସୁଯୋଗ ମିଳିଥିଲା । ସେଥିପାଇଁ ଦାସେ ଆପଣଙ୍କର ତାଙ୍କ ପ୍ରତି ଆଶୀର୍ବାଦ ମଧ୍ୟ ଥିଲା ।

୧୯୦୧ ମସିହାରେ ବୃତ୍ତି ପାଇ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇ ରେଭେନ୍ସା କଲେଜରେ ନାମ ଲେଖାଇଲେ । ଜଣେ କୃତୀଛାତ୍ର ହିସାବରେ କଲେଜରେ ତାଂକର ସୁନାମ ଦିନକୁ ଦିନ ବଢ଼ିଲା । ଏହି ସମୟରେ 'ଦାସେ ଆପଣେ' ମଧ୍ୟ ରେଭେନ୍ସା କଲେଜରେ ଅଧ୍ୟୟନ କରୁଥାନ୍ତି । ତେଣୁ ତାଂକ ସହିତ ସଂପର୍କ ବହୁତ ବଢ଼ିଗଲା । ସେ ତାଙ୍କୁ ନିଜର ଜଣେ ହିତୈଷୀ ଭାବରେ ଗ୍ରହଣ କରି ତାଂକ ସାଥିରେ ମିଳି ବିଭିନ୍ନ ସେବା କାମ କରିବାକୁ ମନ ପ୍ରାଣ ଢାଳି ଦେଲେ । ତାଂକ ଜୀବନର ଗତିପଥ ଏହି ସମୟରୁ ସେବା ଆଡ଼କୁ ପୂରା ଢଳିଗଲା ।

ଏହି ସମୟରେ ଉତ୍କଳଗୌରବ ମଧୁସୂଦନ ଦାସଙ୍କ ସାହଚର୍ଯ୍ୟ ତାଙ୍କୁ ବି ଖୁବ୍ ବଳ ଯୋଗାଇଲା । କଲେଜ-ଅଧ୍ୟୟନ ବେଳେ ଭାରତୀଶିଳ୍ପ ବିଷୟରେ ଅଧ୍ୟୟନ କରିବା ପାଇଁ ଜାପାନ ଯିବାକୁ ସ୍ଥିର କରି ମୟୂରଭଞ୍ଜ ରାଜାସାହେବଙ୍କ ଆଶ୍ରୟକାମୀ ହେଲେ । ମଧୁବାବୁଙ୍କ ସୁପାରିଶ କ୍ରମେ ମୟୂରଭଞ୍ଜ ରାଜାଙ୍କର ବୃତ୍ତି ମିଳିବାର ନିୟମ ଥାଏ । ତେଣୁ ସୁପାରିଶ୍ ପତ୍ର ଆଣିବା ପାଇଁ ମଧୁବାବୁଙ୍କ ପାଖକୁ ଯାଇ ନିଜର ଅଭିମତ ଜଣାଇଲେ । ମଧୁବାବୁ ତାଙ୍କର ଚରିତ୍ରଗତ ସାର୍ଟିଫିକେଟ୍ ଅନ୍ୟ ଠାରୁ ଆଣିବାକୁ ପରାମର୍ଶ ଦେଲେ । ମାତ୍ର ଯୁବକ ହରିହର ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭାଷାରେ କହିଲେ—"ଆଜ୍ଞା ! ମୋ ଚରିତ୍ର ବିଷୟରେ ଅନ୍ୟଲୋକ ଉପରେ ସାର୍ଟି-

ଫିକେଟ ଦେବେ ? ମୋ ଚରିତ୍ର କଥା ତ ମୋତେ କେବଳ ଜଣା ।" ଜଣେ କଲେଜ ଛାତ୍ର ମୁହଁରୁ ଏପରି ସ୍ରେକ୍ ଠୋକ୍ ଜବାବ ଶୁଣି ମଧୁବାବୁ କୁଣ୍ଢାଇ ପକାଇଲେ । ମଧୁବାବୁ ଜାଣିଲେ—ଏହି ଯୁବକ ଦିନେ ଓଡ଼ିଶାରେ ଜଣେ ଶ୍ରେଷ୍ଠ ପୁରୁଷ ହୋଇ କିଛି କାମ କରି ପାରିବେ । ତାହାହିଁ ହେଲା । ମଧୁବାବୁଙ୍କ ସୁପାରିଶ୍‌ରେ ତାଙ୍କର ଜାପାନ ଯିବାର ସ୍ଥିର ହେଲା । ମାତ୍ର ପରେ ଚକ୍ଷୁରୋଗରେ ଆକ୍ରାନ୍ତ ହୋଇ ଜାପାନ ଯିବାର ବାଟ ବନ୍ଦ ହୋଇଗଲା ।

ଉତ୍କଳମଣି ଗୋପବନ୍ଧୁ ଦାସ ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ମହାଶୟ ଓ ପ୍ରଚାରକ ଅନନ୍ତ ମିଶ୍ର ଥିଲେ ପାଠପଢ଼ା ସମୟର ଘନିଷ୍ଠ ବନ୍ଧୁ । ଦାସେ ଆପଣ ସଭିଙ୍କ ଠାରୁ ବଡ଼ । ତେଣୁ ପ୍ରତ୍ୟେକ ତାଙ୍କ କଥା ମାନନ୍ତି, କେଉଁଠି ମହାମାରୀ ବା ବସନ୍ତ ବ୍ୟାପିଲେ, ସେଠାକୁ ଯାଇଁ ସେବା କାମ କରନ୍ତି, ଅନ୍ୟ କେଉଁଠି ବନ୍ୟା, ମରୁଡ଼ି ବା ଦୈବୀଦୁର୍ଘଟଣା ଘଟିଲେ ସେଠାକୁଯାଇଁ ଚୂଡ଼ା, ଚାଉଳ ବାଣ୍ଟନ୍ତି । ଦିନେ ସେମାନେ ମୁକ୍ତ ଆକାଶର ଜ୍ୟୋଛନା ତଳେ ବସି ଶପଥ କଲେ—"ଆମ୍ଭେ ପାଠପଢ଼ି ସରକାରୀ ଚାକିରୀ ନ କରି ଦେଶ ପାଇଁ କିଛି କରିବା ।" ଏହା ହେଲା ସେମାନଙ୍କର ଆଗ୍ନେୟ ଶପଥ । ସେହି ଶପଥ ହିଁ ସେମାନଙ୍କୁ ଏ ଯୁଗର ପଞ୍ଚସଖା ଭାବେ ଦେଶ ଦୁନିଆର ଆଗରେ ପରିଚିତ କରାଇଲା । ଏଫ୍ : ଏ ପାସ କରି ଓକିଲାତିର ଆଶା ନେଇ ଓକିଲାତି ପାଠ ପଢ଼ିବା ପାଇଁ କଲିକତା ଗଲେ । ସେତେବେଳକୁ ଦାସେ ଆପଣ ବି କଲିକତାରେ ରହି ଓକିଲାତି ପଢ଼ୁଥାନ୍ତି । ମାତ୍ର କିଛିଦିନ ପରେ ଓକିଲାତି ପାଠ ପ୍ରତି ତାଙ୍କର ମମତା ତୁଟିଗଲା । ଓକିଲାତି ବ୍ୟବସାୟ ସତ୍ୟ, ନ୍ୟାୟ ଉପରେ ପ୍ରତିଷ୍ଠିତ ନୁହେଁ ବୋଲି ତାଙ୍କର ଧାରଣା ଆସିଲା । ତେଣୁ ସେଥିରୁ ସେ ବାହାରି ଆସି ସ୍ୱାଧୀନ ଭାବରେ ଶିକ୍ଷକତା କରି ଛାତ୍ର ଗଠନ କରିବା ପାଇଁ ସ୍ଥିର କରି ଦେଇ ପ୍ରଥମେ ପୁରୀଜିଲ୍ଲା ସ୍କୁଲରେ ଶିକ୍ଷକତା ଆରମ୍ଭ କଲେ । ତାପରେ କଟକ ପ୍ୟାରି-ମୋହନ ଏକାଡେମୀରେ ଏକାଦିକ୍ରମେ ୫ବର୍ଷ ଶିକ୍ଷକତା କଲେ । 'ଶିକ୍ଷା କ୍ଷେତ୍ରରେ ରହି ସେବା କରିବାର ତଥା ଉତ୍ତମ ମଣିଷଗଢ଼ିବାର କଳା ହାସଲ କରି ଜଣେ ସୁଦକ୍ଷ ତଥା ଆଦର୍ଶ ଶିକ୍ଷକ ହିସାବରେ ସୁନାମ ଅର୍ଜନ କଲେ । ତାଙ୍କର ନିର୍ମଳ ନିଷ୍କପଟ କାର୍ଯ୍ୟକଳାପ, ଆଦର୍ଶ ଚରିତ୍ରବତ୍ତା, ବିନମ୍ରତା, କଷ୍ଟସହିଷ୍ଣୁତା ଓ ଅପର ପାଇଁ ଭାବି-ବାର ଦରଦୀଭାବ ପୂର୍ଣ୍ଣ ସହୃଦୟତା ଗୁଣ ପାଖରେ ଛାତ୍ର ଶିକ୍ଷକଙ୍କ ମୁଣ୍ଡ ନଇଁ ଯାଉଥିଲା । ଏହି ସମୟରେ ସ୍କୁଲରେ ଗୋଟିଏ 'ସେବକ ବାହିନୀ' ଗଢ଼ି କଟକର ବିଭିନ୍ନ ସାହିରେ ଛୁଟି ଅବସର ସମୟ ମାନଙ୍କରେ ସେବାକାମ କରୁଥିଲେ । ଏପରି କାମ ସେ ସମୟରେ କୌଣସିସ୍କୁଲରେ ହେଉ ନଥିଲା । ତେଣୁ ସ୍କୁଲର ସୁନାମ ସାଥିକୁ ତାଙ୍କର ମହତ ପଣିଆ ବହୁତ ବଢ଼ିଗଲା । ବହୁତ ପିଲା ମଧ୍ୟ ସେବା କାମ ପାଇଁ ବାହାରି ପଡ଼ିଲେ । ତାଙ୍କର ସ୍ନେହ ସୌହାର୍ଦ୍ଦ୍ୟ ପୂର୍ଣ୍ଣ ପିତୃବତ୍ସଳ ବ୍ୟବହାର ପାଖରେ ସଭିଏଁ ମୁଣ୍ଡ ନୁଆଁଇ ଦେଉଥିଲେ । ୧୯୦୯ ମସିହାରେ ବକୁଳ [illegible]

ବନରେ ଦାସେ ଆପଣ ଜାତୀୟ ବିଦ୍ୟାଳୟର ଶୁଭ ଦେଲେ । ଶିକ୍ଷା ମାଧ୍ୟମରେ ଜାତୀୟତା ବୋଧ ସୃଷ୍ଟି କରି ସାମାଜିକ ପରିବର୍ତ୍ତନ ଆଣିବା, ଗ୍ରାମ ସଂଗଠନ ମାଧ୍ୟମରେ ଜନ ଜାଗରଣ ସୃଷ୍ଟି କରିବା, ଜାତୀୟ ଶିକ୍ଷାର ପ୍ରଚଳନ କରି ଶିକ୍ଷା କ୍ଷେତ୍ରରେ କ୍ରାନ୍ତି ଆଣିବା ଥିଲା ତାଙ୍କର ମୁଖ୍ୟ ଲକ୍ଷ୍ୟ । ସେତେବେଳକୁ ପଣ୍ଡିତ ନୀଳକଣ୍ଠ ଦାସ ଏମ୍. ଏ ପାସ କରି ଜାତୀୟ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଭାର ଗ୍ରହଣକରିଥାନ୍ତି । ଆଚାର୍ଯ୍ୟ ମହାଶୟ ଦାସେ ଆପଣଙ୍କ ଆହ୍ୱାନ କ୍ରମେ କଟକ ଛାଡ଼ି ଏଣିକି ସତ୍ୟବାଦୀକୁ ଆସିଲେ । ପରେ ପଣ୍ଡିତ କୃପା ସିନ୍ଧୁ ମିଶ୍ର ଓ ପଣ୍ଡିତ ଗୋଦାବରୀଶ ମିଶ୍ର ଯୋଗ ଦେଇ ସାଧନାରତ ହେଲେ । ଏହି ପଞ୍ଚ ତପସ୍ୱୀ ପରବର୍ତ୍ତୀ କାଳରେ "ଓଡ଼ିଶାର ପଞ୍ଚସଖା" ନାମରେ ପରିଚିତ ହେଲେ । ଖୁବ୍ କମଦିନରେ ସାରା ଭାରତରେ ଏହି ଅନୁଷ୍ଠାନର ଯଶଗାରିମା ପ୍ରକଟିତ ହେଲା । ଏପରି ଅନୁଷ୍ଠାନ-ଟିକୁ ଦେଖିବା ପାଇଁ ବହୁ ବିଦୁଷୀ ଗୁଣଗ୍ରାହୀ ଲୋକେ ଆସିଲେ । ଗାନ୍ଧିଜୀ ମଧ୍ୟ ଏହାଦେଖି ଭୂୟସୀ ପ୍ରଶଂସା କରିଥିଲେ । ଗାନ୍ଧୀଜୀଙ୍କ ମୌଳିକ ଶିକ୍ଷା ପ୍ରଚଳନର ବହୁ ପୂର୍ବରୁ ଏପରି ଏକ ନୂତନ ପ୍ରୟୋଗ ପଞ୍ଚସଖା ଆରମ୍ଭ କରି ନୂତନ ଯୁଗର ମୂଳଦୁଆ ପକାଇଥିଲେ । ଆଚାର୍ଯ୍ୟ ମହାଶୟ ବନ ବିଦ୍ୟାଳୟର ଛାତ୍ରାବାସର ପରି-ଚାଳନା ଦାୟିତ୍ୱ ନେଇଥିଲେ । ଛାତ୍ରମାନଙ୍କର ଚରିତ୍ର ଗଠନରେ ତାଙ୍କର ଦାନ ଅସୀମ । ପିଲାମାନେ ଘରଦ୍ୱାର ବାପ ମାଆ ଛାଡ଼ି ଆଚାର୍ଯ୍ୟ ମହାଶୟଙ୍କର ବ୍ୟବହାର କୁଶଳତାରେ ସବୁ କିଛି ଭୁଲି ଯାଉଥିଲେ । ଏହି ସମୟରେ ଦାସେ ଆପଣେ ଆଚାର୍ଯ୍ୟ ମହାଶୟଙ୍କୁ ଆଚାର୍ଯ୍ୟ ପଦବୀରେ ଭୂଷିତ କରିଥିଲେ । ସେ ହିଁ ଥିଲେ ପ୍ରକୃତରେ ଆଚାର୍ଯ୍ୟ । ଦାସେ ଆପଣଙ୍କର ଆଦରର ଆଚାର୍ଯ୍ୟ ନିଜର ସାଧନା ବଳରେ ସାରା ଦେଶରେ "ଆଚାର୍ଯ୍ୟ ମହାଶୟ" ରୂପେ ପରିଚିତ ହେଲେ । ସେ ପ୍ରକୃତରେ ଥିଲେ ଏ ଯୁଗର ଆଚାର୍ଯ୍ୟ । ଆଚାର୍ଯ୍ୟ ମହାଶୟ ମାଟ୍ରିକ ପଢ଼ିଲା ବେଳେ ପ୍ରଚାରକ ଅନନ୍ତ ମିଶ୍ରଙ୍କ ଭଗ୍ନୀଙ୍କୁ ବିବାହ କରିଥିଲେ ଓ କିଛିଦିନ ପରେ ତାଙ୍କ ସ୍ତ୍ରୀଙ୍କର ମୃତ୍ୟୁ ହେବାରୁ ପୁନଶ୍ଚ ଦ୍ୱିତୀୟ ଦାର ଗ୍ରହଣ କରିଥିଲେ । ମାତ୍ର ବକୁଳ ବନରେ ଥିଲାବେଳେ ତାଙ୍କ ୨ୟ ଦାରଙ୍କର ମୃତ୍ୟୁ ହେଲା । ଆଗରୁ ଯାହା ଘର ପ୍ରତି ତାଙ୍କର ଟିକେ ମାୟାମମତା ଥିଲା, ତାହା ଏଣିକି ତୁଟିଗଲା । ଏହା ଭଗବାନଙ୍କ ଇଚ୍ଛା ଭାବି ଦେଶ କାମରେ ପୂରା ଲାଗିଗଲେ । ସାରା ଦୁନିଆର ସେବାପାଇଁ "ଜନ୍ମ ପରିବାରକୁ" ପୂରା ଭୁଲିଗଲେ । ବସୁଧୈବ କୁଟୁମ୍ବକଂ ନୀତିତାଙ୍କର ହେଲା ଏଣିକି ମୂଳନୀତି । ଦାସେ ଆପଣଙ୍କ ସାଙ୍ଗେ ସାଙ୍ଗେ ରହି ବିଭିନ୍ନ ସେବା କାମରେ ମଜ୍ଜି ରହିଲେ । ଏହି ସମୟରେ ଛୁଆଁ ଅଛୁଆଁ ଭେଦାଭେଦ ବିରୁଦ୍ଧରେ ଆନ୍ଦୋଳନ କରିବା, ଗ୍ରାମ ସଂଗଠନ ମାଧ୍ୟମରେ ଗ୍ରାମସୁଧାର କାମ କରିବା, ନାରୀ ଜାଗରଣ ଓ ସୂତାକଟା ଆଦି କାମରେ ମଧ୍ୟ ଲାଗିଗଲେ । ସେତେବେଳେ ବ୍ରାହ୍ମଣମାନେ ଲଙ୍ଗଳ ଧରି ଚାଷ କରିବାକୁ ଘୃଣ୍ୟ କାମ ବୋଲି ଭାବୁଥିଲେ । ହଳ ରଖିବା ବ୍ରାହ୍ମଣ ସମାଜରେ କଳଙ୍କିତ କାମ ବୋଲି ଧରି

ଯାଉଥିଲା । ତେଣୁ ସମାଜରେ ସଂସ୍କାର ଆଣିବା ପାଇଁ ଏପରି ସଙ୍କୀର୍ଣ୍ଣ କୃତ୍ରିମ ଭେଦାଭେଦକୁ ଦୂର କରିବା ନିମିତ୍ତ ନିଜେ ହଳକରିବା, ନଣ ରଖିବାଦି କାମ ଆଗ କରିଥିଲେ । ଯାହାକି ସେତେବେଳେ ସାରା ଦେଶରେ ଚହଳ ପକାଇ-ଥିଲା । ଏଥିପାଇଁ ପଞ୍ଚ ସଖାଙ୍କୁ ବହୁ କଷ୍ଟ ସହିବାକୁ ପଡ଼ିଛି । ସେତେବେଳେ ସମାଜ ସେବା କ୍ଷେତ୍ରରେ ସେମାନଙ୍କର ଯେଉଁ ଆଲୌକିକ ପ୍ରତିଭା ଭୁମିକା, ସାଧନା, ଦେଶ ଦେଶ ପାଇଁ ତାଙ୍କର ଯେଉଁ ତ୍ୟାଗପୁତ ଆତ୍ମୋତ୍ସର୍ଗ ଏ ଜାତି ପ୍ରାଣରେ ଅଭୁଲା ସ୍ମୃତି ଭାବେ ଚିରଦିନ ପାଇଁ ଜାଗରୁକ ରହି ଜୀବନର ମାଇଲ ଖୁଣ୍ଟିପରି ଭାବି ଯୁଗ ପୁରୁଷଙ୍କୁ ସଠିକ ପଥ ପ୍ରଦର୍ଶନ କରାଇବ—ଏଥିରେ ସନ୍ଦେହ ନାହିଁ । ଗାନ୍ଧୀଜୀଙ୍କ ଆହ୍ୱାନ କ୍ରମେ ସ୍ୱାଧୀନତା ଆନ୍ଦୋଳନରେ ପଞ୍ଚସଖା ସକ୍ରିୟ ହୋଇ ଉଠିଲେ । ଦାସେ ଆପଣ ଓଡ଼ିଶାରେ ସ୍ୱାଧୀନତାର ଆଲେକବାର୍ତ୍ତାବାହକ ଆହ୍ୱାନ ବାଣୀଜଣାଇଲେ "ମିଶୁ ମୋର ଦେହ ଏ ଦେଶ ମାଟିରେ,ଦେଶବାସୀ ଚାଲି ଯାଆନ୍ତୁ ପିଠିରେ" ସ୍ୱରାଜ୍ୟ ସାଧନେ ଅଛି ଯେତେ ଗାଡ଼, ପୁରୁ ତହିଁ ପଡ଼ି ମୋର ମାଂସ ହାଡ଼" । ଗୁରୁ ଦେବଙ୍କର ଏହି ବାଣୀକୁ ସ୍ମରଣରଖି ସ୍ୱାଧୀନତା ଆନ୍ଦୋଳନରେ ଆଚାର୍ଯ୍ୟ ମହାଶୟ ଝାସଦେଲେ । ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହରେ ପ୍ରଥମ ସତ୍ୟାଗ୍ରହୀ ରୂପେ ଯୋଗଦେଇ ଜେଲ୍ ବରଣ କଲେ । ୧୯୪୨ ଭାରତ ଛାଡ଼ ଆନ୍ଦୋଳନ ବେଳେ ୨ ବର୍ଷ ଜେଲ ଗଲେ । ସେ ଜଣେ ମହାନ ଆଦର୍ଶ-ବାଦୀ ଜନସେବକ ଥିଲେ । ମୁହୂର୍ତ୍ତେ ପୁଜା ସମୟ ନଷ୍ଟ କରୁ ନଥିଲେ । ଏପରିକି ଜେଲ ଜୀବନ ମଧ୍ୟରେ ସେ ପ୍ରତିଦିନ ଗୀତା, ଉପନିଷଦ ଆଦି ପାଠ କରୁଥିଲେ । ସହକର୍ମୀଙ୍କୁ ମଧ୍ୟ ସଂଯତ ଜୀବନ କଟାଇବା ପାଇଁ ଗୀତାର ମାହାତ୍ମ୍ୟ ବୁଝାଉ-ଥିଲେ । ସେହି ସମୟରେ ସେ ଗୀତାର ଟୀକା ଲେଖିଥିଲେ, ଯାହାକି ବର୍ତ୍ତମାନ ଏକ ଶ୍ରେଷ୍ଠ 'ଗୀତାଟୀକା' ହିସାବରେ ସର୍ବଜନ ଆଦୃତ ଓ ପ୍ରଶଂସିତ ହୋଇ ପାରିଛି । ତାଂକର ଗୋଟିଏ ଭଲ ଗୁଣଥିଲା—ସେ ଯାହା କହନ୍ତି, ତାହା ନିଜ ଜୀବନରେ ଆଗ ପାଳନ କରନ୍ତି । ଶରୀରଶ୍ରମ ପ୍ରତି ତାଂକର ଥିଲା ଅତୁଟ ବିଶ୍ୱାସ । ଏପରିକି ଜେଲ ଜୀବନ ଭିତରେ ୩୦ । ୪୦ ଜଣଙ୍କର ରୁଟି ନିଜେ ତିଆରି କରୁଥିଲେ ।

ବିଚ୍ଛିନ୍ନ ଓଡ଼ିଶାର ଏକତ୍ରୀକରଣ ଦିଗରେ ତାଂକର ଦାନ ଅତୁଳନୀୟ । ୧୯୪୪ରୁ ୧୯୫୧ ଯାଏ ସେ ପ୍ରାଦେଶିକ କଂଗ୍ରେସ କମିଟିର ସଦସ୍ୟ ଓ କିଛିଦିନ ସଭାପତି ମଧ୍ୟ ରହିଥିଲେ । ଏହା ବ୍ୟତୀତ ମୌଳିକ ଶିକ୍ଷା ପରିଷଦ, ହରିଜନ ସେବକ ସଂଘର ସଭାପତି ହୋଇ ବହୁ କାର୍ଯ୍ୟ କରିଛନ୍ତି । ୧୯୩୪ ରେ ଗାନ୍ଧୀଜୀଙ୍କ ଐତିହାସିକ ହରିଜନ ପଦଯାତ୍ରାରେ ସକ୍ରିୟ ଭାଗନେଇ ଗାନ୍ଧୀଜୀଂକ ପଦଯାତ୍ରାକୁ ସଫଳ କାମୀ କରିବା ଦିଗରେ ତାଙ୍କର ଦାନ ଅସୀମ । ଗାନ୍ଧୀଜୀଂକ ଆହ୍ୱାନରେ ସ୍ୱାଧୀନତା ପରେ କ୍ଷମତା ଗାଦୀରୁ ଦୂରରେ ରହି ଗାଂଧୀଜୀ ଆଦର୍ଶରେ

ଗଠନ ମୂଳକ କାମରେ ଭାଗ ନେଲେ । ୧୯୫୧ ରେ ଭୂଦାନ କାର୍ଯ୍ୟର ନେତୃତ୍ୱ ନେଇ ଭୂଦାନର ବାର୍ତ୍ତା ଗାଁ ଗହଳରେ ପହଞ୍ଚାଇବାର ଶପଥ ଗ୍ରହଣକରି ଐତି-ହାସିକ ପଦଯାତ୍ରା ମାଧ୍ୟମରେ ୫୮ହଜାରରୁ ଉର୍ଦ୍ଧ୍ୱ ବାଟ ପାଦରେ ବୁଲିଥିଲେ । ସର୍ବୋଦୟର ମହାନ ବିଚାରଧାରା ପ୍ରଚାର କରି ସମାଜକୁ ଠିକ୍ ବାଟରେ ଚାଲି-ବାକୁ ସଂକେତ ଦେଇଥିଲେ । "ସର୍ବେ ଭବନ୍ତୁ ସୁଖିନଃ, ସର୍ବେ ସନ୍ତୁ ନିରାମୟାଃ ସର୍ବେ ଭଦ୍ରାଣୀ ପଶ୍ୟନ୍ତୁ, ମା' କଶ୍ଚିତ ଦୁଃଖଭାଗ ଭବେତ୍"—ମନ୍ତ୍ରଥିଲା ତାଂକର ମୁଖ ନିସୃତ ବାଣୀ । ସେ ଥିଲେ ତ୍ୟାଗ ଓ ବିନମ୍ରତାର ଏକ ଜ୍ୱଳନ୍ତ ଚଳନ୍ତି ପ୍ରତିମା । ଏ କ୍ଷମତାନ୍ଧ ଯୁଗରେ ଏପରି ନିଷ୍କାମ ସେବା କରି ଏକ ଅସାଧାରଣ ମାନବ ରୂପେ ପରିଗଣିତ ହେବାହିଁ ଆଶ୍ଚର୍ଯ୍ୟ ମହାତ୍ମ୍ୟର ତାର ପ୍ରତ୍ୟକ୍ଷ ନମୁନା । ପର-ଅପର ଭାବ ତାଙ୍କୁ ସ୍ପର୍ଶ ସୁଦ୍ଧା କରି ପାରିନଥିଲା । ସମଦର୍ଶୀ ଭାବନା ଆଜି ତାଙ୍କୁ ମହାପୁରୁଷ ଆସନରେ ଆସୀନ କରି ପାରିଛି । ସାରା ଦୁନିଆ ତାଂକର ତ୍ୟାଗ ତଥା ସେବା ପାଖରେ ମୁଣ୍ଡ ନୁଆଁଇ ପ୍ରଣତ ହୋଇଛି ।

ଶ୍ରୀମଦ୍ ଭାଗବତ ଭାଷାରେ—

"ସମଦରଶୀ ଯେଉଁ ନର<br>ତା' ପାଦେ କୋଟି ନମସ୍କାର"

ସେ ଆଜି ସଭିଂକର ନମସ୍ୟ ଓ ପ୍ରାତଃ ସ୍ମରଣୀୟ । ସେ ଆଜି ନାହାନ୍ତି ସତ; ମାତ୍ର ତାଂକର ଆଦର୍ଶ ମହତ୍ତ୍ୱ ନିଷ୍କଳଂକ ତ୍ୟାଗ ପୂତଜୀବନ ସଭିଙ୍କୁ ପ୍ରେରଣା ଦେବ, ଏଥିରେ କୌଣସି ସନ୍ଦେହ ନାହିଁ ।

କବିଙ୍କ ଭାଷାରେ—"ନିର୍ମଳ ଚରିତ ଯାହାର, ସେ ମରେ ନାହିଁ ସଦା ଅମର । "ସେ ଆଜି ମୃତ୍ୟୁଞ୍ଜୟୀ ।

—X—

# ୧୯୭୩ ମସିହାରେ ପ୍ରକାଶିତ

# କେତୋଟି ଉପାଦେୟ ପୁସ୍ତକ

୧-ଓଡ଼ିଆ ସାହିତ୍ୟର ଇତିହାସ ୨ୟ ଖଣ୍ଡ ଡଃ ବଂଶୀଧର ମହାନ୍ତି ଟ ୨୦-୦୦
୨-କାବ୍ୟ ସଂବାଦ—ଅଧ୍ୟାପକ ଦାଶରଥି ଦାସ ଟ ୧୫-୦୦
୩-ଆଧୁନିକତାର କ, ଖ ଓ ଅନ୍ୟାନ୍ୟ ଆଲୋଚନା
ଅଧ୍ୟାପକ ଚନ୍ଦ୍ରମଣି ବେହେରା ଟ ୧୦-୦୦
୪-ଅରଣ୍ୟର କୁଜ୍‌ଝଟିକା : ଶ୍ରୀ ଜ୍ଞାନୀନ୍ଦ୍ର ବର୍ମା ଟ ୧୨-୦୦
୫-ଜୀବନ ଛନ୍ଦ ( The Genetic Code )
ଅଧ୍ୟାପକ ଦେବକାନ୍ତ ମିଶ୍ର ଟ ୧୨-୫୦
୬-ପଞ୍ଚସଖା ଓଡ଼ିଆ ସାହିତ୍ୟ ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି ଟ ୧୦-୦୦
୭-ଭାଷା ବିଜ୍ଞାନ ପରିଚୟ ଡଃ ଗୋପାଳ ଚନ୍ଦ୍ର ମିଶ୍ର ଟ ୫-୦୦
୮-ଓଡ଼ିଆ କେବେ ? ଅଧ୍ୟାପକ ଗୋଲୋକ ବିହାରୀ ଧଳ ଟ ୬-୦୦
୯-ଧର୍ମର ତୃଷ୍ଣା ଶ୍ରୀ ସୂର୍ଯ୍ୟମଣି ତ୍ରିପାଠୀ ଟ ୬-୦୦
୧୦ ବଚନ ବର୍ତ୍ତି ଡଃ ଜାନକୀବଲ୍ଲଭ ମହାନ୍ତି ଟ ୫-୦୯
୧୧-କାର୍ଟୁନ ଅଧ୍ୟାପକ ନିଖିଳାନନ୍ଦ ପାଣିଗ୍ରାହୀ ଟ ୬-୦୦
୧୨-ପରଶପଥୁଲା କାନ୍ଦୁଛି : ଶ୍ରୀ ରାଧାବିନୋଦ ନାୟକ ଟ ୫-୦୦
୧୩-ଅଜ୍ଞାତ ବାସ : ଶ୍ରୀ ରବିନାରାୟଣ ମହାପାତ୍ର ଟ ୬-୦୦
୧୪-ପ୍ରବନ୍ଧ ଚୟନ : ଡଃ କାହ୍ନୁ ଚରଣ ମିଶ୍ର ଟ ୫-୦୦
୧୫-ଭାରତୀୟ ବିଜ୍ଞାନ ଓ ବୈଜ୍ଞାନିକ ୧ମ ଭାଗ
ଅଧ୍ୟାପକ ଦେବକାନ୍ତ ମିଶ୍ର ଟ ୫-୦୦

ପ୍ରକାଶକ :

ଫ୍ରେଣ୍ଡସ୍ ପବ୍ଲିଶର୍ସ

ବିନୋଦବିହାରୀ

କଟକ-୨

ମିତବ୍ୟୟିତା ମନୁଷ୍ୟର ଏକ ମହତ୍ତ୍ଵ ଗୁଣ । ଆମଭଳି ଏକ ଦେଶରେ ଯେଉଁଠି ଆର୍ଥିକ ଅନଗ୍ରସରତା ଦୂର କରିବା ପାଇଁ ସଂଗ୍ରାମ ଚାଲିଛି, ସେଠାରେ ମିତବ୍ୟୟିତା ଏକ ଜାତୀୟ ଆବଶ୍ୟକତା । ଦେଶର ଉନ୍ନୟନ ପାଇଁ ପୁଞ୍ଜି ଲଗାଣ ଓ ସଞ୍ଚୟ ଅଧିକ ବୃଦ୍ଧି ପାଇବା ଉଚିତ ।

**ଶ୍ରୀମତୀ ଇନ୍ଦିରା ଗାନ୍ଧୀ**

| ସଞ୍ଚୟ ଏକାଉଣ୍ଟର ନାମ | ସର୍ବନିମ୍ନ କେତେ ଜମା ଦିଆଯାଇ ପାରିବ | ସର୍ବୋଚ୍ଚ କେତେ ଜମାଯୋଗ କରାଯାଇ ପାରିବ | କେତେ ବର୍ଷ ପାଇଁ | ବାର୍ଷିକ ସୁଧର ହାର | ଅନ୍ୟାନ୍ୟ |
|---|---|---|---|---|---|
| ୧ | ୨ | ୩ | ୪ | ୫ | ୬ |
| ପୋଷ୍ଟ ଅଫିସ ସେଭିଂସ୍ ବ୍ୟାଙ୍କ | ୫ ଟଙ୍କା | ଜଣକିଆ ୨୫-୦୦ ଯୁଗ୍ମ ଏକାଉଣ୍ଟରେ ୫୦,୦୦୦ | ୨ ବା ୩ ବର୍ଷ ଅବରୁଦ୍ଧ ଜମା ଉପରେ | ଶତକଡ଼ା ୪ ଶତକଡ଼ା ୪½ | ସୁଧ ଉପରେ ଆୟକର ପଡ଼େନାହିଁ |
| ପୋଷ୍ଟ ଅଫିସ ଟାଇମ ଡିପୋଜିଟ | ୫୦ ଓ ତହିଁର ଗୁଣିତକ | ଅସୀମ ପରିମାଣ | ୧ବର୍ଷ ୩ବର୍ଷ ୫ବର୍ଷ | ଶତକଡ଼ା ୬ ଶତକଡ଼ା ୭ ଶତକଡ଼ା ୭¼ | ସୁଧ ଆୟକର ପଡ଼େ |
| ପୋଷ୍ଟ ଅଫିସ ରେକରିଂ ଡିପୋଜିଟ | ୫ ଓ ତହିଁର ଗୁଣିତକ | ଅସୀମ ପରିମାଣ | ୫ବର୍ଷ | ଶତକଡ଼ା ୬¾ | |
| ସି. ଟି. ଡି. ଏକାଉଣ୍ଟ (କ୍ୟୁମୁଲେଟିଭ୍ ଟାଇମ୍ ଡିପୋଜିଟ) | ୫ ଓ ତହିଁର ଗୁଣିତକ | ଜଣକିଆ–ଟ ୯୦,୦୦୦ ଯୁଗ୍ମ ଏକାଉଣ୍ଟରେ ଟ ୧,୮୦,୦୦୦ | ୫ ବର୍ଷ ୧୦ବର୍ଷ ୧୫ବର୍ଷ | ଟ ୪.୭୫ ଟ ୪.୭୫ ଟ ୫ | ସୁଧ ଆୟକର-ମୁକ୍ତ ଓ ଆୟକରରୁ ଛାଡ଼ ମିଳେ । |

ଉପରୋକ୍ତ ସିକ୍ୟୁରିଟି ଓ ଏକାଉଣ୍ଟରୁ ମିଳୁଥିବା ସର୍ବୋଚ୍ଚ ୩୦୦୦ ସୁଧ ଉପରେ ଆୟକର ପଡ଼େ ନାହିଁ । ଭାରତ ସରକାରଙ୍କ ଦ୍ଵାରା ପ୍ରବର୍ତ୍ତିତ " ସୁରକ୍ଷିତ ସଂଚୟ ଯୋଜନା' ' ଅନୁସାରେ ୫ ବର୍ଷିଆ ରେକରିଂ ଡିପୋଜିଟ ବା ୫ବର୍ଷିଆ ସି. ଟି. ଡି. ଏକାଉଣ୍ଟରେ ମାସିକ ୫ ଟଙ୍କା ବା ॥ ୧୦ ଟଙ୍କା ଜମା ଦେଉଥିବା ଜମାକାରୀ ପ୍ରଥମ ୨୪ଟି ମାସିକ କିସ୍ତି ନିୟମିତ ରୂପେ ଜମା ଦେବା ପରେ ଯଦି ପ୍ରାଣତ୍ୟାଗ କରନ୍ତି ତାହାହେଲେ ଉକ୍ତ ଏକାଉଣ୍ଟରେ ଆଉ ଟଙ୍କା ଜମା ନ ଦେଲେ ମଧ୍ୟ ମୃତ ଜମାକାରୀଙ୍କ ଏକାଉଣ୍ଟରୁ ପ୍ରାପ୍ୟ ସମସ୍ତ ଟଙ୍କା ପାଇ ପାରିବେ ।

*ବିଶେଷ ବିବରଣୀ ଜାଣିବା ପାଇଁ

( କ ) ନିକଟସ୍ଥ ପୋଷ୍ଟ ଅଫିସରେ ପୋଷ୍ଟମାଷ୍ଟରଙ୍କ ସହିତ ପରାମର୍ଶ କରନ୍ତୁ । ଅଥବା

( ଖ ) ଡେପୁଟି ଡିରେକ୍ଟର ସ୍ଵଳ୍ପସଞ୍ଚୟ ସଂଗଠନ ଅର୍ଥବିଭାଗ, ଭୁବନେଶ୍ଵର ।

( ଗ ) ରିଜିଓନାଲ ଡିରେକ୍ଟର ନ୍ୟାସନାଲ ସେଭିଂସ, ହରପୁର ରୋଡ଼, କଟକ ।

( ଘ ) ପ୍ରତ୍ୟେକ ଜିଲ୍ଲାରେ ଥିବା ଜାତୀୟ ସଂଚୟ ସଂଗଠକଙ୍କ ସହିତ ପତ୍ରାଳାପ କରନ୍ତୁ ।

ସ୍ଵଳ୍ପ ସଞ୍ଚୟ ସଂଗଠନ ଓଡ଼ିଶା ସରକାରଙ୍କର ଅର୍ଥ ବିଭାଗ, ଭୁବନେଶ୍ଵର

srujan ka@gmail.com

# ଆମେ ଗଢିବା ନୂଆ ସମାଜ

ଆମକୁ କାବୁ କରିବାକୁ ଆମ ଆଗରେ ଠିଆ ହୋଇଛନ୍ତି :
ଦାରିଦ୍ର୍ୟ, ଅଜ୍ଞତା, ବ୍ୟାଧି ଓ ସାମାଜିକ ଅସାମନତା ।

ଯାରୁପର୍ଯ୍ୟନ୍ତ ଲଗି, ଭଗବାନ ଯେତେ ସାମର୍ଥ୍ୟ ଦେଇଛନ୍ତି
ସେସବୁ ଖଟାଇ ଏଇ ଶତ୍ରୁଙ୍କ ମୁକାବିଲା କରିବାକୁ ହେବ ।
ସମସ୍ତ ବାଧାବିଘ୍ନ, ଅଭାବ ଅସୁବିଧା ସତ୍ତ୍ୱେ

## ଆମର ବିଜୟ ସୁନିଶ୍ଚିତ

* ଦାରିଦ୍ର୍ୟ, ନିରକ୍ଷରତା, ବ୍ୟାଧି ଓ ସାମାଜିକ ଅସମାନତା ଦୂର
ନ ହେଲେ ଆମ ସମାଜ ଭୁଷୁଡ଼ି ପଡ଼ିବ ।

ଲୋକସଂପର୍କ ବିଭାଗ, ଓଡ଼ିଶା
ଭୁବନେଶ୍ୱର

With Best Compliments from

***Lower Secondary Teachers' Association***

**Jhanjiri Mangala**
Cuttack

**On**

***the Sacred memory of***

**ACharya Harihar**

Banamali Brahmachari
Organising Secretary
Lower Secondary
Teachers Association.

# ଓଜନ, ମାପ ଠିକ୍ ଅଛି ତ ?

୧ । ଓଜନ ମାପ ନିୟମାବଳୀର ବ୍ୟବସ୍ଥାନୁଯାୟୀ ବ୍ୟବସାୟରେ ବ୍ୟବହାର କରାଯାଉଥିବା ବଟକରା, ନିକିତି, ପଲା ଇତ୍ୟାଦିର ସଠିକତା ପ୍ରମାଣପତ୍ର ଦେଖିବାପାଇଁ ଯୋର ଦିଅନ୍ତୁ ।

୨ । ଓଜନ ମାପରେ ଦିଆଯାଉଥିବା ସରକାରୀ ମୋହର ହିଁ ଏହାର ସଠିକତାର ନିର୍ଭର ପ୍ରତିଶ୍ରୁତି ।

୩ । ସେର, ତଲା ପାଉଣ୍ଡ ଓଜନଗୁଡ଼ିକ, ଇଞ୍ଚ, ଫୁଟ, ଗଜ ଓ ମାଇଲ ଇତ୍ୟାଦି ମାପଗୁଡ଼ିକ ବର୍ତ୍ତମାନ ଅବୈଧ । ଏଗୁଡ଼ିକ, ବ୍ୟବହାର କରିବା ଏକ ଦଣ୍ଡନୀୟ ଅପରାଧ ।

୪ । ସର୍ବଦା ସରକାରଙ୍କ ଦ୍ୱାରା ପରୀକ୍ଷା କରାଯାଇ ମୋହର ଦିଆଯାଉଥିବା କିଲୋଗ୍ରାମ, ଲିଟର ଓ ମିଟର ଇତ୍ୟାଦି ବ୍ୟବହାର କରନ୍ତୁ । ଅନ୍ୟଥା ଆଇନ ଅନୁସାରେ ଦଣ୍ଡିତ ହେବେ ।

୫ । କାରବାରରେ ବ୍ୟବହୃତ ହେଉଥିବା ନିକିତି, ବଟକରା, ମାପଯନ୍ତ୍ର ଆଦିର ସଠିକତାପାଇଁ ସରକାର ପ୍ରତି ଦୁଇ-ବର୍ଷରେ ଥରେ ଓଜନ ମାପ ବିଭାଗ ଦ୍ୱାରା ଯାଞ୍ଚ କରନ୍ତି । ସୁନା, ରୂପା କାରବାରରେ ବ୍ୟବହୃତ ବଟକରା ଓ ନିକିତି ପ୍ରତି ଏକବର୍ଷରେ ଥରେ ଯାଞ୍ଚ କରାଯାଇଥାଏ । ଅତଏବ କିଣାବିକାବେଳେ ବଟକରା ଓ ନିକିତିରେ ଯାଞ୍ଚ ସୂଚକ ମୋହର ପ୍ରତି ଦୃଷ୍ଟି ଦିଅନ୍ତୁ ।

୬ । ଓଜନ ମାପ ଇନ୍‌ସପେକ୍ଟରଙ୍କ ଦ୍ୱାରା ପ୍ରଦତ୍ତ ଓଜନ ମାପ ସଠିକତା ପ୍ରମାଣପତ୍ର (Certificate of Verification) ସର୍ବସାଧାରଣଙ୍କ ଦୃଷ୍ଟିକୁ ଆସି ପାରୁଥିବା ସ୍ଥାନରେ ଟାଙ୍ଗି ରଖନ୍ତୁ ।

**ଲୋକ ସଂପର୍କ ବିଭାଗ**
**ଓଡ଼ିଶା ସରକାର**

# ଗୋଟିଏ ଛୋଟ ଓ ନିୟୋଜିତ ପରିବାର ଆପଣଙ୍କର ଆଦର୍ଶ ହେଉ

କାରଣ ଏହାଦ୍ୱାରା ଆପଣଙ୍କର ଆର୍ଥିକ ସ୍ୱଚ୍ଛଳତା

ବୃଦ୍ଧି ପାଏ । ନିଜର ସନ୍ତାନମାନଙ୍କ ଶିକ୍ଷା,

ସ୍ୱାସ୍ଥ୍ୟ ଓ ଅନ୍ୟାନ୍ୟ ସୁବିଧା ଠିକ୍

ରୂପରେ କରାଯାଇପାରେ

ନିୟୋଜିତ ପରିବାରହିଁ

ସୁଖମୟ ପାରିବାରିକ

ଜୀବନର

ମୂଳକାଠି ।

ଆପଣ ନିୟୋଜିତ ପରିବାର ଗଠନ କରିବା ଲାଗି ସମସ୍ତ ପରାମର୍ଶ ଓ ଉପକରଣ ନିକଟତମ ପରିବାର କଲ୍ୟାଣ ନିୟୋଜନ କେନ୍ଦ୍ରରୁ ପାଇପାରିବେ ।

ରାଜ୍ୟ ପରିବାର ନିୟୋଜନ ସଂସ୍ଥା, ଓଡ଼ିଶା

ଭୁବନେଶ୍ୱର

# ତାଙ୍କ ଭାଷାରେ

କୃଷି ହୋଇ ବେଦରେ
କୃଷି ତୋ ପୁରାଣ
କୃଷି ବିନା ଇନ୍ଧନଶାରେ ପରାଣ
କୃଷି ଯେଣୁ ନୃପତ୍ତ
କୃଷି ଯେଣୁ ସଭ୍ୟ
କୃଷି ବଳେ ଆୟୁଃଶ୍ରୀ, ସମ୍ପଦ
ସକଳ ହୁଏ ଲଭ୍ୟ ହେ ।

କିନ୍ତୁ ସମସ୍ତେ କହନ୍ତି—

**କୃଷିକ୍ଷେତ୍ରରେ ଏଫ୍ ସି ଆଇ ର ସାର**

**ଅଧିକ ଅମଳ ଓ ଅଧିକ ଲାଭ ଦିଏ ।**

କୃଷି ଓ କୃଷକ ସେବାରେ ବ୍ରତୀ—

**ଦି ଫର୍ଟିଲାଇଜର କର୍ପୋରେସନ୍ ଅଫ ଇଣ୍ଡିଆ ଲିଃ**

**ପୂର୍ବାଞ୍ଚଳ ବାଣିଜ୍ୟ କେନ୍ଦ୍ର**

**ଭୁବନେଶ୍ୱର**

# Dawn Of A New Era In Orissa

TO

## MEET THE BASIC MINIMUM NEEDS OF THE PEOPLE.

19, 622 villages have drinking water wells.

Total Ayacut under Major and medium irrigation projects will increase to 21.23 lakh acres by end of the Fourth Plan.

Assumed Irrigation during Rabi and Khariff increased.

By end of 1973-74, 10,162 villages would be electirified.

A special scheme to meet the growing demand of the industrial Secter.

Provining homestead lands to the landless with stress on rural housing and slum clearance.

Speedy implementation of various employment-oriented schemes, particularly for the benefit of the weeker section's of the Society.

Road to every village.

A programme of substantial coverage of boys & girls in the age group of 6-11 years and 11-14 years by 1980-81.

41,767 acres of lands distributed to landless.

Radically amended Orissa L and Reforms Act to be implemented soon.

● Issued by Director of Public Relations,
Orissa, Bhubaneswar.

